# କଳା-ଶକ୍ତି

ଶ୍ରୀ ଗୋପୀନାଥ ମହାନ୍ତି




ଅଗ୍ରଦୂତ

କଟକ-୨

॥ କଳା-ଶକ୍ତି ॥ ଲେଖକ : ଶ୍ରୀ ଗୋପୀନାଥ ମହାନ୍ତି ॥ ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ-୨ ॥ ପ୍ରଚ୍ଛଦପଟ୍ଟ : ଅସୀତ ମୁଖାର୍ଜୀ ॥ ପ୍ରଥମ ପ୍ରକାଶ : ୧୯୭୩, ଦ୍ୱିତୀୟ ପ୍ରକାଶ : ୧୯୯୩ ॥ ମୁଦ୍ରଣ : ଶ୍ରୀ ଭରଦ୍ୱାଜ ପ୍ରେସ, ବାଲୁବଜାର (ବିଶ୍ୱନାଥ ଲେନ), କଟକ-୨ ॥ ମୂଲ୍ୟ : ପଞ୍ଚତିରିଶ ଟଙ୍କା ॥

॥ KALASHAKTI ॥ Author : Sri Gopinath Mohanty ॥ Publisher : Agraduta, Banka Bazar, Cuttack-2, Artist : Asit Mukherjee ॥ First Published : 1973, Second Edition : 1993 ॥ Printed at : Sri Bharadwaz Press, Balu Bazar (Biswanath Lane), Cuttack-2 ॥ Price : Rs. 35-00 ॥

# ଦି'ପଦ ପଦେ

ମୁଁ ମୋର ସାହିତ୍ୟିକ ଜୀବନର ଆରମ୍ଭବେଳେ ନୂଆ ନୂଆ ଗଢ଼ିଥିବା ଅଭିରୁଚି ଓ ଦୃଷ୍ଟିଭଙ୍ଗୀ ଘେନି ଗୋଟିଏ ନୂଆ ଉଦ୍ୟମରେ ସତରଟି ପ୍ରବନ୍ଧ ଲେଖିଥିଲି । 'ବାଇଆ ଜଜ'ରୁ ତା ଆରମ୍ଭ ହୋଇଥିଲା । ସବୁଗୁଡ଼ିକ ସେକାଳର ପ୍ରସିଦ୍ଧ ସାହିତ୍ୟ-ପତ୍ରିକା 'ସହକାର'ରେ ଛପା ହୋଇଥିଲା । ତହିଁରୁ ପ୍ରତ୍ୟେକ ପ୍ରବନ୍ଧ ସାହିତ୍ୟିକ ତତ୍ତ୍ୱମୂଳକ ଆଲୋଚନା । କିନ୍ତୁ ଜାଣି ଜାଣି ତା ଚେହେରାକୁ ଏପରି ଗଢ଼ିବାକୁ ଚେଷ୍ଟା କରାଯାଇଥିଲା ଯହିଁରେ ନାଁଧରି ପ୍ରବନ୍ଧଗୁଡ଼ିକ କାହାରିକୁ ହୁରୁଡ଼େଇବ ନାହିଁ । ପାଠକଙ୍କ ଆଗ୍ରହ ସୃଷ୍ଟିକରିବ, କ୍ଲାନ୍ତି ନୁହେଁ । ପ୍ରକୃତରେ ସେ ଉଦ୍ୟମ କିଭଳି ହେଲା ତା କହିବା ମୋ କାମ ନୁହେଁ, ମୁଁ ଖାଲି ମୋର କଣ ଉଦ୍ଦେଶ୍ୟ ଥିଲା ସେତିକି କହିପାରିବି । ମନେ ପଡ଼ୁଛି, ୧୯୩୭ ସାଲ ଅପ୍ରେଲ ମାସ—ମୋର ଜନ୍ମମାସ । ମତେ ବାଇଶି ପୂରୁଥାଏ । 'ସହକାର' ୧୬ଶ ବର୍ଷ ପ୍ରଥମ ସଂଖ୍ୟାରେ 'ବାଇଆ ଜଜ' ବାହାରିଲା । ମୋର ବି. ଏ. ଅନର୍ସରେ ଓ ଏମ୍. ଏ. ରେ ଇଂରାଜି ସାହିତ୍ୟ ଥିଲା । ୧୯୩୬ରେ ଏମ୍. ଏ. ପାସ୍ କଲି । ତା ପୂର୍ବରୁ 'ବାଇଆ ଜଜ' ଓ ସେହିଭଳି ଅନ୍ୟାନ୍ୟ ପ୍ରବନ୍ଧ ଲେଖିବାକୁ ଯୋଜନା କରିଥାଏଁ । ଇଂରେଜିରେ ସମାଲୋଚନାମୂଳକ ଆଧୁନିକ ପ୍ରବନ୍ଧମାନ ପଢ଼ୁଥାଏଁ । ଲେଖକମାନେ ନାଁ-ଡାକ୍—ଯଥା ଚେଷ୍ଟର୍ଟନ୍, ବେଲକ୍, ଲିଣ୍ଡ୍, ଡିକ୍ୱିନ୍ସି, ଭର୍ଜିନିଆ ଉଲଫ୍, ଏଡ଼ିଥ୍ ସୀଟ୍‌ୱେଲ୍ । ବିଂଶ ଶତାବ୍ଦୀରେ ବିଶେଷତଃ ପ୍ରଥମ ମହାଯୁଦ୍ଧ ପରେ ଇଂରେଜିରେ ଆଧୁନିକ ପ୍ରବନ୍ଧର ବହୁତ ଅଭିବୃଦ୍ଧି ଘଟିଥାଏ । ସେସବୁ ପ୍ରବନ୍ଧମାନଙ୍କ ଦୃଷ୍ଟି ଅତି ଗଭୀର । ବିଶ୍ଳେଷଣ ଅତି ଉନ୍ନତ ଓ ବୌଦ୍ଧିକ; କିନ୍ତୁ ତହିଁରେ ଡମ ନ ଥାଏ, ଆଡ଼ମ୍ବର ନ ଥାଏ । ଗୁରୁଗମ୍ଭୀର ଠାଣି ନ ଥାଏ । ଦାନ୍ତଚିପା ନ ଥାଏ, ତୋଳାଖୋଷା ଭ୍ରୂଲତା ଟେକା ନ ଥାଏ । ଅନ୍ତରଙ୍ଗ ବନ୍ଧୁଟିଏ ବାଜେକଥା ଗପିଲା ପରି ସେଭଳି ପ୍ରବନ୍ଧ କଥା ଗପିଯାଏ । ହସି ହସାଇ, କାନ୍ଦି କନ୍ଦାଇ, ତାହାରି ଭିତରୁ ଅପେ ବାହାରିପଡ଼େ ପଗପଗକେ ପ୍ରବନ୍ଧଟିର ବକ୍ତବ୍ୟ । ଲେଖକ ପାଠକ ଏକାସଙ୍ଗେ ତତ୍ତ୍ୱ ଖୋଜନ୍ତି । ଦୁହେଁ ଥାଆନ୍ତି ଆବିଷ୍କାରକସୁଲଭ କୁତୂହଳ ଓ ଆନନ୍ଦ, ଦୁହେଁ ସଙ୍ଗହୋଇ ଏକ ସିଦ୍ଧାନ୍ତରେ ପହଞ୍ଚନ୍ତି, ପୁଣି ଏକାଠି ଚାଲିଯାଆନ୍ତି ଆଉ କଥା ଖୋଜିବା ପାଇଁ । ଯାହା ଅନ୍ୟଥା ହୁଅନ୍ତା ଦାନ୍ତଭଙ୍ଗା ଶୁଖିଲା ଆଲୋଚନା । ଓଡ଼ିଆରେ ସେଭଳି ତାତ୍ତ୍ୱିକ ବିଷୟକୁ ଏହି 'କିଛିନୁହେଁ'-ସରସ-ସରଳ ଉପାୟରେ ଆଲୋଚନା କରିବାକୁ ମନ ହେବାରୁ ତାପାଇଁ ନୂଆ ଶୈଳୀ ଖୋଜି

ଏ ପ୍ରବନ୍ଧଗୁଡ଼ିକୁ ଲେଖିଥିଲି । 'ବାଇଆ ଜକ'ରେ ଆଲୋଚ୍ୟ-ସାହିତ୍ୟରେ 'ଆଶ୍ଚର୍ଯ୍ୟବୋଧର କ୍ରିୟା' । 'ଭଙ୍ଗାଗ୍ଲାସ' ପ୍ରବନ୍ଧରେ ଆଲୋଚ୍ୟ—ଇଂରାଜରେ ଯାହାକୁ କୁହାଯାଏ। ରୋମାଣ୍ଟିସିଜମ୍ । 'ପତର ଚକ'ରେ ଉପନ୍ୟାସରେ 'ବାରକ୍ଷୁଲ' ଚରିତ୍ର ବିଷୟରେ ଆଲୋଚନା ହୋଇଥିଲି । 'ଡାଧିନ୍ ଧିନା' ପ୍ରକୃତରେ 'ସାହିତ୍ୟିକ ସମାଲୋଚନା' ବିଷୟରେ ପ୍ରବନ୍ଧଟିଏ । ସେଥିରେ ସାହିତ୍ୟ ସମ୍ପର୍କୀୟ କେତୋଟି ମୀତର ଅବତାରଣା କରାଯାଇଛି । 'ଲୋକହସା'ର ବିଷୟବସ୍ତୁ 'ହାସ୍ୟରସ' । ସେହି ସମ୍ପର୍କରେ ଗୋଟିଏ ତାତ୍ତ୍ୱିକ ଆଲୋଚନାର ଉଦ୍ୟମ ତହିଁରେ କରାଯାଇଛି । 'କଳା-ଶକ୍ତି' କଳାବିତ୍ତ୍ୱର ପ୍ରେରଣାର ଉତ୍ସ ବିଷୟରେ ଆଲୋଚନାଟିଏ । 'କୁଆଡଗ୍' ପ୍ରକୃତରେ 'ଓଡ଼ିଆ ସାହିତ୍ୟରେ ଆଧୁନିକତା' ବିଷୟରେ ଗୋଟିଏ ପ୍ରବନ୍ଧ । 'କାରୁଣୀ'ର ବିଷୟବସ୍ତୁ 'ଟ୍ରାଜେଡ଼ି ଓ କରୁଣରସ' । 'ବନ୍ଧାଖୋଲ' 'ସାହିତ୍ୟରେ ସାର୍ବଜନୀନତା ଓ ସ୍ୱତନ୍ତ୍ରତା' ବିଷୟରେ ଗୋଟିଏ ଆଲୋଚନା । 'ଏପାଖ ସେପାଖ'ରେ କବିତାର ଉଦ୍ଦେଶ୍ୟ ବିଷୟରେ ସ୍ୱପ୍ନବାଦୀ ଓ ଜଡ଼ବାଦୀ ଏଭଳି ଯୋଡ଼ିଏ ବିରୋଧୀ ମତ ସମ୍ବନ୍ଧରେ ସାମାନ୍ୟ ଆଲୋଚନା ହୋଇଛି । 'ଶାରଦୀୟା'ରେ ସାହିତ୍ୟର କେତେଗୁଡ଼ିଏ ବିଷୟବସ୍ତୁ ବିଷୟରେ ଆଲୋଚନା କରାଯାଇଥିଲି, ଯଥା ମଣିଷର ସଭ୍ୟତା, ଦେବତାସୃଷ୍ଟି, ଇନ୍ଦ୍ରିୟଗ୍ରାହ୍ୟ ଅନୁଭୂତି, ଅତୀନ୍ଦ୍ରିୟ ଚେତନା, ସ୍ୱାର୍ଥ, ଆତ୍ମକୈନ୍ଦ୍ରିକତା, ଅସୀମର ପରିକଳ୍ପନା ଇତ୍ୟାଦି । 'ଗ୍ରହ' ପ୍ରବନ୍ଧର ଆଲୋଚ୍ୟ ବିଷୟ 'ଲେଖକର ମନ ଉପରେ ନାନା ବ୍ୟକ୍ତି, ବସ୍ତୁ ଓ ଧାରଣାର ପ୍ରଭାବ ।' 'ଶେଷ ଅଙ୍କ'ରେ ନାଟକ ଓ ଉପନ୍ୟାସର କଥାବସ୍ତୁର ପରିଣତି ସମ୍ପର୍କରେ ଆଲୋଚନା କରାଯାଇଥିଲି । 'ନାଲି ସଡ଼କର ଡିମା'ର ବିଷୟ ସାହିତ୍ୟର ବିଷୟବସ୍ତୁରେ ପାରମ୍ପରିକତା ଓ ନୂତନତା ।' 'କମ୍-ଭୂତ' ପ୍ରବନ୍ଧରେ ସାହିତ୍ୟରେ ଉଦ୍ଭଟତ୍ୱର ତାତ୍ପର୍ଯ୍ୟ । 'ଗଣସାହିତ୍ୟ'ର ବିଷୟବସ୍ତୁ ପ୍ରବନ୍ଧର ନାମରୁହିଁ ଅନୁମିତ ହେବ । 'ଶିଳ୍ପୀ ଓ ମଣିଷ' ଗୋଟିଏ କାଳ୍ପନିକ ଚିଠି ଆକାରରେ ଲେଖା ପ୍ରବନ୍ଧଟିଏ, ତା ବିଷୟବସ୍ତୁ "ସାହିତ୍ୟ-ସ୍ରଷ୍ଟାଙ୍କ ଜୀବନ ଓ ତାଙ୍କ କଳା" ।

ଏସବୁ ପ୍ରବନ୍ଧରେ ତାତ୍ତ୍ୱିକ ବିଶ୍ଳେଷଣ ଛଡ଼ା ଚରିତ୍ର ସୃଷ୍ଟି, ଚରିତ୍ର ମାଧ୍ୟମରେ ଭାବ ଅଭିବ୍ୟକ୍ତି, ରସସୃଷ୍ଟି, କଳ୍ପିତ ଚରିତ୍ର ଚିତ୍ରଣ ମଧ୍ୟ ଉଦ୍ୟମ କରାଯାଇଥିଲି । ନୂତନ ଶୈଳୀ ଛଡ଼ା ଓଡ଼ିଆ ଭାଷାରେ କିଛି ନୂତନ ପ୍ରୟୋଗ ବି ଏ ପ୍ରବନ୍ଧମାନଙ୍କ ଆଭିମୁଖ୍ୟ ଥିଲି । ତା ପୂର୍ବରୁ ସାଧାରଣତଃ ଗତାନୁଗତିକ ପନ୍ଥା ଥିଲି ଯେ ସଂସ୍କୃତିଆ ଭାଷା ଓ ପ୍ରୟୋଗ ହିଁ ତାତ୍ତ୍ୱିକ ବିଶ୍ଳେଷଣ ପାଇଁ ଏକମାତ୍ର ପନ୍ଥା, ଏ ନୂଆ ଉଦ୍ୟମର ଉଦ୍ଦେଶ୍ୟ ଥିଲି ଜୀଅନ୍ତା କଥା କଥିତ ଭାଷାରେ ଚିନ୍ତା ଅନୁଭୂତିର ସାହାଯ୍ୟ ନେଇ ଭାବ ପ୍ରକାଶ କରିବା ଓ ସେଥିପାଇଁ ଭାଷାରେ

ନୂଆ ନୂଆ ପ୍ରୟୋଗ ଉଆଣ କରିଦେବା । ସେତେବେଳେ ସ୍ୱଭାବରେ ଏ ନୂଆ ପ୍ରୟୋଗର ଉଦ୍ୟମ ଅନେକଙ୍କ ମନକୁ ପାଇଲା ବୋଲି ଲାଗୁଥାଏ । ସ୍ୱଭାବରେ, ତାତ୍ତ୍ୱିକ ଆଲୋଚନାର ସ୍ୱଭାବରେ ବି ସେ କାଳର ମୋର ଏ ପରୀକ୍ଷା-ପରୀକ୍ଷି ଅନ୍ତତଃ ମୋ ନିଜ ଲେଖା ପ୍ରତି ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମୁଁ ଭାବେ । ଗୋଟିଏ ଗୋଟିଏ ପ୍ରବନ୍ଧ ଖୁବ୍ ସ୍ୱତନ୍ତ୍ର ସମସ୍ତ ଦେଇ ଲେଖୁଥାଏ । କେତେ ବ୍ୟକ୍ତିଗତ ସ୍ମୃତି ମନେପଡ଼େ । 'ବାଇଆ କଳ'ର ପାଣ୍ଡୁଲିପି ଘେନି ମୋର ପୁରୁଣା ଅନ୍ତରଙ୍ଗ କାହ୍ନୁ ଭାଇଙ୍କ ସଙ୍ଗରେ ସହକାର ପ୍ରେସକୁ ଗଲି, ଶ୍ରଦ୍ଧେୟ ୰ ବାଳକୃଷ୍ଣ କରଙ୍କ ସଙ୍ଗେ ଚିହ୍ନା ହେଲି । ଲେଖାଟି ସେ ନେଲେ, ଛପା ହେଲା । ମୋ ବନ୍ଧୁମାନେ ଖୁବ୍ ଖୁସି ହେଲେ । ପଦାରୁ ବହୁତ ଉତ୍ସାହ ମିଳିଲା, ବାଳକୃଷ୍ଣ ବାବୁ ବି ବହୁତ ଉତ୍ସାହ ଦେଲେ । ଏସବୁ ପ୍ରବନ୍ଧ ଲେଖି ଆଶା, ଉତ୍ସାହ ଓ ଅଧ୍ୟବସାୟ ବଢ଼ିଲା ଓ ଚହ୍ଲାକଣା ହେଲି । ତେଣୁ ଏଗୁଡ଼ିକ ସାଇତି ରଖିଥିଲି । ପ୍ରଥମ ଥର ଏଗୁଡ଼ିକୁ ଏକାଠି କରି 'କଳା-ଶକ୍ତି' ଛାପିବାର ବ୍ୟବସ୍ଥା କରିଦେଇଥିବାରୁ ମୁଁ ମୋର ତରୁଣ ବନ୍ଧୁ ଶ୍ରୀ ଶରତ କୁମାର ମହାନ୍ତିଙ୍କୁ କୃତଜ୍ଞତା ଜଣାଉଛି ।

ମୋ ବୁଦ୍ଧି ସାରିବା ଆଗରୁ 'ସହକାର' ମାସିକ ପତ୍ରିକାର କେଉଁ ବର୍ଷର କେଉଁ ସଂଖ୍ୟାରେ ଏଥିରୁ କେଉଁ ପ୍ରବନ୍ଧଟି ବାହାରିଥିଲା ସେତକ କହିବି । ମୋର ବିଶ୍ୱାସ 'ସହକାର'ର ୧୬ଶ ବର୍ଷ ପ୍ରଥମ ସଂଖ୍ୟା, ଅପ୍ରେଲ ୧୫ ତାରିଖ ୧୯୩୭ ସାଲରେ ବାହାରିଥିଲା ।

## 'ସହକାର'ର ୧୬ଶ ବର୍ଷ

(୧) ୧ମ ସଂଖ୍ୟାରେ 'ବାଇଆ କଳ', (୨) ୨ୟ ସଂଖ୍ୟାରେ 'ଭଙ୍ଗା ଗ୍ରନ୍ଥ', (୩) ୩ୟ ସଂଖ୍ୟାରେ 'ପଥର ଚକ', (୪) ୪ର୍ଥ ସଂଖ୍ୟାରେ 'ତାଧିନ୍ ଧିନା', (୫) ପୂଜା ସଂଖ୍ୟାରେ 'ଲୋକହସା', (୬) ୭ମ ସଂଖ୍ୟାରେ 'କଳା-ଶକ୍ତି', (୭) ୮ମ ସଂଖ୍ୟାରେ 'କୁଆତର', (୮) ଏକତ୍ର ୧୧ଶ ଓ ୧୨ଶ ସଂଖ୍ୟାରେ 'କାରୁଣୀ ।'

## ସହକାର ୧୭ଶ ବର୍ଷ

(୯) ୨ୟ ସଂଖ୍ୟାରେ 'ବନ୍ଧାଖୋଲା', (୧୦) ୪ର୍ଥ ସଂଖ୍ୟାରେ 'ଏପାରି ସେପାରି', (୧୧) ୬ଷ୍ଠ ସଂଖ୍ୟାରେ 'ଶାରଦୀୟା', (୧୨) ୭ମ ସଂଖ୍ୟାରେ 'ଗ୍ରାଇ' ।

## ସହକାର ୧୮ଶ ବର୍ଷ

(୧୩) ୧ମ ସଂଖ୍ୟାରେ 'ଶେଷ ଅଙ୍କ', (୧୪) ୨ୟ ସଂଖ୍ୟାରେ 'ନାଲି ସଡ଼କର ଛିମା', (୧୫) ୫ମ ସଂଖ୍ୟାରେ 'ଜମ୍-ଭୂତ', (୧୬) ୬ଷ୍ଠ ସଂଖ୍ୟାରେ 'ଗଣ ସାହିତ୍ୟ ।'

## ସହକାର ୧୯ଶ ବର୍ଷ

(୧୭) ୫ମ ସଂଖ୍ୟାରେ (ସମ୍ଭବତଃ ଅଗଷ୍ଟ ୧୯୩୯) 'ଶିଳ୍ପୀ ଓ ମଣିଷ ।'

ଗୋପୀନାଥ ମହାନ୍ତି

ପ୍ଲଟ ନମ୍ବର ୨୦୦
ୟୁନିଟ୍ ୩, ଭୁବନେଶ୍ୱର

୨୭ । ୧୧ । ୭୩

# ସୂଚୀ





# ବାଉଆ କକ

ସେଇ ! ଝାମ୍ପୁରି ବରଗଛ ଡାଳରେ କଣ ଗୋଟାଏ ଅଛି ! ଏ ପାଖ ସେପାଖ ଡିଆଁ ମାରି ସେ ଡାଳ ଝଡ଼ାଇବାରେ ସବୁବେଳେ ଲାଗିଥାଏ । ଅଧ ବଡ଼ ବାପାଙ୍କ ମାଲଣ୍ଡି ଗଛଟା ତାଙ୍କ ସାଇକ ଯାଉଁ ଯାଉଁ ଠିକ୍ ଯେମିତ ବର ଚକୁଳ ସେମିତ ବାସେ । ପାଞ୍ଚଗଛିଆଠିଁ ରାତି ଅଧରେ ଗୋଟାଏ କଣ କାନ୍ଦେ, କଅଁଳା ପିଲାପରି କୁଁଆଁ—କ୍ୱାଁ—କୁଁ—ଆଁ ... ।

ଓଡ଼ିଶା ମଫସଲର ରାତି ! କେଡ଼େ ଭୟଙ୍କର ! ଯେଉଁଠି ଗୁଡ଼ି ସେଇଠି ଭୂତ, ଯେଉଁଠି ହୁଙ୍କା ସେଇଠି ସାପ, ଯେଉଁଠି ବୁଦା ସେଇଠି ଗୋଟାଏ କଣ ହଲର୍ ହଲର୍ । ମାଲେ ! ଏ ଘରୁ ସେ ଘରକୁ ଯିବାକୁ ଗୋଡ଼ ଚଳେ ନାହିଁ । ସନ୍ଧ୍ୟାରେ ପେତନୀ, ଗେଣ୍ଡ଼ରେ ଭୂତ, ବାଉଁଶ ନଡ଼ିଆ ଗଛରେ କଣ ଗୋଟାଏ—ତାର ଡେଙ୍ଗା ଡେଙ୍ଗା ଗୋଡ଼, ଆଉ ଖଣ୍ଡେ ପରି ଦାନ୍ତ । ଆଗକୁ ଅନାଇଲେ ଖାଲି କଡ଼କଡ଼ ମଡ଼ମଡ଼—ଆଉ ଚିରଗୁଣୀ ଆଲୁଅ । କେହି ତ ଦେଖି ନାହିଁ । ହରି ବୋଉ ମନା ବୋଉଠୁ ଶୁଣିଥିଲେ । ମନା ବୋଉ ଶୁଣିଥିଲେ ଶାଶୋଳ ଗାଁର ବୁଢ଼ା ଗୁହଳବାଲାଠୁଁ । ସେ ନିଜ କାନରେ ଶୁଣିଛି ମକୁନ୍ଦ ସାହୁ ବୁଢ଼ା କହୁଥିଲା । କିଛି ତ ଠିକ୍ ନାହିଁ । ତେବେ ଘଟଣା ତ କମ୍ ଲୋକେ ହୁଅନ୍ତି ନାହିଁ । ଝଡ଼ା-ଝଡ଼ି, ଫୁଙ୍କାଫୁଙ୍କି, ଦି ମୁହଁ ଛୁଟେ, ସେଇଠି ଆଖି ବୁଜି ହୋଇଯାଏ । ଆମ ଓଡ଼ିଆ ଜାତିଟା ତ ଠିକ୍ ଏହିପରି । ଏଡ଼ୁଟି ଦିନୁ ଖାଲି ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ । ସାହସ ବୋଲି ଯଦି କିଛି ଥାଏ, ତେବେ ସେ ଆପେ ଆପେ ପାଣି ହୋଇଯାଏ । ତଥାପି ଆମ ଦେଶ ସାହିତ୍ୟକୁ ଅନାଇ ମନେ ହୁଏ, ଯେମିତି ଏସବୁ କଥାର କୌଣସି ନାମ ଗନ୍ଧ ନାହିଁ । ଅଜଣା ଅଶୁଣାର ଏହି ଯେଉଁ ଗାଉଁଲି ପ୍ରକୋପ, ତାର ଛୁଆ ଆମ ସାହିତ୍ୟରେ ମଣି ନାହିଁ । ହୁଏତ ଆମ ଦେଶର ସାହିତ୍ୟିକ ଏସବୁ ଗାଲଗପ କଥାର ଯେ ଗୋଟାଏ ସାହିତ୍ୟ ହିସାବରେ ମୂଲ୍ୟ ଅଛି, ତାହା ଭାବିପାରି ନାହାନ୍ତି । ଅଥବା ଦି ଅକ୍ଷର ଇଂରାଜୀ ପାଠ ପଢ଼ିଲେ ଲାଜ ବି ମାଡ଼େ ଏସବୁ କଥା ଭାବିବାକୁ । ତେବେ ଏ ଯେ ଗୋଟାଏ ବଡ଼ ଅଭାବ, ଏଥିରେ ସନ୍ଦେହ ନାହିଁ । ଆମେ ଜାଣି ଜାଣି ସାହିତ୍ୟର ଗୋଟାଏ ହାତପାଆନ୍ତା ମିଠା ଫଳକୁ ଛାଡ଼ି ଦେଉଛୁଁ ।

ଉଚ୍ଚ ସାହିତ୍ୟର ଗୋଟାଏ ବଡ଼ ଉପାଦାନ—ମଣିଷକୁ ଆଚମ୍ବିତ କରିବାର ଗୁଣ (Principle of wonder) । କୌଣସିଥିରେ କିଛି ବିଶେଷତ୍ୱ ଦେଖିଲେ ବା କିଛି ନୂଆ କଥା ଦେଖିଲେ ଏହିପରି ଭାବ ଆସିଥାଏ । ଯାହା ଅଜଣା ଅଶୁଣା, ବିଶେଷତଃ ଯାହା ଅସ୍ପଷ୍ଟ, ତହିଁରେ ସାହିତ୍ୟର ବିଶେଷ ଉନ୍ନତି । ବିଜୁଳି-ବତୀ ଆଉ ଜହ୍ନ ଆଲୁଅର ପ୍ରଭେଦ ଯେତିକି ବିଜ୍ଞାନ ଆଉ କଳାର ପ୍ରଭେଦ ସେତିକି । ବିଜ୍ଞାନରେ ସବୁ ସଫା, ସବୁ ଜଣାଶୁଣା ଦେଖାପରଖା । ପୁଣି ସେମିତି ବିଜ୍ଞାନର ସବୁ କଥା ସୀମାବଦ୍ଧ । ଯେଉଁଠି ଅସ୍ପଷ୍ଟ କିଛି ନାହିଁ, ସବୁ ମପାମପି, କଷାକଷି—ଯେଉଁଠି ଅସମାପିକା, ଅସୀମର ନାମଗନ୍ଧ ନାହିଁ, ଇନ୍ଦ୍ରିୟମାନଙ୍କର ଅପରିଚିତ କିଛି ନାହିଁ । କଳାର ଠିକ୍ ବିପରୀତ । ଜହ୍ନର ଝାପ୍ସା ଆଲୁଅରେ ଇନ୍ଦ୍ରିୟ ପରିଚୟର ସୀମା ଡେଇଁ ବହୁତ ବିଷୟ ଅନୁଭବ କରିବାକୁ ହୁଏ । ସେଥି ପାଇଁ ସାଥୀ କଳ୍ପନା । ଆମ୍ବଗଛ ତଳେ ପତ୍ର ଫାଙ୍କର ଛୁପଛୁପିକା (ଶବଳୀକୃତ—chequered light) ଆଲୁଅ । କିଏ ଜାଣେ କେଉଁଠି କିଏ ଅଛି ? ହୁଏତ ସେ ବାଙ୍କୁଲି ଡାଳରେ ଗୋଡ଼ ଦିଟା ଲମ୍ବେଇ ଦେଇ—ନ ହେଲେ ଛୁପଛୁପିକା ଛାଇ ତଳେ—ମଙ୍ଗଳା ନାଚୁଥିବ ବା କିଏ ଜାଣେ ? ସୀମା ନାହିଁ, ଇନ୍ଦ୍ରିୟବୋଧ ନାହିଁ, ଅସୀମର ପରଶ ଲାଗି କଳ୍ପନା ଧାଇଁଯାଏ । ମଣିଷଙ୍କ ପରି କବିର ideal ଦୂରକୁ ଦୂରକୁ ଘୁଞ୍ଚି ଘୁଞ୍ଚି ଯାଉଥାଏ ।

ଆଚମ୍ବିତକାରୀ ଗୁଣ କଳାର ପ୍ରଧାନ ଉପାଦାନ । ତହିଁରେ ସବୁ ଦିଶେ ନୂଆ ନୂଆ, ପୁରୁଣା ଭିତରେ ହଠାତ୍ ଅଦେଖା ଅଶୁଣା ନୂଆ ରୂପ ଦେଖି ଦୁଇଟି ଭାବ ଆସେ, ଆନନ୍ଦ ଆଉ ଭୟ । ନୂଆ ମୂର୍ତ୍ତିର ସନ୍ଧାନରେ ଆନନ୍ଦ ହୁଏ, ପୁରୁଣା ଜଗଡ଼ବନ୍ଧା ଗତ ଭିତରେ ନୂଆ ସୌନ୍ଦର୍ଯ୍ୟ, ନୂଆ ଆଦର୍ଶ, ମନଭୁଲାଣି ନୂଆ ଅର୍ଥ ଦେଖି । ଆଉ ଯେଉଁଥିରେ ମଣିଷର ହାତ ଥିଲାପରି ଦିଶେ ନାହିଁ, ଯହିଁରେ ପୁରୁଣା ନିକଟ ସମ୍ବନ୍ଧ ହଠାତ୍ ଓଲଟ୍‌ପାଲଟ୍ ହୋଇ ଦୂରକୁ ଦୂରକୁ ଖସିଯାଏ ତହିଁରେ ହୁଏ ଭୟ । ସିଂବାଳୁଆଖିଆ ଦରବୁଢ଼ା ସଜନା ଗଛଟା । ତାରି ଭିତରେ ପୁଣି କିଏ ଗୋଟାଏ କଡ଼କଡ଼ ମଡ଼ମଡ଼—ପୁଣି ସେଠି ଦ୍ୱିପହରେ ! ଉଭୟ ଆଡ଼କୁ ଚମତ୍କାର । ଆନନ୍ଦ ଆସିଲେ ବି ଭୟ ଓ ବିସ୍ମୟ ହୁଏ । ଏ ଦୁଇଟି ଗୁଣ ମାନ୍ଧାତା ଅମଳ ଆଗରୁ ସାରା ମଣିଷ ଜାତିଟାକୁ ଗାରେଇ କରି ରଖିଛି । ନିଗ୍ରୁଟିଆ ରାତିର ସାଇଁ ସାଇଁ ଉପରେ କଦମ୍ବ ଗଛଆଡ଼ୁ ଗୋଟାଏ ଗୋଠଖଣ୍ଡିଆ ବଇଁଶୀସ୍ୱର ଭାସିଆସେ । ତହିଁରେ ଯେପରି ସାରା ସଂସାର ଆତ୍ମହରା । ଅଧ ରାତିରେ ବାଟଘର ପିଢ଼ା ଉପରେ କିଏ ଗୋଟାଏ ହୁଁ ହୁଁ ହେଲେ ବି ସମସ୍ତେ ଉତ୍କର୍ଣ୍ଣ, ଉଦ୍‌ଗ୍ରୀବ ଓ ଉନ୍ନତନାସା । ମୂଳ ଉପାଦାନ ସେହି Principle of wonder—ଗୁଣ କେବଳ ଭିନ୍ନ । ତେଣୁ ଚମତ୍କାରିତା ଗୁଣ ସବୁଦିନେ ଉଚ୍ଚ କଳାକୁ ଗାଦି ମାଡ଼ି ବସିଛି । ଆଜି ବି

କାହିଁ ଅଗନାଗ୍ନି ବନସ୍ତ ଭିତରେ ଗଛଛେଳିପିନ୍ଧା ଶକୁନ୍ତଳା ଦାଣ୍ଡି ପଢ଼ିଲେ ଆନନ୍ଦରେ ମନ ଲୁଣ୍ଠେ ମୋଟ । ସେହିପରି ଷକଟାଳ ମଶାଣିରେ ଟହେଟହେ ହସ ଭିତରେ ମଶାଣିଚଣ୍ଡୀ—କଳାର ଦୁଇଟି ଅଙ୍ଗ, ଗୋଟିଏ ବାପ—ଆଶ୍ଚର୍ଯ୍ୟକାଗ୍ରି ସନ୍ତ୍ରା । ସବୁ ସାହିତ୍ୟରେ ତ ଏହି ଗୁଣ ହିଁ କଳାର ବଡ଼ ବଡ଼ ଘଟନା ଗଢ଼ିଛି ? ଆମ ଓଡ଼ିଆ ସାହିତ୍ୟ କି ଦୋଷ କଲା ଅସ୍ପଷ୍ଟତାର ଏତେ ଉପାଦାନ ଥାଉଁ ଥାଉଁ, ଆମର ଘର ଓଳିତଳେ ଆଶ୍ଚର୍ଯ୍ୟକାଗ୍ରି ସମ୍ଭାର ଏତେ ଖେଳ ପଡ଼ିଆ ଥାଉଁ ଥାଉଁ ଆମେ ସବୁ ଉପାସ୍ଥ ଆପେ ଆପେ ଛାଡ଼ି ଦେଉଥାଉଁ ।

ଚମତ୍କାରୀ ଗୁଣ ଉପରେ ସାଧାରଣତଃ ତିନପ୍ରକାର ସାହିତ୍ୟ ଦେଖାଯାଏ । ଉତ୍କୋଟିଯାକ ଆନନ୍ଦ ଭୟ ବିସ୍ମୟ—ଚମତ୍କାରୀ ଗୁଣର ଆଉ ଆଉ ସନ୍ତାନଙ୍କ ସ୍ୱରୂପରେ । ଆଖି ମେଲି ଏ ସଂସାରରେ ଯାହା ଦେଖୁଁ, ତା ଉପରେ ଅଦେଖା ଅଶୁଣା ଆହୁରି ଦଳେ ଶକ୍ତିର ଲୀଳାଖେଳା 'ଭୟ' ଉପାଦାନଟି ବେଶୀ ଅଂଶରେ ଆଣିଥାଏ । ଭୂତ ପ୍ରେତ, ଡାହାଣୀ ଚିରଗୁଣୀ, ଦେବାଦେବୀ ଦେମନ୍ତଙ୍କର ଏ ଧରଣ ସାହିତ୍ୟରେ ସ୍ୱରୂପ । ଶତଶତ ବର୍ଷର ଧର୍ମ୍ମ ଅଜା ଅମଳର ବିଶ୍ୱାସ ଭିତରେ ବଢ଼ିଥାଉଁ । ଏସବୁ ଅଦେଖା ଅଶୁଣା ଚଳନ୍ତି ଶକ୍ତିମାନେ ଯେମିତି ଆମର ରକ୍ତ ଭିତରେ ବସା ବାନ୍ଧିଛନ୍ତି । ଯେତେ ବଡ଼ ଗ୍ରନ୍ଥ ହେଲେ ବି ପିଲେଇପାଣି ହୋଇ-ଯାଏ । ଏ ଉପାଦାନରେ ଆମ ଦେଶର ସାହିତ୍ୟ ବଢ଼ିନାହିଁ । ଖାଲି ପିଲାଙ୍କନେ ଅଟ୍ଟ ଅବୁଝା ହେଲେ ଯାହା ଜେଜେମା କେତେଟା କଥା କହନ୍ତି । ଅନ୍ୟ ଦେଶରେ ଏହାର ଉପରେ କେତେ ବଡ଼ ବଡ଼ ସାହିତ୍ୟ ଜନ୍ମିଛି । କାହିଁକି ବା ନ ହେବ ? ନିଜର ମନଗଢ଼ା କଳ୍ପନା ଲେଖିବା ଲାଗି ତ ଅସରନ୍ତି Hyphen ରହିଛି ? ତା ଛଡ଼ା ପୁଣି ଲୋକଙ୍କ ଉପରେ ପ୍ରଭାବ ଅସୀମ । ଭୂତ ଗପରୁ ଲୋକେ ଆହୁରି ଦୂରକୁ ଯାଇଛନ୍ତି । ଆମର ଋଷି ମୁନିମାନେ ତ ଏଡ଼େ ବଡ଼ ଦେଖା-ପରଖା ସଂସାରଟାକୁ ସ୍ୱପ୍ନ ବୋଲି କହି ଯାଇଛନ୍ତି । ତେବେ 'ସତ' କଣ ? ତେବେ କଣ ଯାହା ଦେଖୁଥାଉଁ ସେସବୁ ମିଛିଲା ଖେଳା ? ଆଉ ଠିକ୍ ତାର ଭିତରେ ବସି ଖେଳନ୍ତି ଅଚିହ୍ନା ଶକ୍ତି ଖାଲି ଦଉଡ଼ି ଟାଣିବାରେ ଲାଗିଛି । ମଣିଷର ଆଗପଛ ଉପରେ, ଏପରିକି ଚିନ୍ତା ଉପରେ ଅଦେଖା ଶକ୍ତିଗୁଡ଼ାକ କିପରି କାମ କରେ ? ମଣିଷର ଅଧଚେତା (ସୁଷୁପ୍ତି) ଅବସ୍ଥା ଉପରେ ବାହାରର ଶକ୍ତି କିପରି କାମ କରେ ? ଏଣେ ସମ୍ବଲପୁର ଜିଲ୍ଲାର କେଉଁ ଅଜଣା ମୁଲକରେ ନନ୍ଦ ଡାକ୍ତର ଆରପାରିକୁ ଟିକଟ କାଟୁଛନ୍ତି, ତେଣେ ଠିକ୍ ସେତିକିବେଳେ କେନ୍ଦ୍ରାପଡ଼ା ଭିତରେ ମଫସଲୀ ଗାଁରେ ତାଙ୍କ ଭାଇ ସ୍ୱପ୍ନ ଦେଖୁଛନ୍ତି "ଅରେ ମୁଁ ଅମୁକଠିଁ ମରିଗଲି ।" ଭାବିବା ଲାଗି ବହୁତ କଥା ଅଛି । ଦେହ ହାଲୁସି ଉଠେ, ଲୁମ ଟାଙ୍କୁର ଉଠେ ।

ଏପ୍ରକାର ସାହିତ୍ୟ ନିର୍ଭର କରେ ବର୍ଣ୍ଣନା ଉପରେ । ତେବେ ଗୋଟିଏ କଥା, ସବୁ କଥା ଖୋଲି ବର୍ଣ୍ଣନା କଲେ ଏସବୁ ମାଟି ହୋଇଯାଏ । ଏସବୁ ବିଷୟ ନିଜେ ଅସୀମ; କାରଣ ସୀମାର ଇନ୍ଦ୍ରିୟଗ୍ରାହ୍ୟ ବେଷ୍ଟନୀ ଭିତରେ ଏପରି ଅଦେଖା ଅଶୁଣା ବସ୍ତୁ ଆସେ ନାହିଁ । ସୀମାବଦ୍ଧ ଉପାୟରେ ଏସବୁ କଥା ମାପି ବସିଲେ ଆମର ନିର୍ଦ୍ଦିଷ୍ଟ ସୀମା ଭିତରେ ତାର ଯେତିକି ଅଂଶ ପଡ଼େ, ସେତିକି ରହି ବାକି ଭାଗ ଆମ ହାତପାଆନ୍ତାରୁ ଖସିଯାଏ । ଯାହା ବି ରହେ ତାହା ପାତ୍ର ଯେମିତି ପାଣିର ଆକାର ହେଲି ପରି ଆମର ସୀମା ଭିତରେ ଆମର ବର୍ଣ୍ଣନାକୁ ଲାଗି କସିକାସି ରହିଯାଏ, ଫଳରେ ବର୍ଣ୍ଣନାଟି ସାଧାରଣ ହୋଇଯାଏ । ଅଦେଖା ଅଶୁଣା ଶକ୍ତିର ଅସରନ୍ତି ଭୟ-ବିସ୍ମୟ ତିଳେ ମାତ୍ର ଆସେ ନାହିଁ । ତେଣୁ ଅସ୍ପଷ୍ଟ ବଙ୍କିମାକୁ ବଖାଣିବାକୁ ଯାଇ ଅସ୍ପଷ୍ଟ ହାଲୁକା ହୋଇଯାଏ । ଅନିର୍ଦ୍ଦିଷ୍ଟ ଉପାୟ ଧରିଲେ ସୁବିଧା । ଭୂତ, ପ୍ରେତ, ଡାଆଣୀ, ଚିରଗୁଣୀ—ଏମାନଙ୍କ ରୂପ ବର୍ଣ୍ଣନା କରି ବସିଲେ ସବୁ ସରିଲା । "ବାରିଆଡ଼େ ସାହାଡ଼ା ଗଛରେ କିଏ ଗୋଟାଏ ଅଛି"—କେବଳ କାଳ ହର୍ଣ୍ଣି ଏତିକି କହିଲେ ଯାହା ଫଳ ହୁଏ, ରୂପଗୁଣ ବାଖ୍ୟାନ ବସିଲେ ତା ହୁଏ ନାହିଁ, ବରଂ ହସ ମାଡ଼େ ।

ଭୂତ ଡାହାଣୀ ଛଡ଼ା ଅଦ୍ଭୁତ ଗୋଟିଏ ପ୍ରକାର ଗପ ଅଛି—ଯେଉଁଥିରେ ଆଖିରେ ଭେଲିକି ଲଗାଇଲା ପରି ଜୀବନକୁ ପାଣି ଛଡ଼ାଇଦେଇ କାମ କରିବାକୁ ହୁଏ । ଓଡ଼ିଶାରେ ଗଦ୍ୟ ଲେଖା ତ ଏକେ ବିରଳ । ତହିଁରେ ପୁଣି ପିଲାବେଳର କଥା-କାହାଣୀ ଛାଡ଼ିଦେଲେ ଏ ଦିଗରେ ଓଡ଼ିଆ ଲେଖା ବେଶୀ ପାହୁଣ୍ଡ ଯାଇ ନାହିଁ । ରଜାପୁଅ ଯାଏ ପାରିଧିକି, ତାପରେ ଅସୁର ଅସୁରୁଣୀଙ୍କ ସଙ୍ଗେ ଦେଖା ସାକ୍ଷାତ୍ ଆଉ କଳି କଜିଆ । ସାଙ୍ଗେ ସାଙ୍ଗେ ମନପବନ ପକ୍ଷିରାଜ ଘୋଡ଼ା ଛୁଟାଇ କୁଆଡ଼େ କୁଆଡ଼େ ହାଜର । ଗୁଇନ୍ଦା ପୁଲିସ ଗପ ବିଦେଶରେ ବହୁତ କଟୁଛି । ଓଡ଼ିଆରେ ଖୁବ୍ ଅଳ୍ପ ।

ତା ପରେ ରୋମାନ୍ସ (Romance) ଚମତ୍କାରିତ୍ୱ ଗୁଣର ଚରମ ବିକାଶ । ସିରୁଆ ନଈରେ ଚଉଦ ହାତ ଲମ୍ବା ବାଳ ଭାସି ଆସିଲା । ରଜାପୁଅ ଅଡ଼ି ବସିଛି ସେହି ଝିଅର ହାତ ଧରିବ । କେତେ ଖୋଜା ଖୋଜି, ମାଲୁଣୀ ଗାରଡ଼ି, ଅସୁର, ପକ୍ଷିରାଜ—କେତେ କଥା । ଉପରେ ଯେଉଁ ଜୀବନଛଡ଼ା ଭେଲିକିଲଗା ସାହସୀ କାମ କଥା ଲେଖା ହେଲା, ତାଠୁଁ ଏ ଅଲଗା । ସେଥିରେ ଦେହର କଥା, ବୁଦ୍ଧିର କଥା ବେଶୀ । ମନ ଖୁବ୍ ଖୁସି ହୁଏ । ବିପଦ ଆଉ ଜୋର-ଜବରଦସ୍ତ ଦେଖି ନିଜ ମନରେ ସେଇ ସେଇ ଭାବ ଆସେ । ସେ ସବୁ ହେଲା ପଶୁର ପ୍ରବୃତ୍ତି, ପିଲାମନର କୌତୁକ, ଡେଇଁବା, ନାଚିବା, କାମୁଡ଼ିବା, ଆମ୍ପୁଡ଼ିବା, ଖାଇବା, ଜିତିବା,

ଜବରଦସ୍ତି ଝ୍ୟାମ୍ପି ଆଣିବା, ବିପଦରୁ ଉଦ୍ଧାରକା—ଏଭଳି Romanceରେ ଏସବୁ ତ ଭୂଣା-ଅଧିକେ ଥାଏ । ତା ଉପରେ ଦୁଇଟି ଗୁଣ ଥାଏ—(୧) ସୌନ୍ଦର୍ଯ୍ୟ-ପୂଜା, (୨) ହୃଦୟର କଥା; ଯେପରି ଭଲ ପାଇବା, ପର ଦୁଃଖରେ ଦୁଃଖୀ ହେବା, ନିଜ ଭିତରେ ଅନୁଭବ କରିବା—ଏହି ସବୁ । ସ୍ଥାନ-କାଳପାତ୍ର ସମ୍ଭବ ଅସମ୍ଭବ ମାନେ ନାହିଁ । କଳ୍ପନାର ଯାଦୁକାଠି ଛୁଇଁ ସବୁ ବଦଳି ହୋଇଯାଏ । ଚମତ୍କାରି ଗୁଣର ଏ ଗୋଟିଏ ପ୍ରଧାନ ବିଭବ, କଳା ହିସାବରେ ଖୁବ୍ ଉଚ୍ଚ । ମଣିଷ ଏଥିରେ ନିଜର ସୌରଭ ନିଜେ ଅନୁଭବ କରେ । ସ୍କୁଲଘର, ବରଷାରେ କାନ୍ଥରୁ ଫାଟେ ଲେଖାଏଁ ପଡ଼ିଯାଇଛି । ଦରଦ୍ର କାନ୍ଥ, କଣା ସ୍କୁଲ ପୋକର ଓରା, ତା' ଭିତରେ କେମିତି ବୁଢ଼ୀ, ମୋଟେ ଗୋଟାଏ ଦାନ୍ତ । Romance ବଳରେ ତାର ସୁଖଦୁଃଖ, ପ୍ରେମ, ପ୍ରତ୍ୟାଖ୍ୟାନ ତାର ପାଇଁ ମନ ସାଙ୍ଗିଦକଟି ମଣ୍ଡି ଦେଇ-ପାରେ । ତାର ଦରଦ୍ର କୁଡ଼ିଆର ପ୍ରତ୍ୟେକ ଫାଟ Romance କଳାର ଅସରନ୍ତି ଝରଣା ହୋଇପାରେ । Romance ଖୋଜେ ଚିରଯୌବନ; ଦେହରେ ବଳ, ହୃଦୟରେ ଉତ୍ପ୍ରେକ୍ଷା, ମନରେ ସୀମାହୀନ ଆଶା । ତାର ସମ୍ଭବ ଅସମ୍ଭବ କିଛି ନାହିଁ, ସବୁ ତ କଳ୍ପନା, ଜୀବନଟା ତ ଗୋଟାଏ କଳ୍ପନା । ତେବେ Romanceର କଳ୍ପନା ବସ୍ତୁ ଅଲଗା ଏତିକ ଯାହା । ମନ କଣ ନ ଖୋଜେ, କିନ୍ତୁ ସବୁ ତ ସମ୍ଭବ ନୁହେଁ । ଅହେତୁକ ବିରହ ଦେଖାଇଲେ ପୁଲିଶ ଅଛି, ଆଇନ-ଅଦାଲତ ଅଛି । ଉଦାର ପ୍ରେମ ବିରୁଦ୍ଧରେ ଅଛି ସମାଜର ସଂସ୍କାର । ତାପରେ କେତେ ପ୍ରକାର ସୀମାର ନିଗଡ଼ ଅଛି—ଦେହର, ଜନ୍ମର, ପୃଥିବୀର । କଳ୍ପନା-ରାଜ୍ୟରେ ସେସବୁ ବନ୍ଧନ ଖୋଲିଯାଏ, ସୁଷୁପ୍ତ ଅବସ୍ଥାରେ ଜୋର କରି ସଂଯମର ବନ୍ଧନ ପରି, ତାପରେ ତ ବେଗର ପାରାବାର । ଅସରନ୍ତି ବେଗ ଲାଗି ଜୀବନ କାନ୍ଦେ, ବାସ୍ତବରେ ଯଦି ନ ହେଲା କଳ୍ପନାରେ ହେଉ । ତାପରେ ସଂସାର ଜଞ୍ଜାଳ, ଭଙ୍ଗା ଆଶା, ଅଶାନ୍ତି ଭିତରେ ପ୍ରାଣ ଛଟପଟ ହେଉଥାଏ । ଆଇନବନ୍ଧା ଗଡରୁ ବାହାର ଖୋଲା ବତାସରେ ବୁଲିବାକୁ ତେଣୁ ଚମତ୍କାର-ଗୁଣର ଏତେ ଆଦର ।

ହେଉ—ବଣ ପାହାଡ଼ରେ ଯେଉଁ ଭଙ୍ଗା କୋଠାଖଣ୍ଡ ଅରମା ଜଙ୍ଗଲରେ ଏକରକମ ପୂରିଛି, ଉପରେ ମରଲେ ଝଙ୍କାଳିଆ ରାକ୍ଷସୀ ଗଛଟା ଖୁବ୍ ବଡ଼ ଛାଇ ପକାଇଦିଏ, ତାକୁ ଦେଖିଲେ ମନେହୁଏ, ନିଶ୍ଚୟ ପ୍ରେତ ଡକେଇତଙ୍କ ଆଡ୍ଡା ହେବ ପରା । ସମୁଦ୍ର କୂଳରେ ନିଛାଟିଆ ଘର ଖଣ୍ଡେ ଦେଖିଲେ ମନେହୁଏ, ନିଶ୍ଚୟ ଏଠି ଭୟଙ୍କର କାମ କିଛି ଘଟିଛି—ଏତେ ଶୁନ୍‌ଶାନ୍ ଚୁପ୍‌ଚାପ୍ ନ ହୋଇ ଥିବ

କୁଆଡ଼େ ? ତାପରେ ଅଗନାଗ୍ନି ବନସ୍ତ ଭିତରେ ଯେଉଁ ଆଲୁଅଟା ଝରକାବାଟେ ଦିଶୁଛି ଦୂରରୁ ଦେଖି ଅନେକ ଲୋକଙ୍କର ତ ସନ୍ଦେହ ହୋଇଛି ଡାଆଣୀ, ପେଚନୀ ବା ବୁଢ଼ୀ ଅସୁରୁଣୀର ଘର ବୋଲି । ପଣ୍ଡାଗାଡ଼ିଆ ମଶାଣି ଉପର ଦିକେନିଆ ଖଜୁରି ଗଛଟା, ଜହ୍ନରାତିରେ କେତେ ଲୋକ ତ ଦେଖିଛନ୍ତି ଧୋବଲୁଗା ପିନ୍ଧି ହାତ ବଢ଼ାଇ ଦେଇ ଠିଆ ହବାର । ଗୋଟିଏ ଗୋଟିଏ ଜାଗାରେ ଗୋଟିଏ ଗୋଟିଏ ସଙ୍କେତ ଥିଲି ପରି ଜଣା ପଡ଼େ । ସେତିକ ମାନ ନେବାକୁ ହେବ, ନିଜର ଲେଖାରେ । ଲୋକଙ୍କର ବି ଏପରି ଗୋଟାଏ ଗୋଟାଏ ସୂଚନା (significance) ଥାଏ । ଆମଗାଁ ହରି ସାହୁଟା ବାଁ ଆଖିରେ କେମିତି ତରିଟି ତରିଟି ଚାହେଁ । ଘରକୁଆଣିବେଳେ ମୁଁ ତାକୁ ଦେଖି କେତେ ଡରିଛି । ଆଉ ନାକ-ଫୋଡ଼ିଆ ମା, ଯାହାକୁ ଡାହାଣୀ ବୋଲି ଗାଁଲୋକେ ନିସ୍ତୁକ ଛେଚିଲେ; ହରି-ବୋଲିଆ ଚୂଡ଼ା କିଣି ଯାଉ ଯାଉ ନିଜେ ଦେଖିଥିଲି ଯେ, ସେ ଗୋଡ଼ ଦିଟା ଉପରକୁ କରି ହାତରେ ଭରିଦେଇ ଗଛ ସାଉ ତଳ ବାଗରେ—ଏ କଣ ତାର ଦୋଷ ? ଗୋଟାଏ କଣା ଆଖି, ଗୋଟାଏ ବୋଲି ବାଙ୍କୁଲି ହଳଦିଆ ଦାନ୍ତ, ସେ ପୁଣି ମୁହଁ ବାହାରେ ଥାଏ । ଆଉ ସବୁବେଳେ ତଳକୁ ମୁହଁ ପୋତି ଠିଆ ହେଲେ ବି ଗୋଟାଏ ଆଖି ଉପର ଦୃଷ୍ଟିରେ ଶଗଡ଼ ଚକ ପରି ଘୂରୁଥାଏ । ସ୍ଥାନ ଆଉ ପାତ୍ରର ଏଇ ଯେଉଁ ବିଶେଷତ୍ୱ, ସେତିକ ଚମତ୍କାରୀ ଗୁଣର ଉତ୍କୃଷ୍ଟ ଉପାଦାନ । ଏଇ ଶ୍ରେଷ୍ଠ ବିଶେଷତ୍ୱଟି ଯେପରି ସାଧାରଣ ଗତିରୁ ବାହାର, ଅସ୍ପଷ୍ଟ ଅପୂର୍ଣ୍ଣତା ଲାଗି ସୀମାର ଅତୀତ, ଏହାକୁ ନିର୍ଭର କରି ଯେଉଁ କଳ୍ପନାର ପାରିଜାତ ଫୁଟେ, ତାହାର ସୌରଭ ବି ସେହିପରି; ତେଣୁ ଏପ୍ରକାର ସାହିତ୍ୟରେ ଏଇ ଶ୍ରେଷ୍ଠ ଶ୍ରେଷ୍ଠ ବିଶେଷତ୍ୱ ଦେଖାଯାଏ ।

ଏଇ ତ ସାହିତ୍ୟ । Realismରେ ଯେପରି ଆଖି ଆଗର ସୁନ୍ଦର କୁତ୍ସିତ, ଶୁଭ ଅଶୁଭ ସବୁ ପ୍ରକାର ପାର୍ଥିବ ପ୍ରାକୃତ ଛବି ଭିତରେ ସଂସାରର ହାନିଲାଭ ବିପତ୍ତିର କଳା ଫୁଟି ଉଠେ, ଏ ପ୍ରକାର ଚମତ୍କାରୀ ସାହିତ୍ୟରେ ଠିକ୍ ତାର ବିପରୀତ ଦିଗରେ ସ୍ୱର ଦଉଡ଼ିକଟା, ବେପରୁଆ କଳ୍ପନାର ଉଚ୍ଚ ସାହିତ୍ୟ ଗଢ଼ା ହୁଏ । ଉଭୟଥିରେ କଳା ଅଛି, ପ୍ରକାର ଯାହା ଭିନ୍ନ । ମଣିଷର କେତେ-ଗୁଡ଼ିଏ ମୌଳିକ ଗୁଣ ଅଛି, କେତେଗୁଡ଼ିଏ ଇଚ୍ଛା, କ୍ଷୁଧା, ବିତୃଷ୍ଣା । ସେ କେବେ ବଦଳି ନାହିଁ, ମୂଳରେ ଅତୁଟ ରହିଛି ବଞ୍ଚିବାକୁ ଇଚ୍ଛା, ସମସ୍ତଙ୍କ ଉପରେ ବଡ଼ ହେବାକୁ ଇଚ୍ଛା, ସ୍ତ୍ରୀ ପୁରୁଷର ଆକର୍ଷଣ, ହିଂସା, ଦ୍ୱେଷ ଇତ୍ୟାଦି ଇତ୍ୟାଦି । ସେଇ ତାରରେ ଯେତେବେଳେ ଆଘାତ ପଡ଼େ, ହୃଦସ୍ଥ ଆପେ ଆପେ ଥରି ଉଠେ । Realism ହେଉ ବା Idealism ହେଉ ଯେ କୌଣସିମତେ ମୌଳିକ ଭାବ-ଗୁଡ଼ିକ ଫୁଟାଇବାକୁ ହେବ । ତା ପରେ କେହି କହିପାରେ, ଭୁଚ୍ଛା ମିଛ କଥାଗୁଡ଼ାକ

କେବେ art ହବ ? Oscar Wilde ଆକ୍ଷେପ କରିଛନ୍ତି, ମିଛ କହିବା ଢଙ୍ଗକୁ ଢଙ୍ଗ କମି ଯାଉଛି । କାରଣ ସାହିତ୍ୟରେ ସବୁଠୁ ମିଛ ବଡ଼, ମିଛ ସବୁଠୁ ବଡ଼ ସତ । ସତ ମିଛ ବା କଅଣ ? ବ୍ୟବହାରରେ ଏହାର ସୂଚନା ଭଲ ମନ୍ଦ ହୋଇ-ପାରେ । କିନ୍ତୁ ସାହିତ୍ୟରେ ମିଛ ହେଉଛି ଗୋଟାଯାକ କଳ୍ପନା । ତାକୁ ଛାଡ଼ିଲେ art ବଞ୍ଚିବ କିପରି ?

ଆଜିକାଲିକା ବିଦେଶୀ ସାହିତ୍ୟ ଏତେ ଜଡ଼ବାଦୀ ହେଲେ ବି ଚମତ୍କାରୀ ଗୁଣର ମର୍ଯ୍ୟାଦା ଭୁଲି ନାହିଁ, କେହି କେବେ ଭୁଲି ପାରିବ ବି ନାହିଁ । ମଣିଷ ମନର ବଡ଼ ଗୁଣ, ସେ କେବେ କୌଣସି ସୀମାକୁ ଶେଷ ବୋଲି ମାନି ନେବାକୁ ଚାହେଁ ନାହିଁ । ନଜେ ଅସୀମ ଅସରନ୍ତି ସୃଷ୍ଟିର ଝଣ୍ଡେ କି ନା, ସେଥିଲାଗି । ଓଡ଼ିଶାର ପ୍ରତି ଘରେ ଚମତ୍କାରୀ ଗୁଣର ଆଦର । ଏ ଦେଶ ଗୋଟାସୁଦ୍ଧା କବି ଦେଶ, କଳାର ଦେଶ ।

କୁଆଁରପୁନେଇଁ ଜହ୍ନ, ଜହ୍ନିଫୁଲ, ଚକିଆ ମୂଷା, ଜହ୍ନି କାକୁଡ଼ି ଲତା ଭିତରେ ପୁନେଇଁ ପଣ୍ଡାଏ ପକ୍ଷୀ ଜାକ ବସି ତାଳି ମାରି ଗୀତ ଶୁଣନ୍ତି । ଢିଙ୍କିଶାଳ ସେ ପାଖରେ କୋଠିମାଳ ଭିତରେ ଖଳୁକୁଣୀ, ହାଣ୍ଡିଶାଳେ ଷଠୀବୁଢ଼େଇ । ଫଗୁଣ ପୁନେଇଁରେ କଦମ୍ବ ଗଛ ତଳେ ରାସ । "ପୂଜା" ବେଳେ ଝୁଣା-ଗୋଗୁଳ ଉହ୍ଲେଇ ହାତରେ ଧରି ଜଣବଦ ଘରେ ଦେବାଦେବୀଏ ଝମର୍ ଝମର୍ । ଓଡ଼ିଆ ଦେଶ ବୋଲି ସିନା; ନ ହେଲେ କେଉଁଠୁ ଏସବୁ ତ Classical Convention ହୋଇ ସାରନ୍ତାଣି ! ଝଣ୍ଡି ଅଦ୍ଭୁତ ଧୂଳି ଉଡ଼ାଇ ଚାଲିଯାଏ; ମେଘ ଫାଙ୍କରୁ କୋଉ ଅଜଣାର ବିଜୁଳି ଆଙ୍ଗୁଠି ଦିଶେ ଜଙ୍ଗଲ ଝାଟରେ ଭୂତ ପ୍ରେତ ଡାଆଣୀ ଡଙ୍କୁଣୀଙ୍କ ଘୁମର ଦେଖାଯାଏ । ବେଳେବେଳେ ଅଚଳ ଜଣବଦ ଗଛଗୁଡ଼ାକ ଏକାସାଙ୍ଗେ ଜୀବନ ପାଇଲା ପରି ଥରି ଥରି ହୁଏ, ବଡ଼ ବାପାଙ୍କ ଭଙ୍ଗା ଡିହ, ଯେଉଁଠି କାକୁଡ଼ି ଲଗିଛି—ବିଲୁଆଗୁଡ଼ାକ ହସି ହସି ପଦ୍ମଲ୍‌ମାମି କରନ୍ତି; ଆଉ ବାରି ତଳେ କେତେ ଜନ୍ତୁଜନ୍ତା ବଜେ କରନ୍ତି । ଠିକ୍ ତାର ପାଖରେ ଭଙ୍ଗା କୁଡ଼ିଆ ଭିତରେ ଦଦରା କାନ୍ଥ ଉପରେ, ମିଞ୍ଜି ମିଞ୍ଜି ଦୀପ ପାଖରେ ସନା ବୋଉ ଝଡ଼ୀ ଛୁଆ ମୁଣ୍ଡରେ ଶୁଖିଲା ହାଡ଼ୁଆ ପାପୁଲିଟା ଥାପୁଡ଼େଇ ଗୀତ ଗାନ୍ତି—

ବାରିଆଡ଼େ କକ—ଅ—ଅ

ବୋବାଳି ଗୁଡ଼ୁଚୁ—ଇ—ଇ—ଇ

ଜଣା ଡାକେ ସାଇଁ-ଇଁ-ସାଇଁ ।



# ଭଙ୍ଗା ଛାତି

ଅଜ ବ !

ବେଳେବେଳେ ଉଦାସ ଆଖିରେ ଉଦୁଉଦିଆ ଦିପହରେ ସେ ଧୂଳିଉଡ଼ା ଝର୍ଣ୍ଡିଆ ଭୂତକୁ ଅନାଇ ରହେ, ଆଖିରେ କେତେ କାଳର ସଞ୍ଚିତ ମିନତି ଧରି— ଆଉ ତାର ଭଙ୍ଗା ଛାତିଟା ଭିତରେ ଭିତରେ କରତି ହୁଏ ସେଇ ପୁରୁଣା ସ୍ମୃତିଟା ଘାଣ୍ଟି ଚକଟି । ଦିନ ଗୋଟାକ ଯୁଗେ-ପରି ଲାଗୁଛି । ସେଇଥର ତାର ସବୁଠୁଁ ବଡ଼ ଆଘାତ—ଦିହାତରେ ଛାତିକୁ ଚାପିରଖି ଲୋତକଳ ଆଖିରେ ଯେଉଁଦିନ ସେ ରେଲଗାଡ଼ିକୁ ଚାହିଁ ରହିଥିଲି ଓଢ଼ଣା ତଳର ଦିଓଟି ଛଳ ଛଳ ଓଦା ଆଖିକୁ । ଗାଡ଼ି ତ ଚାଲିଗଲା, ଖାଲି ଝରକା ବାହାରେ ଗୋଲାପୀ ଶାଢ଼ୀର ଧଡ଼ିରୁ ଟିକିଏ ପଛକୁ ଫୁରୁ ଫୁରୁ ହୋଇ ଉଡ଼ୁଥିଲା—ଆଉ ରହିଗଲା ଗାଡ଼ିର ଧକ୍ ! ଧକ୍ ! ଧକ୍ !

ସେଇଠୁଁ ସବୁ ଶେଷ !

ସଂସାରର ଜଞ୍ଜାଳ ଭିତରେ ଏସବୁ ମାଇପୀ କାନ୍ଦଣା କାନ୍ଦିବାକୁ ବା ବେଳ କାହିଁ ? ତେବେ ଯେଉଁ ଟିକିଏ ବେଳ ଏକୁଟିଆ ଆପଣା ସାଙ୍ଗେ ଦୁଃଖସୁଖ ହେବାକୁ ମିଳେ, ତାରି ଭିତରେ ସବୁ କଥା ଗୋଟି ଗୋଟି କରି ମନେ ପଡ଼େ । ଭାବି ଭାବି କେମିତି ଗୋଟାଏ ଟଙ୍ଗ୍ ଟଙ୍ଗ୍ ଢଙ୍ଗ ଆସିଲାଣି, ସପନ ଦେଖିଲା ପରି ବେଳେବେଳେ ଲାଗେ । ଯେମିତି 'ସେ' ପୁଣି ଦିନେ ଆସିବ, ଯେମିତି ହଠାତ୍ ଦିନେ ଝାଡ଼ିଝୁଡ଼ି ହୋଇ ସେ ଉଠିପଡ଼ି ଦେଖିବ, ସବୁ ନୂଆ, ସବୁ ତାର ମନମାଫିକ । ଏଇ କବାଟରେ ହୁଏତ ଥରେ ଥରେ ଆଘାତ ପଡ଼ିବ ! ତାପରେ... ! ବାହାରେ କାମ-ଦାମ ବେଳେ ସେ ବେଶ୍ ଆଉ ଦଶଟାଙ୍କ ପରି; ଭିତରେ ସେ ଆଉ ଜଣେ । ବାହାରେ ସେ ସାଧାରଣ ମଣିଷଟି, ଦୁନିଆର ଧରାବନ୍ଧା ଗତ ଭିତରେ ଗୋଟିଏ ସ୍କ୍ରୁ କଳ—ଯାହା ଲୋଡ଼ା ସେଇଆ କରେ, ହେଉକି ଦୂର ଦଉଡ଼ ସେଇଠି ଛନ୍ଦେ, ସବୁ କଥାରେ ଦେଖାପରଖା, କଟାକଟି, ଇନ୍ଦ୍ରିୟବୋଧ—ଆଉ ସାଧାରଣ ବୁଦ୍ଧିରେ ଧରାଛୁଆଁ ତଉଲମପା, ବୁଝାଶୁଝା ହୋଇପାରିବ, ଏଇ ବାହାରଟା ତାର ଗଦ୍ୟମୟ । ଭିତରେ ସେ ଅନ୍ୟ ଜଣେ, ସେଠି ସୀମା ପହଞ୍ଚିପାରେ ନାହିଁ । ବୁକୁ ଭିତରେ ଯେଉଁଠି ତାର ଦରଜ, ମନ ଭିତରେ ନିଚ୍ଛଟିଆ କଣରେ ଯେଉଁଠି ତାର

ଦୁଃଖ-ଦୁର୍ଦ୍ଦଶାର ସବୁ ଚିତାଳି କୁହୁଳୁଛି ସେଇଠି ତାର ଜୀବନର କବିତା, ସେଇଠି ତାର ଗମ୍ଭୀର ଭିତର ଅନ୍ଧାରକୋଣର ଦେବତା । ହୁ‌ୟ ମନରେ ଯେତେବେଳେ ହାତରେ ମୁଣ୍ଡ ରଖି ସେ ଭାବେ, ଆଖି ବାଡ଼ ଉପର କଣ୍ଟିଫୁଲ ଉପରେ ନଜର ରଖି ଅନ୍ୟମନା ହୋଇ କେତେ କଣ ସପନ ଦେଖେ, ସେତିକବେଳେ ସେ ଗଢ଼େ Art (କଳା), ଲେଖା ନ ହେଉ—ସବୁଦିନ ପାଇଁ ସାଇତିବା ଲାଗି ବାନ୍ଧିରଖା ନ ହେଉ, ତଥାପି ।

ଅଗନାଗ୍ନି ବନସ୍ତ ଭିତରେ ଦୁଇଟି କ୍ରୌଞ୍ଚ ଚଢ଼େଇରୁ ଗୋଟିକୁ ଯେତେବେଳେ ଶରର ବିନ୍ଧିଲା, ସେତେବେଳେ ମହାକାବ୍ୟର ଶୁଭ ଦଅହେଲା । ସେହି କରୁଣ ରସରୁ ବାଲ୍ମୀକି ଲେଖିଲେ କାବ୍ୟ । ଲେଖିବା ଆଗରୁ ଯେଉଁ ଦୁଇଧାର ଛଳଛଳ ଲୁହ ସବୁ ବାଧା ସଂଯମ ଏଡ଼ି ନଣଦାଢ଼ି ଜଙ୍ଗଲ ଭିତରେ ବାଟକାଟି ତଳକୁ ଗଡ଼ିପଡ଼ିଥିଲା, ସେ ତ ନିଜେ କବିତାର ଅସରନ୍ତି ଦରିଆ ! ସେଦିନୁଁ ଆଜିପର୍ଯ୍ୟନ୍ତ ପୃଥିବୀର ସବୁ ଦେଶର ସାହିତ୍ୟରେ ଭଙ୍ଗା ଗ୍ରୁଡିର ଛଳଛଳ ପବନ ହୋଇଛି କଳାର ସବୁଠୁଁ ଆଦରର ଧନ, କରୁଣ ରସ ହୋଇଛି ଉଚ୍ଚ କଳାର ଜନମଭୂଇଁ । ଅନ୍ୟ ରସର ଗାର ଏତେ ସହଜରେ ଗଭୀର ହୁଏ ନାହିଁ । ହେବ ବା କେମିତି ? ଯେତେ ଦିନ ଗ୍ରୁଡ ହେଉ, ପୃଥିବୀଟା ଭଲ ସୁନ୍ଦର, ମିଠା, ସ୍ନେହୀ—ଯେତେ ଏମିତି ଧାରଣା ଥାଉ, ଦୁଃଖ ଭାଗଟିକୁ ପୁରା ଭୁଲି ହେବ ନାହିଁ । ସମସ୍ତେ ତ ଭୁକ୍ତଭୋଗୀ; ଅଶାନ୍ତି, ଦୁର୍ଦ୍ଦଶା, ଦୁଃଖ, ସବୁ ତ ଲାଗି ରହିଛି, ବଡ଼ଠୁଁ ଗ୍ରେଟ ଯାକେ ସମସ୍ତଙ୍କୁ । ଏପରି ଅବସ୍ଥାରେ ହିମକାକରରେ ପଡ଼ି ସୁପାତି ହଂସୂଳୀ ଶେଯର—ନୋହିଲେ ଦାଉ ଦାଉ ମରୁଭୂମିରେ ପଡ଼ି ଶୀତଳ ଗ୍ରୁଇର ସପନରେ ମଜ୍ଜି ରହି ଫଳ କଣ ?

ସେଥିରେ ଯେ କିଛି ଲାଭ ନାହିଁ, ତା ନୁହେଁ; କିନ୍ତୁ ସବୁବେଳେ ମନକୁ ଭୁଲାଇ ବାସ୍ତବ ଘଟଣାରୁ ଆପଣାକୁ ପରଦେଶୀ କରିଦେବାକୁ ଅନେକ ଭଲ ପାଆନ୍ତି ନାହିଁ । ଆଗକାଳର ଧର୍ମ୍ମ ଅଜାଙ୍କ ଅମଳରେ (Classical age) ଦୁଃଖଟାକୁ ଗୋଟାଏ ଅଲଗା ରସ, କଳାର ଗୋଟାଏ ନିଆରା ମହିକୁମା ବୋଲି ଧରୁଥିଲେ । ସେଥିପାଇଁ ସେମାନେ ଚକଚକିଆ ଆଦର୍ଶର କଥା ଲେଖୁଥିଲେ । କନ୍ୟାଟି ହେବ ଷୋଳବରଷୀ, ଗେଲବସରୀ, ଗୋରୀ, ହରିଣ ଆଖି, ଢଳଢଳ, ବିମ୍ବଓଠୀ, ତାର ଚମ୍ପାକଢ଼ି ପରି ଆଙ୍ଗୁଠି ଇତ୍ୟାଦି । ସବୁବେଳେ ହସ ହସ, ଟିକିଏ ମନଦୁଃଖରେ ଝାଉଁଳି ପଡ଼ିବ, ସେଇଠୁ ବଇଦ ଡାକ, ଚନ୍ଦନ, ଉଶୀର ଆଣ, ପଦ୍ମ ପତ୍ରରେ ଶୁଆଅ, ପଦ୍ମ ଫୁଲରେ ବିଞ୍ଚ—କେତେ ହଟଚମକ ! ବରଟି ହେବ ଡେଙ୍ଗା, ମୋଟା କସରତିଆ ପହଲମାନ୍—ପୁଣି ଗୋରା, ସୁନ୍ଦର, ବୁଦ୍ଧିଆ;

କେତେକଥା । କନ୍ୟା ଯୋମଣୀ ଯଦି ହୁଏ ଟିକିଏ ବେଶୀ ଗୋରା, ନାକ ଘରେ ଶୁନ, ଗାଲ ଟାବୁଆ, ରଙ୍ଗ ନାଆଟ୍, ହାତ ଦୁଖଣ୍ଡ ଯଦି ହୁଏ ଖଣ୍ଡିଏ ଖଣ୍ଡିଏ ବତାରେ ଗଢ଼ା, ଗଣ୍ଡାଏ ଛ'ଟା ପିଲପିଲ ହୋଇ ସବୁବେଳେ ଖାଲି ଅସନା ଅବଶଳଆ, ହଂସୁଲ ଶେଯ ଛାଡ଼ି କେଁ-କଟର ଘୁରପୋକଆ ଖଟରେ ଯଦି ହୁଏ ବିଛଣା, କଡ଼ା କଡ଼ାକେ ଘର ଦୁଆର ନ କରି ସେଥିଲାଗି ବାସିପାଇଚି ଖଟିବାକୁ ହୁଏ, ପୁଣି ବରଟି—ଯଦି ହାଡ଼ମାଳ, ବର୍ଣ୍ଣ ଘନଶ୍ୟାମ, ଦାନ୍ତ ଖଣିଉସମ, ପାଟି ବାଘୁଆ, ଗୋଳିଆ ଆଖିଦିଟି କୋରଡ଼ ଭିତରେ, ଆଉ ଗୋଟିଏ ଗୋଟିଏ ଗୋଡ଼ ଖମ୍ବଆଳୁ, ପାଖେ ମାନ୍ଦାମଣ୍ଡଳୀ ପରି ଗୋଦର, ତେବେ କଣ ସଂସାର ଚଳିବ ନାହିଁ ? ଚଳୁଛି ଚଳିବ; ଆଉ ଅପୂର୍ଣ୍ଣତାର ଟିକି ଟିକି ଭାଗ ସଂସାରର ସବୁ ସମ୍ବନ୍ଧ, ସବୁ କାମ ଉପରେ ପ୍ରଭାବ ପକାଇବ । ଏ ଦୁଇଟି ବରକନ୍ୟାଙ୍କ ଜୀବନ ଭିତରେ ତାଙ୍କ ମନ ଆଉ ଚେହେରାର ଅପୂର୍ଣ୍ଣତା କପରି କାମ କରିବ ? ବାହାର ସଙ୍ଗେ ସଂଘର୍ଷ ବେଳେ ଏଇ ଅଭାବ, ଅପୂର୍ଣ୍ଣତା କେମିତି ଫଳ ଫଳାଇବ ? ଯଦି ଜୀବନର କବିତା ଥାଏ କେବଳ ପୂର୍ଣ୍ଣତାରେ, ତେବେ ଦୁନିଆର କୋଟି କୋଟି ଗୋଡ଼ଦଳା ମଳିମୁଣ୍ଡିଆ ଲୋକେ ତାକୁ ପାଇବେ କେମିତି ? ଏଇ ହେଲା ନୂଆ ଯୁଗର **Art** । ଯାହା ସାଧାରଣ, ସମ୍ଭବ, ଆଉ ସତ, ତାରି ଭଙ୍ଗା ଦଦରା ଅଧାପନ୍ତରିଆ ଘରକରଣା ଭିତରେ ସୀମାଦିଆ ଦେଖାଛୁଆଁ ଜିନିଷକୁ ଛାଡ଼ି ତାହା ଅସୀମର ସନ୍ଧାନ ନିଏ । ମଣିଷ ମନରେ ଏ ଧାରଣା ଯେଉଁଦିନୁ ଆସିଲାଣି, ସେଇଦିନୁ ଭଙ୍ଗା ଛାତ, ଦଦରା ଆଶା, ଅପୂର୍ଣ୍ଣ ମଣିଷ, ଏସବୁ artର ନିଆରା ମହକୁମା ନ ହୋଇ ତା ସଙ୍ଗେ ମିଶି ଯାଇଛି । ବେଶ୍ୟାର ସତୀତ୍ୱ, ଆଉ ଗୁଣ୍ଡାର ସାଧୁତା ଶୁଣି ହସ ମାଡ଼ିଲେ ବି ଭିତରମୁହାଁ ହୋଇ ସାହିତ୍ୟ ସେଇ ଓଲଟା ପାଖକୁ ଝୁଙ୍କି ପଡ଼ୁଛି । ଖାଲି ବର୍ଣ୍ଣନା ଚଳିବ ନାହିଁ, ଯେଉଁ କଥା ସବୁଦିନିଆ ପରିଚୟର ବୋଲି ଆଖି-ଘସରା ହୋଇଯାଇଛି, ଯେଉଁ ମଣିଷ ଏତେ ଛୋଟ ଯେ, ଦୁନିଆର ବଡ଼ବଡ଼ିଆଙ୍କ ଗୋଡ଼ ଢାଳରେ ଅଜଣା, ଅଚିହ୍ନା ହୋଇ ପଡ଼ିରହିଛି, ତାରି ଭିତରଟାକୁ ଭଲକରି ବୁଝିବାକୁ ଚେଷ୍ଟାକରି ତାରି ଅପୂର୍ଣ୍ଣତା ଭିତରେ **art** ଖୋଜିବା ହୋଇଛି ଧରଣ ।

କେତେ ଦାଉ—ଦାପଟ ଆସେ, କେତେ ବାଆବତାସି, ଆଉ ଛାତ ଭିତରଟାକୁ ମନ୍ଥି ଚକଟି ଗୁଣ୍ଡା କରି ଚାଲିଯାଏ । ପୁଣି ଲଢ଼େଇ ଲାଗେ, ତହିଁରେ ବିରାମ ନାହିଁ । ଆଲୁଅ ଆସିବ ବୋଲି ଅନ୍ଧାରଟା ସହି ହୋଇଯାଏ । ନାକ ବୁଡ଼ୁ ବୁଡ଼ୁ ହେଲେ ବି ମଣିଷର ଯେଉଁ ଲଢ଼େଇ, ତୁଣ୍ଡଝାଳ ମୁଣ୍ଡରେ ମଲେ ବି ସଳଖ ଅଣ୍ଟା, ସେଇ କଳାର ବେଶୀ ଆଦର । ଆଲୁଅ ଯଦି ନ ଆସେ, ଖାଲି ଅନ୍ଧାର

ଭିତରେ ପ୍ରାଣ ଛଟପଟ ହେଉଥାଏ, ତେବେ ଶେଷରେ ମଣିଷ ଗୋଟାଏ କିଛି ଆଶ୍ରୟ ଧରେ । ସେ ଅବସ୍ଥା ବି Art ପକ୍ଷରେ ଖୁବ୍ ଆଦରର ଜିନିଷ । ପରିଶ୍ରମ କରି ହାତଗୋଡ଼ ରହିଗଲାଣି, ଅଣ୍ଟା ଭାଙ୍ଗି ପଡ଼ୁଛି, ସେତିକିବେଳେ ଭଙ୍ଗା ଘର ଭିତକୁ ବାହାର ଯେଉଁ କରୁଣ ରାଗିଣୀ କୌଣସି ଗୋଟାଏ ଆଶ୍ରୟ ଖୋଜି ବୁଲେ, ସେ ସମସ୍ତଙ୍କ ମନରେ ଗଭୀର ଛାପ ମାରିଦିଏ ।

ଏ ଅବସ୍ଥାରେ ମଣିଷ ବିଶେଷ କରି ଭଗବାନଙ୍କୁ ଖୋଜିଥାଏ । ସବୁ ଦୁଆରେ ଉପାଧିଆ ତ ପଡ଼ିଛି—ସବୁଠି ଅପମାନ ଛଡ଼ା ଆଦର କେବେ ପାଇନାହିଁ । ସୀମାବଦ୍ଧ ଦେଖାଶୁଣା ଚିହ୍ନା ଲୋକେ ଯେ, ସେମାନେ ତ ଭୁଲରେ ହେଲେ ପଚାରିଲେ ନାହିଁ । ବାସ୍ତବତାର ପରିସମାପ୍ତି ହେଲା, ଅଜଣା ଅଶୁଣା ଅସୀମ ଅପୂର୍ଣ୍ଣତାକୁ ଯାହାର ସୀମାବଦ୍ଧ ଚିହ୍ନା ଆପଣାର ଲୋକ ଭାବି ଯାକ ନ ଧରି ଆଉ କଣ ଉପାୟ ? ପୀଢେଇ ବଢ଼ାପାଙ୍କ ପୁରୁଣା ମୂଳଦୁଆ ଉପରେ ଭଙ୍ଗା ଇଟା ମଝିରେ କେତେ କାଳର ଦାଗୁଆ ସଳଖ ପଥର ଖଣ୍ଡଟା ଯେମିତି ସାହିତ୍ୟ ହିସାବରେ ମୂଲ୍ୟବାନ୍, ଗାଁ ମୁଣ୍ଡର ମସ୍ତବଡ଼ ଓସ୍ତ ଗଛଟା, ସେ ଯେଉଁ ଗଳି ତୋଫାନରେ ଏକାଥରେ ଭୂଇଁରେ ଲୋଟିଛି, ସେ ବି ସେମିତି ଦାମିକା । ଏପରି କଳାର ମୂଲ୍ୟ, ଦୁଃଖ ସାଙ୍ଗେ ମଣିଷର ଅସରନ୍ତି ଶକ୍ତି ଆଉ ଚେଷ୍ଟାକୁ ସେ ଭଲକରି ପ୍ରକାଶ କରିଥାଏ ।

ଜୀବନ-ରସରେ ମାଠିଆ ମୁହଁ ଯେତେବେଳେ ଉବୁଟୁବୁ, ପର ଲାଗି କ୍ଷତି ସ୍ୱୀକାର କରିବା ସେତିକିବେଳେ ସମ୍ଭବ । ଯୌବନ ଯେତେବେଳେ ଦେହମନ ଝଲସାଇଦିଏ, ସେତେବେଳେ ମରଣକୁ ତିଳେ ମାତ୍ର ଡର ନ ଥାଏ । ସବୁ ଡର ଆସେ ବୁଢ଼ା ହେଲେ । କେତେ ରାତି ତ ଜାଅନ୍ତା ପ୍ରିୟ ଲୋକଙ୍କ ନାଁରେ ମନ୍ଦ ସପନ ଦେଖି ଲୁହରେ ତକିଆ ତିନ୍ତାଇ ଥାଇଁ । ସାଧାରଣ ମନ—ଯହିଁରେ ଯୋର୍-କଳ୍ପ ବନ୍ଧ ନ ଥାଏ—ତହିଁରେ କରୁଣ ରସର ପ୍ରଭାବ ପଡ଼େ ବେଶୀ । ମଫସଲ ଗାଁରେ ସେହି ଗୀତ ଭଲ ଲାଗେ, ଯହିଁରୁ ଗଛରୁ ପତର ଝଡ଼େ । କାହିଁ କେଉଁ ମୂଳକର ରାଜା ଗୋବିନ୍ଦଚନ୍ଦ୍ର । ଯୋଗୀ ଯେତେବେଳେ ଦାଣ୍ଡିଲ ସ୍ୱରରେ ତାଙ୍କର ଦୁଃଖ ସୁଖ ବାହୁନି ବସେ, ସେତେବେଳେ କବାଟ ଫାଙ୍କ ସେପାଖରେ କେତେ ଆଖିରୁ ଲୁହ ଗଡ଼େ । ସେହିପରି ରାଧାକୃଷ୍ଣଙ୍କ ବିରହ ଶୁଣି ବି । ଏଇ ସହାନୁଭୂତି ବଳରେ ପରର କଷ୍ଟକୁ ମନେ ମନେ ନିଜ ଅଙ୍ଗେ ନିଭାଇ ଥାଇଁ । ଆଉ ଦୁଃଖର ପରିମାଣ ଯେଜ ଯେଉଁ କାହଣୀ ସମ୍ଭବ—ତାହାର ଜାଣିଥିଏ ନିଜେ କାନ୍ଦିଥାଇଁ । ଅନେକେ ଅଛନ୍ତି, ଯେଉଁମାନଙ୍କ ନରମ ହୃଦୟରେ ସାରା ସଂସାରର ଦୁଃଖ ଗଭୀର ଗାର ଟାଣେ । ଅହରହ ପବନଖିଆ ଝାଉଁଗଛ ପରି ସେମାନେ ସବୁବେଳେ କାନ୍ଦୁଥାନ୍ତି ।

ଆଜକାଲିକା ବର୍ଣ୍ଣ-ପ୍ରେମ, mass rising ଯୁଗରେ ସେମାନେ ହୁଅନ୍ତି ନୂଆ ଦୁନିଆର କବି ।

ଝଡ଼ତୋଫାନ, ଦୁଃଖଦୁର୍ଦ୍ଦିନ ଭିତରେ ଶ୍ରାବଣର ସିଡ଼ୁଆ ନଈ ପରି ଅନ୍ତରର ସଞ୍ଚିତ ଦୁଃଖ ଯେତେବେଳେ ଫୁଲି ଫୁଲି କାନ୍ଦୁଥିଲି, ଯେତେବେଳେ ଆଲୁଅ-ଅନ୍ଧାର ମାଖି ଜନ୍ମହେଲି—ବିରହ ! ଅତୀତର ଆଲୁଅ ଲିଭି—ଅଛି ଖାଲି ଅନ୍ଧାର; ଆଉ ଭବିଷ୍ୟତ ଲାଗି ଅନ୍ଧାର ଅନ୍ତରାଳରେ ମିଳନର ଦୀପ ଜଳୁଛି । ଦୁଇ ମିଳନ ମଝିରେ ଯେଉଁ ବିରହ, କଳାର ମାପକାଠିରେ ତାର ମୂଲ୍ୟ ଖୁବ୍ ବେଶୀ । ଏ କଥା ଏତେ ସ୍ପଷ୍ଟ ଯେ, ବହୁ ପୁରାକାଳରୁ ଦେଶବିଦେଶର ସାହିତ୍ୟରେ ବିରହର ବ୍ୟବହାର ଦେଖିବାକୁ ମିଳେ । କଥାବସ୍ତୁ (plot)ର ସାଧାରଣ ଗତି—ପ୍ରଥମରେ ମିଳନ, ମଝିରେ ବିରହ, ଶେଷରେ ପୁଣି କେତେ କଣ କଷ୍ଟ ସହି ପୁଣି ମିଳନ । ପୁରୁଣା ଓଡ଼ିଆ ପ୍ରେମ ସମ୍ବନ୍ଧୀୟ କାବ୍ୟରେ ଏ ପ୍ରଥା ଖୁବ୍ ଚଳେ । ଭଞ୍ଜଙ୍କର ସେହି ଗୋଟିଏ ଗତି—ଅଲିଅଲି ରଜାଝିଅ ସଙ୍ଗେ ରଜାପୁଅର ଭେଟ, ବିବାହ, ବିରହ ଓ ଭିନ୍ନ ଭିନ୍ନ ଋତୁରେ ବିରହର ଭିନ୍ନ ଭିନ୍ନ ପ୍ରଭାବ, ଶେଷରେ ପୁଣି ମିଳନ । ବିରହ ନ ଥିଲେ ମିଳନ ଅପୂର୍ଣ୍ଣ ରହିଯାଆନ୍ତା । ବିରହ ମିଳନର ମାପ-କାଠି । ନିଜ ମନର ଅଜଣା ସ୍ନେହ ବାହାରକୁ ଯେପରି ପ୍ରକାଶ ପାଏ, ବିପଦ୍ଦୁଃଖ ଗୃହଦ୍ୱାରୀ ଆସନ୍ତା ମିଳନ ସେହିପରି ହାଲ୍ଲୋଳମୟ ହୁଏ, କଳା ମେଘ ଉହାଡ଼ରେ ପୁନେଇଁ ଜହ୍ନ ପରି ପହିଲି ଆଷାଢ଼ ଦିନ ମେଘୁଆ ପାହାଡ଼ ତଳେ ବିରହୀ ଯକ୍ଷ—ଖାଲି ଖାଲି ଦେହ କ୍ଷୀଣ, ହାତର ବଳା ଢୁଗୁଲା ହେଲିଣି, କଥାବାର୍ତ୍ତାରେ ଚେତନ ଅଚେତନ ଭେଦାଭେଦ ନାହିଁ ।

କେତେ କାଳର ପରିଚୟ, ସୁଖଦୁଃଖ, ମାନ ଅଭିମାନ ଭିତରେ ଦିନ କଟିଛି—ବିଦାବିଦ ବେଳେ ମନଟା ଘାଣ୍ଟିଚକଟି ହୋଇଯାଏ । ଆଉ ଯେତେ-ବେଳେ ମନର ଭାବ ପାଏ ଭାଷା, ଯେତେବେଳେ ମୁହଁରେ ଖଇ ଫୁଟେ, କବିତା କାହୁଁ କାହୁଁ ଆସେ । ଆମ କବି-ଦେଶର ଝିଅ ବିଦାବିଦ ବେଳର କାନ୍ଦଣାକୁ ପରଖି ଦେଖିଲେ ଏ ବିଷୟରେ ବହୁତ କଥା ମିଳିବ । ଶକୁନ୍ତଳା ଶାଶୁଘରକୁ ଗଲାବେଳେ କାଳିଦାସ କି ଚିନ୍ତା ବା ନ ଆଙ୍କିଛନ୍ତି ? ନିଜେ ତ କଣ୍ୱ ଋଷି ଅଧୀର, ଶକୁନ୍ତଳା ଯାଇ ନାହିଁ, ଯିବ ("ଯାସ୍ୟତି") ବୋଲି ଗଲା କାଳର ଶ୍ରେଷ୍ଠ ଶ୍ରେଷ୍ଠ ପରିଚିତ ଘଟଣାଗୁଡ଼ିକ ଆଖି ଆଗରେ ନାଚଉଠେ, ସେଇ ହରିଣ ଛୁଆଟି—ଇଙ୍ଗୁଦୀ ତେଲରେ ଯାହାର ଘା ଭଲ କରିଥିଲି, ଦେଉଳ-ବେଢ଼ା କରରେ ଝାମ୍ପୁରି ମାଳତୀ ଦଣ୍ଡା, ପାଞ୍ଚବର୍ଷ ବେଳେ ଜନ୍ମଦିନ ଦିନ ନାଲି ପାଟ ପିନ୍ଧି ଦ୍ରମେଣ ଭାଇଙ୍କ ବାହା ହବାକୁ ଯେଉଁଠି ରୁଷି ବସିଥିଲି—କେତେ କଥା । ପ୍ରେମିକ-ପ୍ରେମିକାଙ୍କ ବିରହ

ବେଳେ ଠିକ୍ ସେଇଆ ହୁଏ । କେତେକାଳର ସୁଖଦୁଃଖର ଶ୍ରେଷ୍ଠ ଶ୍ରେଷ୍ଠ କଥା ମନେପଡ଼େ, ଶୁଣିଲା ଲୋକର ମନ ସହାନୁଭୂତିରେ ଆପେ ଆପେ କଅଁଳ ହୋଇଆସେ । ଏ ବିଷୟରେ ଭକ୍ତି-କବିତା ସାକ୍ଷୀ ଦେବ, ଜହ୍ନ ରାତିରେ ଦିନେ ଭୋଜି ହୋଇଥିଲା, ଶୀତ ଦିନେ କଣ ହେଲା— ଇତ୍ୟାଦି ଇତ୍ୟାଦି ।

କଳାର ଆଉ ଗୋଟିଏ ଉପାଦାନରେ ବିରହ ବେଳର ହାବ-ଭାବ, ଆଉ ଅଧୀରତା । ସେତେବେଳେ ବିବେକର ବନ୍ଧ ରହେ ନାହିଁ, ଭିତରୁ କୋହ ବାହାରି ସବୁ ଧୋଇନିଏ । ସୁଖ ଥିଲା, ହଠାତ୍ ଅଭାବ ଘଟିବାରୁ ତା ପରିମାଣ ବୁଝାପଡ଼ୁଛି । ସାଙ୍ଗେ ସାଙ୍ଗେ ପୁଣି ତାକୁ ପାଇବାଲାଗି ସମୁଦାୟ ଅସ୍ତିତ୍ୱ ଆକୁଳ—ଏପରି ଯେଉଁ ବିଚିତ୍ର ଅବସ୍ଥା, ତହିଁରେ ଦେହ ଓ ମନର ବିକାର ହେଲେହେଁ ମୂଳ କାରଣ ସେଇ ହେଉଛି (୧) ଅନୁଭୂତି, (୨) ମନୋଭାବ ଓ (୩) ବିଚ୍ଛେଦର ସୁନେଲି କୁହୁଡ଼ିରେ ଅତୀତକୁ ଘୋଡ଼ି ରହିଥିବା କଳ୍ପନା । ଏ ତିନୋଟିଯାକ କଳାର ମୂଳ ଉପାଦାନ । ତେଣୁ ବିକାର ଘଟିଲେ ବି ଏ ଅବସ୍ଥାରେ ଏ ତିନୋଟି ଉପାଦାନର ପ୍ରଚୁରତା ଥାଏ । ଏ ଅଧୀରତାର ଆକର୍ଷଣ ଏତେ ବେଶୀ ଯେ, ସାହିତ୍ୟରେ ଏହାର ଲକ୍ଷଣ Convention ହୋଇ ଯାଇଛି । ଦେହ ଦିନୁ ଦିନୁ କ୍ଷୀଣ ହୋଇଯାଉଛି, ଖାଲି ମାଟି ମାଟି, ସାଧାରଣ ପାନ-ଭୋଜନରେ ବି ଅବହେଳା, ପ୍ରସାଧନ ତ କେଉଁଅଡ଼େ ଗଲାଣି; ଲକ୍ଷାରସଠାରୁ lipstick ଯାଏ ଆଉ କାହାପାଇଁ ଲାଗିବ ? ମୁଣ୍ଡରେ ବାସନା ତେଲ ତ ଦୂରର କଥା, ବାଳ ଫୁରୁ ଫୁରୁ । ତୁଳସୀ କାଠୁଆ ଖଟ ତଳେ ଗଡ଼ୁଛି । ସାଙ୍ଗ ମେଳ ଭଲ ଲାଗୁନାହିଁ, ଫୁର୍ତ୍ତି ଏକାନ୍ତ ଅଭାବ । ଖାଲି ଘନ ଘନ ଦୀର୍ଘଶ୍ୱାସ, ଆଉ ଆଖିରେ କେତେ କାଳର ଉଦାସ ଚାହାଣି; ଜହ୍ନ ଆଲୁଅ, ସଙ୍ଗୀତ, ହସଖେଳ—କିଛି ଭଲ ଲାଗୁନାହିଁ । ରାତିରେ ସପନ ଦେଖି ଦି'ହାତରେ ଧରିବାକୁ ଯାଇ ଖାଲି ଶୂନ୍ୟ ! ହାତ ଦିଟା ଆପେ ଆପେ ପିଟାପିଟି ହୋଇ ତଳେ ପଡ଼େ, ଆଖିରୁ ଝରଝର ଲୁହ । ସଂସ୍କୃତ କବିଏ ଉପମା, ଅଳଙ୍କାର, କଳ୍ପନା ବଳରେ ଆହୁରି ବେଶୀ ଦୂରକୁ ଯାଇଛନ୍ତି । ଗଛପତ୍ର ଲୁହ ବୋଲି ପତ୍ର ଝାଡ଼ିବେ, କାନ୍ଦଣା ଶୁଣି ହରିଣୀ ଅବାମାର ଠିଆ ହେବ, ମୁହଁରୁ ଅଧାଖିଆ ଘାସ ତଳେ ପଡ଼ିବ, ବିରହୀ ବଣ-ଜଙ୍ଗଲରେ ପାଗଳ ପରି ବୁଲି ଗଛପତ୍ର ପାହାଡ଼ପର୍ବତ ବାଘ-ଭାଲୁ ସମସ୍ତଙ୍କ ସାଙ୍ଗରେ ଦୁଃଖସୁଖ ହେବ—ଇତ୍ୟାଦି । ତା ଉପରୁ ପୁଣି ବିରହର ଭିନ୍ନ ଭିନ୍ନ ସ୍ତର ଅଛି । ସେ ବିଷୟରେ ଚୈତନ୍ୟଧର୍ମୀ ବିଶେଷବିତ୍ । ବିରହୀର ଏ ଅଧୀରତା କେତେଗୁଡ଼ିଏ କରୁଣ ଓ ସୁନ୍ଦର ଛବି ଯେପରି ଆଙ୍କିଥାଏ, ସମସ୍ତଙ୍କ ସହାନୁଭୂତି ଉପରେ ସେହିପରି ପ୍ରଭାବ ପକାଇଥାଏ ।

(Impressionistic) ସ୍ମୃତି-ଗୁଣା ବିରହ ସବୁଠୁଁ ବେଶୀ ମିଠା । ସେଥିରେ ଦେହ, ମନ, ଅଭ୍ୟାସ ବା ପରସ୍ପର ସମ୍ବନ୍ଧର ସମୁଦାୟ ଦରକାର ହୁଏ

ନାହିଁ; ଖାଲି ସେତିକି ଦେଖି ମନରେ ସେ ଇଙ୍ଗିତ ଅଂଶଟିର ଏତେ ଗମ୍ଭୀର ଛାପ ବସିଛି ଯେ, ଦିନସାରା ତାରି ଗୁଣ ଗୁଣି ହେବାକୁ ପଡ଼ିବ, ସେତିକି ଥାଏ । ଗୋଲାପୀ ଶାଢ଼ୀ ଧଡ଼ିରୁ ଧାପେ, ତତଲ ଲୁହ ଦି ଟୋପା, ଦିଟି ଢଳ ଢଳ ଆଖି, ନିଶବ୍ଦ ଗତିରେ ଥିର ଥିର ପାଦ ଶବ୍ଦ—ଏହିପରି । ଏଇ ଗୋଟିଏ ସ୍ମୃତି ଅବଲମ୍ବନ କରି ଭାବ ଭାବି କଣ ନ ହୁଏ ? ଗୋଟିଏ ଶ୍ରେଷ୍ଠ କଥାରୁ ଆଉ ଦଶକଥା ମନେପଡ଼େ । ନିଜ ମନରୁ ତାରି ଉଦ୍ଦେଶ୍ୟରେ କେତେ subjective ଚିନ୍ତା ବାହାରେ । ତା ଭିତରୁ ଆହୁରି ରଙ୍ଗାଇବାକୁ କଳ୍ପନା ତ ଅଛି । ପୁଣି ମନର ଭାବ ଓ ଅନୁଭୂତି ତ ଅଛି କବିତାର ମଧୁମଖା ଛନ୍ଦରେ ମନ ମଜାଇବାକୁ । ଶିଳ୍ପୀ ଯଦି ଅସୀମ ଭାବମୟ ଉପାୟ ଛାଡ଼ି, ଖାଲି କେତେଗୁଡ଼ାଏ ବନ୍ଧା ବୋଲି (diction) ଧରି ଏ ପାଙ୍ଗ ସେ ପାଖ ହୁଅନ୍ତି, ତାହେଲେ ଏପରି କଳା ଦୀର୍ଘଶ୍ୱାସ ଆଉ ତତଲ ଲୁହରେ ହିଁ ଉଭେଇଯାଏ ।

ସବୁ ଅଛି, କିଛି ଊଣା ନାହିଁ—ହସଖେଳ, ମଉଜମଜଲିସ୍ ଭିତରେ ବେଳେ ବେଳେ ମନଟା କଅଁଳ ହୋଇଯାଏ; ଆଉ ନିଜର ଅଜାଣତରେ ଉଦାସ ଚାହାଣିରେ ଦୂର ଆକାଶରେ କାହାକୁ ଖୋଜି ବୁଲେ, ହୁଏତ ଦୀର୍ଘଶ୍ୱାସ ଭିତରେ ଅଲଣା ଲୁହରେ ଆଖି ଦିଟା ଟଳମଳ କରେ । ନିଜର ଅଜାଣତରେ କେତେବେଳେ କାହାର ସ୍ମୃତି ମନ ଉପରେ ପଡ଼ିଛି, ତାହାରି ଲାଗି ହବ ବା ! ହୁଏତ ନିଜର ସମୁଦାୟ ଆଶା-ଭରସା, ସ୍ନେହ-ପ୍ରେମ, ଇଚ୍ଛା-ବିତୃଷ୍ଣା—ଗାଏମୋଟ ଯେଉଁ ମାନସୀ ideal, ତାରି ଲାଗି । ପ୍ରକୃତି ତାର ସୁନ୍ଦରିମାର ବାହାର ଛବି, ଯାର ଦୁନିଆର ଦୁଃଖ ସୁଖରେ ତାର ଅନ୍ତର ଗଢ଼ା, ସେ ଯେ କିଏ, ତା କିଏ ଜାଣେ ? ସେ ଅରୂପ, ଅଜଣା, ଅଶୁଣା; କିଏ କହେ ସେ ଭଗବାନ, କିଏ କହେ ସେ ମାନସୀ, କିଏ ବା କହେ ସେ ଗୋଟାଏ—ଗୋଟାଏ କେଜାଣି କିଣ ? ଯୁଗ ଯୁଗ ଲାଗି ଲୋକେ କେତେ କାନ୍ଦିଲେ—ତାରି ପାଇଁ, ତାଙ୍କର ଭଙ୍ଗା ଛାତିର ତତଲ ନିଶ୍ୱାସରେ art ଗଢ଼ା ହେଲା, ତାଙ୍କର ତତଲ ଲୁହରେ । କେହି କେବେ ତାକୁ ପାଇଲେ ନାହିଁ । ସେ ତ ପାଇବାର ନୁହେଁ । ମଣିଷକୁ ବଡ଼ କରିବାଲାଗି ସେ ଖାଲି ଗୋଟା ବିଶ୍ୱସାରା ସ୍ପନ୍ଦନ । ଖରାବେଳ ଝାଞ୍ଜି ପବନରେ ଧୂଳିଟା ଉଠେ ପଡ଼େ, କବାଟ ଝରକାଗୁଡ଼ାକ ଧଡ଼ଧଡ଼ ହୁଏ । ପୋକସ କଣ୍ଟାବାଉଁଶୀ ଗଛରେ ପବନ ପଶି ବଇଁଶୀ ପରି କାନ୍ଦିବୁଲେ, ଏ ନିସ୍ତୁଟିଆ ଉଦୁଉଦିଆ ଖରାବେଳଟାରେ । ଭିତରେ ସବୁ ଚୁପ୍ । ମନଟା ଛନଛନ ହୁଏ । ଏଇ—ଏଇ ତାରି କଳାର ଗଢ଼େଇ । କେଡ଼େ ସହଜରେ କାମ ଚାଲିଛି । ଛପି ଛପି ଚାରିଆଡ଼େ ଥରେ ଏ କାନ୍ଦଣା ବୁଲିଆସିବ । ତାପରେ...

●

# ପତରଚକି

ସବୁଦିନର ଦେଖୁସସା ଚହ୍ଲା ଲୋକଟି, ପୁଣି ସମସ୍ତଙ୍କର ଅଜଣା ଅଚହ୍ଲା । କାଁଥଗୋଥ କେହି କେବେ ଖୋଜ ନାହିଁ, ଘରବାଡ଼ି, ପଢ଼ାଶୁଣା ଟଙ୍କା ପଇସା । ଖାଲି—'ଡେଙ୍ଗା ବାବାଜି' । ବେଶ୍ ଏତିକ ପରିଚୟ । ବାପ ମା କେବେ କଣ ନାଁ ଦେଇଥିଲେ, ତା ବି କେହି ଖୋଜେ ନାହିଁ । ଲୋକଟାର ସବୁ ତ ସାଧାରଣ, ତା ଭିତରେ ପୁଣି ଆଶ୍ଚର୍ଯ୍ୟ କଣ ଅଛି ? ତଥାପି ବେଳେବେଳେ କେମିତି କେମିତି ଛନ ଛନ ଲାଗେ । ଝୁଙ୍ଗିଟା ମଶାଣି ଉପରେ ହେଲେ ବା, ପାଖରେ ତ ଡମେଇ ହାଡ଼ି କୁଡ଼ିଆ, ତେବେ—ଅନ୍ଧାର ରାତିରେ, ଜଣା ଯେତେବେଳେ ସାଇଁ ସାଇଁ ଗର୍ଜୁଥାଏ, ଆଉ ବିଲୁଆ କୁକୁର ମୁର୍ଦ୍ଦାର ଉପରେ ଝିଙ୍କାଝିଙ୍କି କରି କଜିଆ ଲଗୁଥାନ୍ତି, ସେଇ ରାତି ଦୁପହରେ ବାବାଜି କଣ କରେ, ତା ତ ଦେଖିବାକୁ ଆଉ ଡମା ହାଡ଼ିର କଲିଜା ନାହିଁ । ଝୁଙ୍ଗି ଅଗଣାରେ କଣ ଗୋଟାଏ ଆଲୁଅ ଝିକମିକ କରେ ବେଳେବେଳେ ! କିଏ ଜାଣେ ସେ କଅଣ ବା ? ଅଧେ ଦିନ ତ ବାବାଜି ଘରେ ନ ଥାଏ, ପୁଣି କୁଆଡ଼େ ବୁଲି ବୁଲି ଫେରେ ।

ଲୋକ କଣ ନାଙ୍କରି ? କେତେ ଲୋକ ତା ଯୋଗୁଁ ଜୀବନ ପାଇଛନ୍ତି । ହାଲି ଯେତେବେଳେ ବାଉଁଶ ସାଙ୍ଗରେ ବାଡ଼ି ପଶିଥିଲା, ଖାଲି ପାଉଁଶରେ କେତେ ଲୋକ ଭଲ ହେଲେ । ଯଦିଚ ସନିଆ ମା' କହେ, ନୋକା କେଉଟର ଅଭିଆଡ଼ୀ ଝିଅଟା ଯେଉଁଦିନ ମରିଗଲା, ବାବାଜି ସେଦିନ ନଈକୂଳିଆରେ ଚମ୍ପୁଟାରେ କଣ କରୁଥିଲା, ଅ.ଉ ଡମାହାଡ଼ି ସାଆନ୍ତଙ୍କ ଆଗରେ ସେଦିନ କହୁଥିଲା, କଣ ଫିରିକୁଟିଆ ଗନ୍ଧ ହୁଏ, ଝୁଙ୍ଗି ଆଡ଼ୁ, ଠିକ୍ ଯେମିତି—!! ତଥାପି ବାବାଜି କାହାର ଉପକାର ନ କରେ ? ବଳଦଗୁ, ଧାନବୁଣା, ହଳ ଓ ଘରଛୁଆଁଣିଠାରୁ ଆରମ୍ଭ କରି ଗୁରୁହାଲି ପିଲାଙ୍କ ମାଷ୍ଟର ବି ସେ କରେ—ଖାଲି ମାଗଣା । ଯଦି ମନ ଲାଗିଛି ତେବେ ବେଳେବେଳେ ବାବାଜି ଅଡ଼ି ବସେ । ପଧାନେ ସେଦିନ ଡାକଲାରୁ କହିଲା, "ସରମ୍ ନାହିଁ ? ତୁମଦ୍ଵର୍ ଏତେ ଲୁକ ଅଛନ୍, ବିନା ପଇସାରେ ବାବାଜି ଲୁକଙ୍କୁ ବେଠି ଖଟେଇବ ଯେ ।"

ବାରଗୁଡ଼ିଆ କଥା ! ବେଳେବେଳେ ହିନ୍ଦୀ, ବଙ୍ଗଳା ବି ବାହାରିଥାଏ । ତେବେ ଲୋକେ ଅନୁମାନ କରନ୍ତି, ବୋଧହୁଏ ସେ ଗଡ଼ଜାତ ଅଞ୍ଚଳର ହେବେ । ରାଗିଗଲେ ନିଜ ପ୍ରକୃତ ଭାଷା ବାହାରେ ।

ଏଇ ଡେଙ୍ଗା କଲି ଭାଙ୍ଗିବାକୁ ଆଗ, ବିପଦରୁ ଟାଣି ଓଟାର ଶୁଖିଲାକୁ ଆଣିବାକୁ ଆଗ । ନାଁ ବାବାଜି, ତେବେ ପୂଜାଉତ୍ସବରେ ସେତେ ଆଡ଼ମ୍ବର ନାହିଁ । ଏ ଘାଇଭଙ୍ଗା ବେଳେ ବନ୍ଧ ଉପରେ ମାଟି ପକାଇବାକୁ ଲୋକଙ୍କୁ କମି ଟେହିଥିଲା ! ଧର୍ମ ଅପେକ୍ଷା ନ୍ୟାୟକୁ ତ ସେ ବେଶୀ ଜଗେ । ପଞ୍ଚୁ ସୋଢ଼ି ଘର ପଦା ତ ସେଦିନ ଜଗୁଆ ମା ଘାଇରେ ଝାସ ଦେଇସାରିଥିଲା । ପଞ୍ଚୁ ସୋଢ଼ି ସବୁ ଜାଣେ, ତେବେ ଝିଅଙ୍କ ନାଁ ପକାଇ ସମସ୍ତଙ୍କ ମୁହଁରେ କାଳି ବୋଳିବ— ଏକଥା କଣ ବାପ ସହେ ? ପୁଣି ଘମଣ୍ଡି ପୁର ଗାଁରେ ଘର କରି ? ପଦାକୁ ଏ ପାରିକୁ କିଏ ଆଣିଲା ? ସେଇ ଡେଙ୍ଗା । ଏଣେ ପିତେଇ ତ କଲିକତା ପାରି । ଡେଙ୍ଗା ପିତେଇକୁ କେମିତି ଆଣିଲା, ସେ ଜାଣେ । ତେବେ ଧୋବଣୀ ମା କହୁଥିଲା, ପିତେଇ ଆସିବା ଦିଶଦିନ ଆଗରୁ ଯେଉଁଦିନ ଡେଙ୍ଗା କୁଆଡ଼େ ଗପ୍ ମାଇଲା, ସେଦିନ ଅରୁଣରୁ ଲୋଟାଏ ପାଣି ନେଇ ଯାଇଥିଲା, ସେ ଦେଖିଛି । କଦମ ଡାଳରେ ପଞ୍ଚୁ ସୋଢ଼ି, ପଦା ଉଜଣଙ୍କୁ ଡକାଇ ଡେଙ୍ଗା ପିତେଇକୁ କଣ କହିଲା ?—“ଅଭିଆଡ଼ୀ ପିଲା ରୁ, ବାହାଘରେ ତ ହବୁ । ଦଧିଆଳୀ ପୁରୋହିତ ମନ୍ତ୍ର ନ ପଢ଼ିଲେ ଭାସିଗଲା କଣ ? ଆରେ, ‘ଜଣେ ତ ଦେଖିଛୁ । ସେଇ ବଡ଼ ଠାକୁରଙ୍କୁ ଅନାଇ କହିଲୁ ଭଲା, ଏ ପେଟରେ ପାପ କି ବେଙ୍ଗ ଯାହା ଅଛି, ତୋର ତ ? ଦେଖ, ଭଲ ଦଶା ଅଛି ତ—” ପଦା କଣ ଭୁଲିପାରେ ? ମୁଣ୍ଡରେ ତାର ଏଇ ଯେଉଁ ଟଙ୍କାପରି ସୁନ୍ଦର ମନାଟି କାହାଯୋଗୁଁ ସେ ?

କେତେଲୋକଙ୍କ ଉପକାର ସେ କରିଛି । ତେବେ ତା ନିଜ ମୁହଁରୁ କେହି କେବେ ସେ କଥା ଶୁଣି ନାହିଁ । ସେ ପ୍ରମାଣ ରଖେ ନାହିଁ, ବାରବୁଲା ଛତରଖିଆ ହତଭାଗାଟା ସେ । ବାହାରୁ ରୂପଟି ଦେଖିଲେ ଯେତିକି ପରିଚୟ ମିଳେ, ତା’ଠୁ ବେଶୀ ଦେଇ ମର୍ଯ୍ୟାଦା ନେବାକୁ ସେ କେବେ ଚାହେ ନାହିଁ ।

ଏଇ ଡେଙ୍ଗା—ସବୁଦିନେ ସବୁ ଯୁଗରେ ତ ସେ ରହିଛି, ସବୁ ଦେଶରେ । ତାର ରୂପ ଖାଲି ଅଲଗା ଯାହା । ତାର ମୂଳ ସ୍ୱର, ଗୋଟାଏଠି ଅଟକି ସେ ରହିବ ନାହିଁ, କହେ—ମାୟା ଲାଗିବ; ତେଣୁ ଗୋଟାଏ କିଛି ଧର୍ମସଙ୍ଗ ବୋଲି ସେ ମାନିନେବାକୁ ରାଜି ନୁହେଁ । ଫଳରେ ତାର କୌଣସି ଗୋଟାଏ କାମ ନାହିଁ, ସବୁ ଠିକା; କୌଣସି ଗୋଟାଏ ଘର ନାହିଁ, ସବୁଠି ଘର । ଡେଙ୍ଗାକୁ ଆଜି ସ୍ମରଣ କରିବାର ଉଦ୍ଦେଶ୍ୟ, ସାହିତ୍ୟର ସେ ଗୋଟାଏ type, ଉଚ୍ଚ କଳାର ସେ ଗୋଟାଏ ବଡ଼ ଉପାଦାନ । ଏ ପତରତକ ଭିତରେ କଳା ହିସାବରେ ଦେଖିଲେ ଏତେ ରସ ଅଛି ଯେ, ଉଚ୍ଚ ସାହିତ୍ୟ ଗଢ଼ିବା ଲାଗି ତା ଇତିହାସ ଗୋଟାଏ ଅସରନ୍ତି ଝରଣା । ଆଖି ଖୋଲି ବନ୍ଧୁ ସାହିତ୍ୟକୁ ଯେତେ-

ବେଳେ ଆମେ ଗ୍ରହୁଁ, ସେତେବେଳେ ଦେଶବଦେଶରେ ଖାଲି ଡେଙ୍ଗା । ଜୁନ୍ ହ୍ଵାମସନ୍ ଅଗଷ୍ଟ ଗୋଟାଏ ଡେଙ୍ଗା ପାଇଛନ୍ତି, ଏ ପର୍ଯ୍ୟନ୍ତ ତାର ଇତହାସ ସର ନାହିଁ । ବଦେଶୀ ସାହତ୍ୟରେ ସ୍ଵଶଦଉତ୍କଟା ବାରବୁଲା ପ୍ରକୃତର ଆବର୍ତ୍ତ ବେଶୀ ଦେଖାଯାଏ । ଆଉ ସେ ଯେଉଁଠି ଥାଏ, ସେ ସେଠି ଗମତ୍ଥ କରେ । କଛ ନ ହେଲେ କୌଣସି ଗୋଟିଏ ବଡ଼ ନାୟକର (Hero) ଜୀବନକାଳ ଭତରେ ଏଇ ବାରବୁଲା ଜୀବନ ଉଣା ଅଧିକେ ଦେଖାଇଦାକୁ ହୁଏ । ତାଶ ଭତରେ ସାହତ୍ୟର ଉନ୍ନତ ଆମେ ଦେଖିଆଁନ୍ତି । ବଦେଶୀ ଲେଖକ ହୁଏ ତ ବଡ଼ ବଡ଼ theory (ତଥ୍ୟ) ଆଣିବେ । Augustର ସୃଜନ ଲାଗି କେତେ କାରଣ ଦେଖାଯାଇପାରେ । ବ୍ରାଉନଂଙ୍କର ଶ୍ରୀମତୀ ପିପା ଠିକ୍ ଏଇ ଗ୍ରୁଷରେ ଗଢ଼ା । ତେବେ ସେ ଅରେ ବୁଲି ଆସିଲେ । ତା ଅଜଣାତରେ ତାଶ ଗୀତରେ କେତେ ଲୋକଙ୍କ ଆସ୍ଥାର ସଦ୍‌ଗତ ହେଲା । ବାରବୁଲା ତଥ୍ୟର ଗୋଟାଏ ଅଂଶର ଉତ୍କର୍ଷ ଉପରେ ପିପାର ନଦାନ ଅର୍ଥାତ୍ ମୂଳ ଇଙ୍ଗିତ ରହଲା ଯେ, ଏ ଜୀବନର ଆଦର୍ଶ ଏତେ଼ ଉଚ୍ଚ । ଏଥିରେ ଯେଉଁ ଆନନ୍ଦ ହୁଏ, ତାଶ ଉରୁସ ପେଜରେ କେତେ ଲୋକ ନସ୍ତାର ପାଇଯିବେ । ଷ୍ଟିଭେନ୍‌ସନ୍ ତ ବାରବୁଲା ନୀତର ପୁରୋଧା । *

Romain Rollandଙ୍କର ମହାଉପନ୍ୟାସ "Jean Christope"ରେ ଅତ ଉଚ୍ଚ ଚରିତ୍ର ନାୟକର ବାରବୁଲା ଦାବ । Walter Scottଙ୍କର ଶ୍ରେଷ୍ଠ ଉପନ୍ୟାସ The Antiquary (ପ୍ରତ୍ନତତ୍ତ୍ଵ); ତହିଁରେ ସବୁଠାରୁ ସୁନ୍ଦର ଚରିତ୍ର ହେଉଛି ବାରବୁଲା Edie Ochiltree । ବାରବୁଲାର ଜୀବନ-ଇତହାସ ଏତକରେ ସର ନାହିଁ । ଭବଷ୍ୟତ୍ ଲାଗି ଆହୁର ରହଛି, ରହଥିବ । ଏହାର କାରଣ କଣ ? ହୁଏତ ଡେଙ୍ଗାକୁ ଘଣ୍ଟା ଚକଟା କଲେ ଏ କଥା ଉପରେ କଛ ହେଲେ ଆଲୁଅ ପଡ଼ବ । ଲଭ ବ ଅଛୁ, କାହିଁକ ନା ଆମ ଓଡ଼ଶାରେ କେତେ ବାବାଜି, କେତେ ଯୋଗୀ କେତେ କେଳା ପତରଚକ ପଶ ବୁଲୁଛନ୍ତି । ସେମାନଙ୍କ ଭତରୁ ସଦ ସାହତ୍ୟର କଛ ରସ ସଗ୍ରହ ହୋଇପାରେ, ଦେଖାଯାଉ ।

ଚେହେରାଟି କମ୍ ନୁହେଁ, ଦେଖିଲେ ଆଖି ଲାଖି ରହବ । ଖାଲି ଚେହେରା ଲାଗି ଡେଙ୍ଗା ସାହତ୍ୟରେ ଗାଦ ମାଡ଼ପାରେ । ଏତେ଼ ମୁହଁ, ନଶ, ଦାଢ଼ି, ଜଟା ! ବେଶଭୂଷା ତ ଚମତ୍କାର, ତା ଉପରେ ଅଖି ଦଟାରେ ଯେଉଁ ଗୁହାଣୀ ! କେତେ

---

* ନୂଆ Romanceର ପ୍ରବର୍ତ୍ତକ ସେ । ବାରବୁଲା ଜୀବନରେ ସେ ଏତେ Romance ପାଇଥିଲେ ଯେ କହଲେ ନ ସରେ ।

ଗଣ୍ଠିର ସେ । ସଞ୍ଜବେଳେ ଦାଢ଼ ନଇଁବାଲ ଉପରେ ପିଲଝୁଆ ଯେତେବେଳେ ଝାଣିବାକୁ କୁଦା ମାରୁଥାନ୍ତି, ସେତେବେଳେ ସେ ଗୃହିଣୀ ଯାହା, ଆଉବେଳେ ତ ତା ନୁହେଁ ! ସେ ଆଖି ଦ'ଟି ବେଳେବେଳେ ଛଳଛଳ ହୁଏ, ଯେପରି ସଂସାର ଯାକର ବୋଝ ଏକା ତାରି ମୁଣ୍ଡରେ । ଆଉ ଅରେ ଅରେ ଡେଙ୍ଗା ମୁହଁକୁ ଚାହିଁଲେ ସଂସାରଯାକ ଋକ୍ଷ ଲାଗେ । ଗୋଟାଏ କେମିତ ଶୁଖିଲା ଗୃହିଣୀ, ସତେ କି ସବୁ ଯାଇଛି ପୋଡ଼ି ଜଳି ।

ସେ ଅଜଣା ଅଚହ୍ନା, ହାତମୁଠାରେ ଥିଲେ ବି ଛୁଇଁ ହେଉନାହିଁ । ସମସ୍ତଙ୍କ ସାଙ୍ଗରେ ମିଳାମିଶା ଥିଲେ ବି ବେଳେବେଳେ ତା ଗୋଲ୍ ମାଲ୍‌ଥିଆ ଢଙ୍ଗରୁ କିଛି ବୁଝାପଡ଼େ ନାହିଁ । ଏଇ ଅଜଣା ଅଂଶଟି ସାହିତ୍ୟ ପାଇଁ ବେଶୀ ମୂଲ୍ୟବାନ । କାହିଁକି ନା କଳ୍ପନା ଲଗାମଛଡ଼ା ଘୋଡ଼ା ପରି ଧାଏଁ । କିଏ ଏ ? ଗୋବିନ୍ଦ ଅବଧାନେ ଜ୍ୟୋତିଷ, କେତେ ଜଣ ଚନ୍ଦ୍ରରୁ ଧରିଥିଲେ, ରାଜବଂଶ । ଏଡ଼େ ଉଦାର, ଉନ୍ନତ ମନ, କିଏ ଜାଣେ କେଉଁ ପୁରୁଣା ରାଜବଂଶର ଉତ୍ତରାଧିକାରୀ ? ସ୍ୱେର ଡକେଇତ ବି ହୋଇପାରେ, ଗୁପ୍ତମାରୁ । କିଏ କହେ ବାବାଜୀ, କିଏ କହେ ତାନ୍ତ୍ରିକ, କାପାଳିକ, କିଏ କହେ କଣ...କଥାବସ୍ତୁ (Plot) ଲାଗି ଖୁବ ଚମତ୍କାର । କେହି ବି କହେ ଖୁବ ପଢ଼ାଶୁଣା, କେତେ ଦେଶ ବିଦେଶ ବୁଲିଛି, ଖାଲି ମନରେ କଣ ଦୁଃଖ ହେବାରୁ ବାବାଜି ହୋଇଛି । ବାରବୁଲାର ଭିତର କଥା ସାହିତ୍ୟ ହିସାବରେ ବେଶୀ ଦାମିକା । ତାର ସୁଖଦୁଃଖ, ତାର ଭଲମନ୍ଦ, ଅତୀତ ଭବିଷ୍ୟତ ସବୁ ଯେପରି ମଣିଷ ମନରେ ବେଶୀ ସହାନୁଭୂତି ଆଣେ, କାହିଁକି ନା—

(୧) ତାର ଭିତର କଥା କେହି ଜାଣନ୍ତି ନାହିଁ; ଅନ୍ଧାର ଭିତରେ ଆଲୁଅ ଦେଖି ଚମକ ଲାଗିଥାଏ ।

(୨) ସେ ବର୍ତ୍ତମାନ ଏଡ଼େ ନିଃସ୍ୱ ଯେ, ଏପରି ଅବସ୍ଥା ତୁଳନାରେ ତାର ସବୁ ଥିଲା—ଅତୀତ ମନରେ ସାଧାରଣତଃ ଦୟା ଓ ସହାନୁଭୂତି ଆଣେ ।

(୩) ସେ ଏଡ଼େ ଶ୍ରେଷ୍ଠ, ଏଡ଼େ ସାଧାରଣ ଯେ, ତା ନିଜ କଥା ଲାଗି ଆଗରୁ ଦେହଘଷା ହୋଇ କିଛି ପରିମାଣରେ ସେ ସହାନୁଭୂତି reserve କରି ରଖିଛି । ତା ପରେ ନୂଆ ଯୁଗର ଚଳନ୍ତି ଧାରା ଅନୁସାରେ ସାଧାରଣ ଦେହଘଷା ଗୋଡ଼ଦଳା ପ୍ରାଣୀଙ୍କ ଭିତରେ ଉଚ୍ଚକଳାର ଉଚ୍ଚ ଉପାଦାନ ଯେତେବେଳେ ଖୋଜି ବୁଲୁ ଥାଇଁ, ବାରବୁଲାର ସାଧାରଣ ଅଥଚ ଅନ୍ଧାର ଅତୀତ ଲାଗି ଆମର ଉତ୍ପ୍ରେକ୍ଷା ରହିବାର କଥା ।

କଣ ନ ଥିଲା ତାର ? ସବୁ ଥିଲା । ତା ପରେ ସ୍ୱର୍ଗୀୟ ବିପର୍ଯ୍ୟୟରେ ସବୁ ଝାଉଁଳି ପଡ଼ିଲା । ସୁରୁଣା ଫୁଲର ସ୍ମୃତି ପରି କଢ଼ିଟି ଯେତେବେଳେ ମଉଳି ଖସି ପଡ଼ିଲା, ସେଇଦିନୁ ସେ ଉଦାସୀ । 'ଛନ୍ନଛନ୍‌ଡ଼ଂଗ୍ରୀ' ଡଳର ମଶାଣି ଭୂଇଁରେ ସବୁ ଯେତେବେଳେ ପାଉଁଶ ହେଲା, ଆଉ ରହିଲା କଣ ? ବଣ ଜଙ୍ଗଲ ଭିତରେ କେତେଦିନ କଟିଲା, ଆଖି ଲୁହରେ ବସୁଧା ଓଦା ହେଲା । ସବୁ ହେଲା; ମନ ମାନିଲା ନାହିଁ । ନିର୍ଜନରେ ଭୂତପ୍ରେତ ପରି ଅତୀତର ସ୍ମୃତିଗୁଡ଼ାକ ଖାଇ ଗୋଡ଼ାଇଲା । ଶାନ୍ତି ନାହିଁ । ଶେଷରେ ପୁଣି ମଣିଷସ୍ରୋତ ଭିତରେ ନିଜକୁ ମିଶାଇ ଦେବାକୁ ପଡ଼ିଲା । ଦିନବେଳେ କେତେ କାମ, ରାତିରେ ବି କାମ ପଡ଼େ, ବାହାର ବିପଦ ପଡ଼ିଲେ ।

ତଥାପି ସବୁ ଯେତେବେଳେ ଶୁନ୍‌ଶାନ, ସେତିକବେଳେ ଭୂତପ୍ରେତ ଆସି ଉଭା ହୁଅନ୍ତି—ସେଇ ଅତୀତର ସୁନେଲି ଦିନଗୁଡ଼ାକ ! ରାତିଅଧ !

ହେଇ ! ଇଆଡ଼େ ! ଦଲ୍‌ବାହଲପୁର ଜଙ୍ଗଲ ମଝିରେ, ଭଙ୍ଗା କୋଠା ପାଖରେ, ନାଲି କବାଟର ଅଣ୍ଟି ପୁରିଛି କୁରେଇ ଫୁଲରେ । ଏପାଖ ସେପାଖ କେତେ ଲୁଚକାଳି ଖେଳ ! ମୁହଁରୁ ହସଟି ଲିଭି ନାହିଁ, ବୋହୂମୁହଁ ଦେଖା ସୁନେଲି ଆଲୁଅରେ ଗାଲ ଉପରେ ଗୋଲାପି ଦାଗ ସେମିତି ଫୁଟିଛି । ସେଦିନ ତ ତା ସମ୍ବଳ ଥିଲା । ଆଉ ଆଜି ? ହାତ ଦିଟା ଧରିବାକୁ ଯାଇ ଖଲୁଆ ଗଡ଼ ଉପରେ ଆପେ କଚାଡ଼ି ପଡ଼େ । ମଶାଣି ଭୂଇଁରେ ବରଗଛ ଉପରେ ପେଚା ଚେଁଚେଁ କରେ । ତେଙ୍ଗାର କଳିଜା ଭିତରର ଏ ଭୂତଗୁଡ଼ାକ ଜୀଅନ୍ତା; ମଶାଣି ଭୂଇଁର ପ୍ରେତଗୁଡ଼ାକ ମଲା ଭୂତ । ଓମା ହାଡ଼ି ତ ତା ବୁଝେ ନାହିଁ । ଛୁଆ କାନ୍ଦିଲେ ଓମା ଖିରେଯା କହେ, "ଶୋଇପଡ଼, ତେଙ୍ଗା ବାବାଜି ଧରି ନବ !" ଏଇ ଅତୀତର ସ୍ମୃତି ତେଙ୍ଗାର କବିତା । ଏ କବିତା ଛପି ଛପି ଥାଏ, ସାହିତ୍ୟରେ ହଠାତ୍ ବାହାରି ପଡ଼େ ନାହିଁ, ବେଳକାଳ ଦେଖି ଧୀରେ ଧୀରେ ବାହାରେ, ଅଳ୍ପ ଅଳ୍ପ ଆଭାସଦ୍ୱାରା । ବାରବୁଲାର ସବୁ କଥା ତ କେହି ଜାଣେ ନାହିଁ, ସାମାନ୍ୟ କିଛି ବାହାରିଲେ ତା ଉପରେ କଳ୍ପନା ମାଡ଼ି ବସିଯାଏ । ଫଳରେ ସ୍ଥଳବିଶେଷରେ ଇଙ୍ଗିତ ଉପରେ ଭର ଦେଇ କଳ୍ପନା ତିଆରି କରେ ଭାବ ଓ ରସର ସୁନେଲି କୁହୁଡ଼ି ତହିଁରେ ବନ୍ଧ ନାହିଁ, ସବୁ କଥା ବର୍ଣ୍ଣନା କରି ପାରିଲେ ପୁଞ୍ଜା କିଛି ଗୋଟାଏ ସିଦ୍ଧାନ୍ତ ହୁଏ ନାହିଁ । ପଛେ ପଛେ ଗୋଡ଼ାଇବାକୁ ଖୁବ୍ ଲମ୍ବାଚୌଡ଼ା ରାସ୍ତା । ତାର ଅନ୍ତରର ଭାବମୟ (feeling) ଜୀବନ ଉପରୁ ପର୍ଦ୍ଦା ଟିକିଏ ଫାଙ୍କ ହୁଏ । ଭିତରକୁ ଚାହିଁ ଭାବୁ ଭାବୁ କିଛି ବାଟ କଟି ଯାଏ, ପୁଣି ଅନ୍ଧାର ଟିକିଏ ଆଶ୍ରୟ ! ତେଙ୍ଗା ଆଉ ବାସ୍ତବ ରାଇଜରେ ନ ଥାଏ । ଧୌଲୀ ଯେତେବେଳେ

ତେଙ୍ଗାଙ୍କୁ Artର type କରିବାକୁ ଯାଏ, ଆମେ ତେଙ୍ଗାଙ୍କୁ ବୁଝିବାକୁ ଚାହୁଁ-ନାହିଁ । ଆମେ ଧରୁ, ତାର ଭାବ-ଜୀବନକୁ । ଆମେ କିଛି ବି ନିର୍ଦ୍ଦିଷ୍ଟ କରି ଧରିବାକୁ ଯାଉ ନାହିଁ । ଆମର ନିଜର ମନୋଭାବ ଆଉ କଳ୍ପନା ଉପରେ ଭାସି ଭାସି ଆମେ ଗୋଟାଏ ଅନୁଭୂତ (Consciousness)ରେ ବୁଡ଼ି ରହୁଁ । ତେଣୁ ତେଙ୍ଗା ହୁଏ ବିଜୁଳିକଳର (Switch) ବୋତାମପରି । ଅବଶ୍ୟ ସବୁ ଚିନ୍ତାର ମୂଳ ହୁଏ ଏଇ ବାରବୁଲା । ଆଉ ସାଧାରଣ ଅନୁଭୂତ ଉପରେ ତାର ଛାଇ ପଡ଼େ । ତଥାପି ଚିନ୍ତାଧାରାର ବିଷୟବସ୍ତୁ ହୁଏ କଳାର ଗୋଟିଏ type,—ଏ ବାରବୁଲା, ଘମଣ୍ଡିପୁରର ତେଙ୍ଗା ବାବାଜି ନୁହେଁ ।

ଜୀବନର ସାଧାରଣ ବନ୍ଧା ଗତ ଅଛି, ନିୟମ ଅଛି, ଆଗ୍ରର ବ୍ୟବହାର ଲାଗି ସମାଜର ଅଲେଖା ଆଇନ୍ ଅଛି । ଏ ଆଇନ୍ ଲେଖା ଆଇନଠାରୁ ବଡ଼ । କାହିଁକି ନା, କେତେ କାଳରୁ ଧର୍ମ ଅଜାଙ୍କ ଅମଳରୁ ମଣିଷର ଅଣୁପରମାଣୁ ଭିତରେ ତାର ଚେର । ପୁଲିସ, ଅଦାଲତ ଡରଠାରୁ ବେଶୀ ଡର । ଅମାନିଆ ହେଲେ ମଣିଷର ଯାହା ସାଧାରଣ ଦାବୀ, ତା ବି କେହି ସୁସ୍ଥରେ ଭୋଗ ଦଖଲ କରାଇ ଦେବେ ନାହିଁ । ଏପରି ଆଇନ ଫଳରେ ଶୃଙ୍ଖଳା ହେଉ ବା ଲାଭ ହେଉ, ସୀମା ଦିଆ ବାଡ଼, ବନ୍ଧନ, ନିଷେଧ ବି ଅଛି ! ଏହାଦ୍ୱାରା କୌଣସି ଗୋଟାଏ ନୂଆ କଥା ହଠାତ୍ କରି ହୁଏ ନାହିଁ କି କୌଣସି ଗୋଟାଏ ଗୁଣ ଆଇନଗତ ମାତ୍ରା ଡେଇଁ ଉତ୍କର୍ଷ କରିବା ସମ୍ଭବ ହୁଏ ନାହିଁ । ସମାଜରେ ରହିଲେ କେତେ କାଳର ବନ୍ଧା ଗତ ଆଗରେ ମୁଣ୍ଡ ନୁଆଁଇବାକୁ ହୁଏ, ଗୋଷ୍ଠୀର ଶୃଙ୍ଖଳା ଲାଗି । ସାଧାରଣ ଲୋକଙ୍କୁ ନିଜର ଯେଉଁ ପାଖଟି ବଢ଼ିଲେ ପଡ଼ୋଶୀ ଗୁଳରେ ଧକ୍କା ଲାଗିବ, ସେଇ ପାଖଟି ଭାଙ୍ଗି ଘଷି, ମାଜି Friction ଭୟରେ ପାଲିସ ରଖିବାକୁ ହୁଏ ।

ବାରବୁଲାର ଜୀବନ ଏ ବନ୍ଧା ଗତରୁ ବାହାର । ସେ ନିଚ୍ଛନ୍ଦ, ସ୍ୱେର ଦଉଡ଼ି କଟା; ସେଥିଲାଗି ସେ ବିଶେଷ ଅନୁସନ୍ଧାନର ବିଷୟ । ବନ୍ଧା ଆଇନବାଲା ସମାଜ ପ୍ରତି ସେ ଯେପରି ଗୋଟାଏ ଲଢ଼େଇ ଡାକ—Challenge ! *

ତାଠାରୁ ବେଶୀ ସ୍ୱାଧୀନ କିଏ ? ଅନ୍ନସଂସ୍ଥାନ ଲାଗି ବିଶେଷ ପରିଶ୍ରମ କରିବାକୁ ହୁଏ ନାହିଁ । ଘରଆଡ଼େ ଭିକ୍ଷା କରି ବୁଲେ, ତେଣୁ କାହାର ଏକା

---

* ତାର ନ୍ୟାୟ ବିଗ୍ୱର ଅଲଗା । ଧର୍ମ, ଈଶ୍ୱର, ବ୍ୟବହାର ଇତ୍ୟାଦିରେ ତାର ମତ ସବୁ ଅଲଗା । ସେଥିରେ ଜବରଦସ୍ତ ରକ୍ଷଣଶୀଳତା ବେଶୀ ପରିମାଣରେ ନାହିଁ ।

ଖାଏ ନାହିଁ । ଭିକ୍ଷା ନ ଦେଲେ ନାହିଁ । ଜୋର କରି ପଦେ କହିବାକୁ କେହି ନାହିଁ । ସଂସାରର ସାଧାରଣ ବଞ୍ଚିରହିବା ସାମଗ୍ରୀ ତାର ସବୁଠାରେ ମିଳେ, ଆଉ ତହିଁରେ ବାରଣ ନ ଥିବାରୁ ବିଶେଷ ଅସୁବିଧା ହୁଏ ନାହିଁ । ବନ୍ଧୁବାନ୍ଧବ ଖୋଜିଲେ ତାର ଅସଂଖ୍ୟ । ସମସ୍ତେ ତା ବନ୍ଧୁ; କିନ୍ତୁ କୌଣସିଠାରେ ସେ ବନ୍ଧା ନୁହେଁ । ବାରବୁଲା କୁକୁରଗୁଡ଼ାକ ତାର ହଠାତ୍ ପ୍ରିୟ ହୋଇପଡ଼ନ୍ତି । ଖାଇବା ବେଳ ହେଲେ ଝିଙ୍କି ଦୁଆରେ ଅବଶ୍ୟ ସେମାନଙ୍କର ପଙ୍ଗତ ପଡ଼େ । ସଂସାରର ଯେତେ ଛୁଆପିଲା, ସମସ୍ତେ ତାର ଅନୁଗତ, କେହି ପାଏ ପିଜୁଳିଟିଏ, କିଏ ବା କିଆପଣସର ପେଡ଼ିଏ । ତା ଉପରୁ, ବାବାଜି ଏତେ ପଶୁପକ୍ଷୀଙ୍କ ସ୍ୱର ଅନୁକରଣ କରିପାରେ, ଆଉ ଏତେ ନବରଙ୍ଗ, ହଟଚମକ ଜାଣେ ଯେ, ଅତି ଚଞ୍ଚଳ ପିଲାଙ୍କୁ ଅନ୍ୟ କାମରୁ ଟାଣି ଆଣିପାରେ । ପ୍ରତିଦାନ ତାର ଜଣାଦାଢ଼ୀ, ପୋଷାକପତ୍ର ଉପରେ ଅତ୍ୟାଚାର ହୁଏ ।

ଅଟକ ନ ରହେ ବୋଲି କୌଣସି ଗୋଟାଏ ଦୁଃଖ ତାକୁ ବେଶୀ ବାଧେ ନାହିଁ । ସମସ୍ତଙ୍କ ଦୁଃଖ ତାରି, ଦୁନିଆର ଯାବତୀୟ ବୋଝ ତାରି ମୁଣ୍ଡରେ ! ପୁଣି କୌଣସି ବିଶେଷ ବନ୍ଧନ ନ ଥିବାରୁ ସବୁଠାରୁ ମୁକ୍ତ, ସୁଖୀ ସେ । କଲା ଅଡ଼ୁ ଦେଖିଲେ ଏପରି ଅନାସକ୍ତ ଲୋକର ଜୀବନ ଯେପରି ମନୋହର, ବାହାରୁ ଦେଖିଲେ ପଥରର ଗୁପ୍ତ ଝରଣା ବି ସେପରି ସୁନ୍ଦର । ଅତୀତର ତ ଯାହା ଗୋପନ ବେଦନା ଅଛି, ତହିଁରେ ପୁଣି ବର୍ତ୍ତମାନ ଜୀବନରେ କଣ କିଛି ନାହିଁ ? ଥାଇପାରେ । ଯେଉଁ ଲୋକ କୌଣସିଠାରେ ଅଟକେ ନାହିଁ ବୋଲି ଜାଣୁଁ, କେହି କଣ ତା ମନରେ ଗାର ଟାଣି ନାହିଁ ? କେଉଁ ଦୂର ଦେଶର ଦୁଇଟି ଶ୍ରେଷ୍ଠ ଶ୍ରେଷ୍ଠ କଅଁଳ ହାତ, ପୁଣି ଅନ୍ୟ କେଉଁ ଦେଶର ଦୁଇଟି କଳା କଳା କରୁଣ ଆଖି, ଏତେ ଗଭୀର ଯେ ଭାତ ପାଇବ ନାହିଁ । ହୁଏତ ଏଣୁତେଣୁ ଛଳ କରି କୌଣସି ଗୋଟିଏ ଗାଁ ଗୋହିରୀରେ ସେ କୋଡ଼ିଏ କି ପଚିଶ ଥର ଯାଇଥିବ । ନିଜକୁ ସେ ସବୁବେଳେ ଦୁନିଆଁରୁ ବନ୍ଦ ରଖିଛି ତା ବି କିଏ କହିବ ? କିନ୍ତୁ ସାଧାରଣତଃ ଯେଉଁ ଲୋକ ଦୁନିଆକୁ ଦିଶେ ନିର୍ମମ ପଥର ବୋଲି, ଯେଉଁ ଥରେ ହିଁ ଥର ସେ ଧରାପଡ଼େ Art ତାର କାରଣସତ୍ତ୍ୱ ଅତୀତର ସ୍ମୃତି, ବର୍ତ୍ତମାନର ଭିତର ଓ ବାହାରର କ୍ରିୟାଶୀଳ କାରଣମସ୍ତ ଶକ୍ତି ଓ ସବାଉପରେ ତାର ଅନ୍ତରର ଭାବ—ଏସବୁକୁ ଏକାଠି କରି ସୁନ୍ଦର ଶିଳ୍ପ ଗଢ଼େ ।

ପତରଚଳା ପରି ଘୂରି ବୁଲୁଛି, କେତେଆଡ଼େ କିଏ ଜାଣେ ? କେତେ ଲୋକର ଧରଣ, କେତେ ଦେଶର ସଭ୍ୟତା ସବୁ ସେ ଆଖିରେ ଦେଖିଛି । ଯୁଗ ବଦଳା ଘଟଣାର ଗୋଲମାଲ ସବୁ ବର୍ଣ୍ଣନା କରିବାକୁ ହେଲେ ଗୋଟିଏ

(Ponctum indifference)ର ମାପକାଠି ବା କଷଟି ଦରକାର । ବାରବୁଲା ଢେଙ୍ଗା ଛଡ଼ା ଏ କାମ ଆଉ କିଏ କରିବ ? ଧାରୁ ଆକୁ ପରି ମିଶିପାରେ, କଙ୍କଡ଼ା ପରି ଖସି ଆସିପାରେ । ସବୁକଥା ବୁଲି ଦେଖୁଛି, ସବୁଥିରେ ସ୍ୱାର୍ଥ ଅଛି, କୌଣସିଥିରେ ନ ହେଲେ ନ ହେବ—ଏପରି କଥା ନାହିଁ । ଖାଲି ଏପରି ଭାବରେ ଧନ ବଞ୍ଚିତ ସେ ଗୋଟାଏ କବି ହୋଇ ପାରିଛି । ନୂଆ ତିଆରି ହେଉଛି, ପୁରୁଣା ଭଙ୍ଗା ଗଢ଼ା ଉପରେ ଦୂରରେ ଥାଇ ସବୁ ସେ ଦେଖୁଛି । କେତେ ଆଶା, ସ୍ୱାର୍ଥ, ଜୀବନଛଡ଼ା ରକ୍ତ ପାଣିକଲା ପରିଶ୍ରମ । ପାହାନ୍ତି ଅଲଥ ଅନ୍ଧାର ଭିତରେ ଛପି ଛପି ପଶିଲା ପରି ଯୁଗ ବଦଳିର ନୂଆ ଭାବ ଛପି ଛପି ମାଡ଼ିଯାଉଛି । ତାର ଗତି, ତାର କ୍ରମ କିଏ ବୁଝିବ ? ଖଣ୍ଡିଆଭୂତ ଯେଉଁ ପତରଧୂଳି ଉଡ଼ାଇ ଚାଲିଯାଏ, ତାର ଯିବାର ବାଟ କିଏ ନିରେଖେ ? ଯେ ସେଥିଭିତରେ ନାହିଁ, ସେ ଅଳସୁଆ ହେଉ, ଅକର୍ମା ହେଉ, ଅନ୍ୟମାନେ ଝାଳନାଳ ହେଲାବେଳେ ଛାଇତଳେ ଗଛକୁ ଆଉଜି ବସି ଅଧାବୁଜା ଆଖିରେ ସବୁ ଦେଖି ତାଳିମାରି ବାହାବା ଦେଇପାରେ ଏକା ସେହି ।

ଝୁ ଝୁ ବରଷା, ଅନ୍ଧାର, ବିଜୁଳି, ଘଡ଼ଘଡ଼ି । ଓମା ହାଡ଼ ଚାଳରୁ ପାଣି ଗଳୁଛି, ସମସ୍ତେ ଅନିଦ୍ରା ! ଏ ଝଡ଼ରାତିରେ ଦଣ୍ଡାବାଟରେ ଫୁଙ୍ଗା ପିଠିରେ ଢେଙ୍ଗା ନାମ ପଡ଼ିଛି । ଭାରି ସଉକ ସେ । ଅଳସୁଆ ହେଉ ପଛେ, ତାର ବେଳ ଅଛି ଠିଆ ହୋଇ ନିରେଖି ଚାହିଁବାକୁ (To stand and stare) ? ତାଆଣିଆ ଖଦ୍ୟୋତ ଯେତେବେଳେ ଆଖପାଖ ଘାସଭୂଇଁ ଆଉ ଧାନକିଆରୀରେ ଚକ୍‌ମକ୍ କରେ, ସେତେବେଳେ ଖେଳପଡ଼ିଆରେ ପିଲାଙ୍କ ଖେଳ ବସି କିଏ ଦେଖେ ? ସେଇ ଢେଙ୍ଗା । ବୁଢ଼ୀ ଗୋଟିଏ ଟିକିବୋହୂ ପରି ଦିଶୁଛି, ଝାମ୍ପୁଡ଼ା ପଦ୍ମଲମାନଙ୍କର ଅଣ୍ଡା ଭଙ୍ଗୁଛି, ଇନ୍ଦ୍ର ଯଜ, ବେଙ୍ଗ ହେଲେ ରଜା ମନ୍ତ୍ରୀ, ମୂଷା ଚାରୁ ଘୋଡ଼ା ହେବାକୁ ପ୍ରାର୍ଥୀ । ଟିକି ପିଲାଙ୍କ ନିରର୍ଥକ କଥାସୂଅ ଭିତରେ ସେ କେଉଁ ଗୁପ୍ତ ଅର୍ଥର ସନ୍ଧାନ କରେ । ଆମର ଏ Artist ଦେଶରେ ଖୁଦୁକୁଣି କି ପୂଜା ପାର୍ବଣକୁ ଯେତେବେଳେ ଦେଶର ଏମୁଣ୍ଡ ସେମୁଣ୍ଡ ହୁଲହୁଲିରେ ଉଠେ ପଡ଼େ, ଚାରିଆଡ଼େ କଳାର ସନ୍ଧାନ ନେଇ ବୁଲେ କିଏ ? ସେଇ ଢେଙ୍ଗା । ତାର Ideal ଚାରିଆଡ଼େ ତାକୁ ଦେଖାଇଦିଏ । କେତେବେଳେ ଜହ୍ନ ରାତିରେ, ସୋରିଷ କିଆରି ଉପରେ ସେ ଭାସିଯାଏ ।

ଝିଙ୍କାରି ଗାଏ ତାର ଆଗମନୀ । କୋଚିଲା, ପୁନାଙ୍ଗ ଫୁଲର ମନ-ମତାଣିଆ ସୌରଭ ତାର ଅର୍ଘ୍ୟ, ପାହାନ୍ତି ପହରର ଚଢ଼େଇଙ୍କ ମନଫୁଲାଣିଆ କାକଳି ତାର ସଙ୍ଗୀତ । କେଉଁ ଅଜଣା ଛନ୍ଦ (Mystic Rhythm) ସେ

ଖୋଜବୁଲେ ବାରବୁଲ ପଡରଚଜଟା । ମଶାଣି ଉପରେ ମୁଣ୍ଡମାଳ ଭିତରେ ପବନ ଯେତେବେଳେ ସଁ ସଁ କରି ପୃଲ୍‌ଯାଏ, ତେଙ୍ଗା ଶୁଣି ଶୁଣି କଣ ପାଏ ? କିଏ କହିବ ତା ? ଆମର ବନ୍ଧାଗତରୁ ବାହାର ବୋଲି, ସବୁ ଅକଥା, ସବୁ ଅକାମ, ସବ୍ ସୃଷ୍ଟିଛଡ଼ା ଜୀବନଧାରି ତୋଣଠାରେ ବୋଲି ତା କଥା ଲୁଗେ କେମିତି କେମିତି କୁହୁକ ପରି । ସେ Mystic ଜୀବ, ଆତମ୍ନିତିକାଣ୍ଡ ଗୁଣର ଗୋଟିଏ ବଶିଷ୍ଟ ଅବତାର । ଶହ ଶହ ବର୍ଷ ବିତିଯିବ, ତେଙ୍ଗାର ସମାଧି ଉପରେ ଉଇ ହୁଙ୍କା ଫୁଟିବ, କେହି ଜାଣିବେ ନାହିଁ, କେହି ପଚ୍ଚରିବେ ନାହିଁ, ତଥାପି ସେ ଥିବ ।

ତେବେ ତେଙ୍ଗା କ କେବେ ମରିପାରେ ? ତାର ମଲାବେଳେ ଦେଶ ହୁଲସ୍ଥୁଲ୍ ହେବ ନାହିଁ ଯେମିତି, ସେ ନ୍ୟାୟତଃ ମରିବ ନାହିଁ ସେମିତି । ଏ ଆଲୁଅ, ଏ ଅନ୍ଧାର, ଏ ପବନର ଗୋଟାଏ ଅଙ୍ଗ ସେ ହୋଇ ଗଲାଣି । ଜହ୍ନ ରାତିରେ ଛୁପିଛୁପିକା ଆଲୁଅରେ ସେ ଆସିବ, ସକାଳର କାକରସିଣା ଗଙ୍ଗଶିଉଳି ଫୁଲରେ ତାର ଅନ୍ତରର ଜମାଟବନ୍ଧା ଲୁହ ଝରିବ । ସଜ ବେଙ୍ଗ, ବୁଢ଼ୀ ଝାମ୍ପୁରି, ଜବଡ଼ ଖେଳିଲା ବେଳେ ସୁଲୁସୁଲିଆ ବାଆରେ ତାଙ୍କୁ ଛୁଇଁ ଦେଇ ହସି ହସି ମେଞ୍ଚାଏ ରଙ୍ଗିଣୀ ଆଲୁଅ ତାଙ୍କ ଉପରେ ବିଛେଇ ସେ ପୃଲିଯିବ, ମଶାଣି ବରଗଛ ଭିତରେ କ ହେଲେ ଅନ୍ଧାରିଆ ବାଉଁଶବୁଦା ଭିତରେ ସେଇ ପୁରୁଣା Ideal ଖୋଜିବାକୁ । ରାତିଅଧରେ ବଣତୋଟା ଭିତରେ ଯେତେବେଳେ ଶବ୍ଦ ହେବ—କେଁ କେଁ, କଟ୍ କଟ୍, ମଟ୍ ମଟ୍ ମିଳ, ଧୂନ ଚର୍ ଚରେଇ ଉଠିଲେ ଦେହରେ ଧଳାଦାଢ଼ି ଆଉଁଷି ବୁଢ଼ା କବ କହିବେ—“ଚୁ ଚୁ ଶୋଇପଡ—ସେ ପରି ଆମ ତେଙ୍ଗା ।”

# ତାଧିନ୍‌ଧିନା

"ତାଧିନ୍ ଧିନାକୁ ତାଧିନ୍ ଧିନା
କଦମ୍ବ ଦାଣ୍ଡରୁ କଚଣ ପିଣ୍ଡା ।"

—କୁଞ୍ଜ

× × × ×

ଧାତ୍, ଏଗୁଡ଼ା ପୁଣି ପାଠ ?

ପଟ୍ଟନାଏକେ ଚଷମାଟି ଖୋଲି ଥୋଇଦେଲେ । ଗାମୁଛାଟି ଭଲକରି ସଜାଡ଼ି ଦେଇ କଦମଦାଣ୍ଡ ମଣ୍ଡପ ଉପରୁ ଉଠି ପଡ଼ିଲେ । କଟକରୁ ନୂଆ ବନ୍ଧୁ ଆସିଥିଲେ, ମହାପାତ୍ରେ ପଚାରିଲେ—'କମିତ ?' ପଟ୍ଟନାଏକେ ମୁହଁ ମୋଡ଼ି ଦେଇ କହିଲେ, 'ଏ ଆଜିକାଲିକା ଅକାଳପାଉଁଶଙ୍କ ଲେଖା, ଟିକିଏ ବୋଲି ସାର ନାହିଁ !' ସବୁ ମନ୍ତବ୍ୟ ଏତିକିରେ ଶେଷ ? ତାପରେ ଧୂଳିଆ ଘର ପିଣ୍ଡା ଆଡ଼କୁ ଯାଉଁ ଯାଉଁ ଯାହା ବା ମନକୁ ମନକୁ ଭୁଣ୍ଟୁରୁ ଭୁଣ୍ଟୁରୁ ହେଲେ, ସେ ଖାଲି ଦେଶର ଅଧଃପାତ ବିଷୟରେ ଆଶଙ୍କା, ଅଉ ଅନୁଶୋଚନା, ଅତୀତ ଭବିଷ୍ୟତର ତୁଳନା ଆଉ ଲେଖକଙ୍କ ଉପରେ ଭର୍ତ୍ସନା । ସାହିତ୍ୟ ହିସାବରେ ତାର ମୂଲ୍ୟ ନାହିଁ ।

ଭଲ, ଖରାପ ଗୋଟା କିଛି କହିଦେଲେ କାମ ସରିଲା, ଏତେ ପଚାରେ କିଏ ? କୋଉ କାଳର ପଟ୍ଟନାଏକ ବୁଢ଼ାଙ୍କଠୁଁ ଆଜିକାଲିକା ସାଧାରଣ ପାଠୁଆଙ୍କ ପର୍ଯ୍ୟନ୍ତ ଖାଲି ସେଇ ଦୁଇଟି କଥା—ଭଲ ନ ହେଲେ ଖରାପ । ସଫା କଥା, ଓଡ଼ିଶାର ସମାଲୋଚନା ଖାଲି ଏଇଆ । କେତେ କବି ଗାଇଗଲେ, ଏ ଦେଶ ଗୋଟାକ କବିଦେଶ, ଲୋକଙ୍କ ଢଙ୍ଗଢାଙ୍ଗ, ଦେଶର ପୂଜାପାର୍ବଣ ଯୋଗୀଭିକାରୀଠୁ ସାମାନ୍ୟ ମାଇପି କାନ୍ଦଣା ପର୍ଯ୍ୟନ୍ତ ଖାଲି କବିତା । ଶିରିଏ ଶିରିଏ ଦିଅଁ-ଦେବତାଠୁଁ ମାଟିକାନ୍ଥର ଚିତାକୁଟା ଯାଏ ଖାଲି art ପୂରି ରହିଛି । କିନ୍ତୁ ଯୁଗ ଯୁଗ ଗଲା ଭଲ ଖରାପ ଦୁଇଟି ମୋଟାମୋଟି କଥା ଛାଡ଼ି ସବୁଯାକ ବୁଝି ବିଚାରି ନିଜର ମନର ଭାବ ଟିକି ଟିକି କରି ଛଜେ ବୁଝିବା ଏପର୍ଯ୍ୟନ୍ତ ହେଲା ନାହିଁ । ଗଦ୍ୟ

ବହୁତ ତେଜରେ ବଢ଼ିଲା, ତା ଉପରେ ପୁଣି ଉତ୍କର୍ଷର ସମାଲୋଚନା ହେଲା ଆହୁରି ତେଜରେ ।

ସଂସ୍କୃତ-ସାହିତ୍ୟର ବଡ଼ପଣ ବିଷୟରେ କୌଣସି କଥା ଆମ ତରଫରୁ ଉଠି ନ ପାରେ; କିନ୍ତୁ ସେ ହେଲା ବହୁତ ପୁରୁଣା । ସଂସ୍କୃତ ସାହିତ୍ୟରେ ସମାଲୋଚନାର ସ୍ଥାନ ଖୁବ୍ ଉଚ୍ଚ, ସେମାନେ ଏତେଦୂର ଉଠିଥିଲେ ଯେ, ଯଥା-ସମ୍ଭବ ପ୍ରତ୍ୟେକ ରସ, ପ୍ରତ୍ୟେକ typeକୁ ଠିକ ଠିକ କରି ନିରେଖି ତାର ତତ୍ତ୍ୱ ଲେଖି ଯାଉଥିଲେ । ଆରିଷ୍ଟଟଲ କେଉଁ ମାନ୍ଧାତାଙ୍କ ଅମଳର ଲୋକ; କିନ୍ତୁ ସାହିତ୍ୟ ବିଷୟରେ ସେ ଯାହା ସମାଲୋଚନାର ମୂଳଦୂଆ ପକାଇ ଯାଇଛନ୍ତି, ଏପର୍ଯ୍ୟନ୍ତ ଠିକ୍ ସେଇଆ ଚାଲିଛି—ଖାଲି ନୂଆ ନଜରରେ ତାର ଅର୍ଥ ଯାହା ନୂଆ ଭାବରେ ବୁଝାଇ ଦିଆଯାଉଛି । ନୂଆ ବୁଝାଳିଙ୍କ ପକ୍ଷରେ ସବୁ ସମ୍ଭବ, ସେଇ ଗୋଟିଏ କଥା ଅଲଗା ଅଲଗା ଅର୍ଥ ହେଉଥିବ । ସଂସ୍କୃତରେ ବି ସେପରି ସମାଲୋଚନା ଅଛି । ଆଜିକି ତାର ମାନ୍ କମିନାହିଁ; କିନ୍ତୁ ତା ବୋଲି ସେଇ ପୁରୁଣା କଥାକୁ ଯାଗୁଡ଼ି ଧରି କେତେ ଦିନ ଚାଲିବ ? ସେକାଳି ପଖାଳ ଭଲ ଦହିବରା, ଭଲ ପାଗ ହୋଇ-ଥିଲା, ଆଜି ବି ତାର ନାଁ ଅଛି; କିନ୍ତୁ ଆଜିକି ସେ ବାସି, ଗନ୍ଧିଆ ଆଉ ତହିଁରେ କାମ ଚଳିବ ନାହିଁ । ଧର୍ମୁ ଅଜାଙ୍କ ହାକୁଟି ସଂଗ ଗାଡ଼ିଆରେ ସମାଧି ପାଇଲାଣି ।

ସେତେବେଳେ ଯେଉଁ ପରିସ୍ଥିତି ଥିଲା, ଯେଉଁ ସାହିତ୍ୟ ଥିଲା, ଚିନ୍ତାର ଯେଉଁ ଧାରା ଥିଲା, ତାରି ଉପରେ ସେତେବେଳର ସମାଲୋଚନା ଗଢ଼ା ହେଲା । ସେମାନଙ୍କ ନଜର ଥିଲା ଖୁବ୍ ତୀକ୍ଷ୍ଣ, ଆଗରୁ ବହୁତ ଦୂର ଦେଖି ଚିନ୍ତା କରୁଥିଲେ, ତେଣୁ ସେମାନଙ୍କ ଗତ ଆଜିକାଲି ଅଳ୍ପ ବହୁତ କିଛି ହେଲେ ଆଦର ପାଉଛି । ତା ବୋଲି ଆଜିକାଲିକା ପରିସ୍ଥିତି, "ମାନସିକ ବାୟୁମଣ୍ଡଳ" (ବି ବିଶ୍ୱନାଥ କର)ରେ ଯେଉଁ ସାହିତ୍ୟ ଗଢ଼ା, ପୁରୁଣା ମୂରୁବି-କିଆ ମାପକାଠିରେ ତାକୁ ମାପି ବସିଲେ ଖାପିବ କିଆଡ଼ୁ । ପଦ୍ମିନୀ କନ୍ୟାଙ୍କର କେତେ ଅପୂର୍ବ, ନିଶ୍ୱାସରୁ ପଦ୍ମଗନ୍ଧ ପାଇ ମହୁମାଛି ବେଢ଼ନ୍ତି । ଆଜିକାଲିକା ହେଜଲିନ୍, ପୋମେଡ଼ମଖା କନ୍ୟାଙ୍କ ଭିତରେ ସେମାନଙ୍କୁ ଖୋଜି ବୁଲିଲେ ମିଳିବେ କାହୁଁ । କେହି କହିପାରନ୍ତି କାଳ ଅନୁସାରେ ସବୁ Hybrid ହୋଇଯାଇଛନ୍ତି । ତେବେ ସେ ନିଜେ ନିଜେ ସ୍ୱୀକାର କଲେ ଯେ, ଆଗକାଳର ମାପକାଠି ସରିଲାଣି । ସେ କାଳର ନାୟକ ନାୟିକା ଭିନ୍ନ ଭିନ୍ନ typeର । ଅଜିକାଲି ତାଠୁ ବଳି type ହେଲେଣି, ସେମାନେ ଯିବେ କେଉଁଆଡ଼େ । ତାପରେ ସବୁଠୁ ଗୋଳମାଳ ହେଉଛି ସଂସ୍କୃତ ସାହିତ୍ୟର ସମାଲୋଚନା ବିଷୟର ବିଶେଷ ଶବ୍ଦ । ସେଗୁଡ଼ିକ ଗୋଟିଏ ଗୋଟିଏ formula, ତାକୁ ବ୍ୟବହାର କଲେ ଏତକ ସାଧାରଣ ଲୋକେ ବୁଝିପାରିବେ ନାହିଁ, ତା ଉପରେ ପୁଣି ସେଇ ବିଶେଷ ବନ୍ଧା-ଗତକୁ ସ୍ୱୀକାର କରି ତହିଁରେ

ତାର କାଟ ନାହିଁ, ତହିଁରେ ତାକୁ ବ୍ୟବହାର କରିବାକୁ ହେବ । ତା ଉପରେ ସଂସ୍କୃତମିଶା ଭାଷା ତ ନଥାଏ, ସେ ସନ୍ଧିସମାସର ନିଘଞ୍ଚ ଜଙ୍ଗଲ ଭିତରେ ସାଧାରଣଙ୍କ ମୁଣ୍ଡ ପଶିବ ନାହିଁ । ଏଠି ଅନେକେ କହିପାରନ୍ତି, ଓଡ଼ିଆ ଭାଷାରେ ଏପାଖ ସେପାଖ କରି ଗୋଟି ଗୋଟି କରି ବୁଝାଇ ଲେଖିଲେ ଯାହା ପାଞ୍ଚପୃଷ୍ଠା ହେବ, ସଂସ୍କୃତରେ ଦଶ ଧାଡ଼ିରେ ସେ କାମ ସରେ । ସେ କଥା ସତ, ତା ହେଲେ ତ ସତିମତି ଅନୁସ୍ୱାର ବିସର୍ଗ ଦେଇ ସନ୍ଧି-ସମାସ ଅନୁସାରେ ସଂସ୍କୃତ ଲେଖିଲେ ଚଳିବ, ଓଡ଼ିଆରେ ଆଉ ସମାଲୋଚନା ଲେଖି ଫଳ କଣ ?

ତଳସାହି କଣା ଗୋଲଖା, ଗାଁ ଚୌକିଆ ସପନ ମଲିକ, ଏମାନଙ୍କ ଭିତରେ ସାହିତ୍ୟ ପ୍ରତି ଯେଉଁ ଆଦର ଦେଖାଯାଏ, ହୁଏତ ବଡ଼ ବଡ଼ ପାଠୁଆଙ୍କର ସେପରି ସ୍ପୃହା ନାହିଁ । ସାଧା କଥାରେ ଆମ ଓଡ଼ିଶାର ସାଧାରଣ ପରିସ୍ଥିତି ଅନୁସାରେ ସେମାନେ ନିଜ ନିଜ ମନ୍ତବ୍ୟ ଗାଉଁଲି କଥାରେ କହିପାରିବେ । "କେଶବ ମଥୁରାକୁ ଗଲା ବୋଲି ମାସ୍ଟ୍ରେ କେତେ କାନ୍ଦିଲେ; ଗୋଟି ଗୋଟି କରି ବାଳଲୀଳା ତାଙ୍କ ମନକୁ ଘାଣ୍ଟି ଚକଟି ପକାଇଲା, ରାମ ବନବାସ ବେଳେ ଆଖିରୁ ଏତେ ଲୁହ ବୁହେ ନାହିଁ; ମୁରିଆ ଗହଡ଼ କଲିକତା ଗଲାବେଳେ ତା ମା ଯେମିତି କାନ୍ଦି କାନ୍ଦି ପିଲାବେଳେ କେମିତି ସେଜପାଣି ଖୋଇ ତାକୁ ବଢ଼ାଇଥିଲା, ସବୁକଥା ଚହକିଆ ବୋଲି ମତେ ନେହୁରା ହୋଇ କହିଲା ।" ଏହିପରି କିନ୍ତୁ ସଂସ୍କୃତିଆ ପଣ୍ଡିତିଆ ଭାଷାରେ କରୁଣ ରସର ଅଙ୍ଗ୍ରେଜ ଅନୁଯାୟୀ ବଖାଣି ବସିଲେ ସେ ହୁଏତ ଛୁଲେଇ ଛୁଲେଇ ଚମକି ପଡ଼ି କହିବ, "ବାବୁ ଆଜ୍ଞା, କି ରସ କହିଲେ ? ସେ କଣ ଓଷଧ ହୁଏ ?" ଏସବୁ କାରଣ ଯୋଗ ମଉଁସି ଫଲରେ ନାଲି ଛିଟା ପରି ସଂସ୍କୃତିଆ ସମାଲୋଚନାର ଆମ ସାଧାରଣ ଲୋକଙ୍କ ଭିତରେ ଆଦର । ସାଧାରଣଙ୍କ ବୁଝିବା କଥା ଛାଡ଼ିଦେଲେ ଏ କାଳକୁ ସେପରି ସମାଲୋଚନାର ଉପଯୋଗିତା ବିଷୟରେ ପ୍ରଶ୍ନ ଉଠିପାରେ । ସାଧାରଣ ଯାହା ସହୁଛି, ତା ଉପରେ ଆମର ଯୁଗର ମତାମତ ଗୁଡ଼ି କାହାର ବନ୍ଧା ଆଇନ୍‌କୁ ମାନିବାକୁ କାହିଁକି ବାଧ୍ୟ ହେବୁଁ ? ଏ ତ ସାହିତ୍ୟ, ଏଥିରେ ଏତେ ବଡ଼ ଆଇନ୍‌କାନୁନ୍ କାହିଁକି ?

ଜଣେ ଜଣକୁ ମନ ସମର୍ପିଲେ ସେଠି ଗୋଟିଏ କୋଇଲି ବୋବାଇବ କାହିଁକି ? ବିରହ ହେଲେ କାମ କାର୍ଯ୍ୟ ଗୁଡ଼ାଏ କଲେଜ, ଅଫିସରୁ ଛୁଟି ନେଇ ଘନ ଘନ ଦୀର୍ଘଶ୍ୱାସ ପକାଇ ବାରବୁଲା କୁଣ୍ଡା ପରି ବୁଲିବ କାହିଁକି ? ମୂଳରେ ରସ ଠିକ୍ ରହିଛି, ମନ ଭିତରେ ଭାବ ଯାହା ତା ରହିବ; କିନ୍ତୁ ସେ ତ ପୁଣି ବାହାର ଘଟଣା ସାଙ୍ଗେ ଘସି ହୋଇ କ୍ରିୟାପ୍ରତିକ୍ରିୟା କରିବ ? ତା ଉପରେ ମୂଳ କଥା,

ଧର୍ମ ଅଜା ସାହିତ୍ୟର କୌଣସି ଅଂଶକୁ ଯେଉଁ ଢଙ୍ଗରୁ ନ ଦେଖି ଥିଲେ, ଏବକାଳର ଟୋକାଏ ଯେ ଠିକ୍ ସେହି ଢଙ୍ଗରୁ ନ ଦେଖିବେ, ଏଥିରେ ଚିକଏ ବୋଲି କାରଣ ନାହିଁ । ଅନେକେ କହିବେ, ଏ ସ୍ୱେଚ୍ଛାଚାର, ଏ ବିଦ୍ରୋହ ! ସେପରି ଗାଳିରେ ଖୁସି ହେବାର କଥା ! ଏଇ ସ୍ୱେଚ୍ଛାଚାର, ବିଦ୍ରୋହ ସବୁ ଯୁଗରେ ବନ୍ଧନ କାଟି (ବା ଅଶିଠାଣ ଅଣ୍ଟାରେ କହିଲେ, ସ୍ତନ ଦଉଡ଼ି କାଟି) ନୂଆ କଥା କରିଛି । ଆମେ ସେଇ ପୁରୁଣା ବାରବାଟୀ ଉପରେ ଆଖିରୁ ଲୁହ ଗଡ଼ାଇ ଗଡ଼ାଇ ଭଙ୍ଗା କାନ୍ଥର ମାଟିଗଦା ତଳେ ଚପି ପଡ଼ିଥାଉଁ । ଆଉ ଯେଉଁମାନଙ୍କୁ ସ୍ତନ ଦଉଡ଼ିକଟା କହୁଁ, ସେମାନେ ଦେଖୁ ଦେଖୁ ନୂଆ ନୂଆ କଥା କରି ଯାଉଛନ୍ତି । ସଂସ୍କୃତ ଗୁଡ଼ ଓଡ଼ଥିରେ ଚାଲିଥିଲେ, କେଡ଼େ ସୁନ୍ଦର ସାହିତ୍ୟ ଆମର ହୁଅନ୍ତାଣି ! ସାଧାରଣ ଭିତରୁ ବାହାର କୌଣସି ଗୋଟିଏ ବଡ଼ କଥା ଲେଖିବାକୁ ଗଲେ ଆମେ ବାଧ ହୋଇଯାଉଁ ସେଇ ସଂସ୍କୃତକୁ ।

ଆଦ୍ୟ—"ଗୋରୁ ଗୋଟିଏ ଚତୁଷ୍ପଦ ଜନ୍ତୁ । ତାହାର ଦୁଇଟି ଶିଙ୍ଗ, ଦୁଇଟି କାନ, ଦୁଇଟି ଆଖି...ଓଗେର......"

ମଧ୍ୟ—"ଗୋରୁ ଘାସ ଖାଏ, କୁଣ୍ଡା, ତସୁ ଓଗେର...... ।"

ପ୍ରାନ୍ତ—"ଦୟାମୟ ପରମେଶ୍ୱର, ମଙ୍ଗଳମୟ ବିଧାତା ନିରାକାର ବ୍ରହ୍ମ, ତୁମ୍ଭର ପାଦ ମୂଳରେ ଭୂୟୋଭୂୟ ନମସ୍କାର ! ଭବତଃ......ସୃଷ୍ଟି ପ୍ରକ୍ରିୟା ସନ୍ଦର୍ଶନରେ ଆମ୍ଭର ହୃତ୍କମ୍ପ ହେଉଅଛି ।"

ବାସ୍ତବିକ ହୃତ୍କମ୍ପ ହେବାର କଥା ! ଏପରି ପ୍ରବନ୍ଧ ଯଦି ପାଚିଲା ଦାଢ଼ୀ, ଧୋକଡ଼ା ଚମ, ପୁରୁଣା ଲେଖକଙ୍କ କଲମ ମୁନରୁ ବାହାରେ, ତେବେ ଦେଶର ସାହିତ୍ୟ ଚୁଲିମୁହଁ ଗୁଡ଼ କେଉଁଆଡକୁ ମୋଡ଼ିବ ? ସବୁଥିରେ ଖାଲି ବନ୍ଧା ଗତ, ନିଶ୍ୱାସ ମାରିବାକୁ ସୁବିଧା ନାହିଁ ! ଉଧାର କରି ଖିବ ଗୁଡ଼ ନିଜ ମୁଣ୍ଡରୁ ଟିକଏ ବୋଲି ଖରଚ ହେଉ ନାହିଁ । କେବଳ—ଏପରି ଧାରାରେ ପ୍ରବନ୍ଧ ଲେଖିଲେ କ'ଣ ସବୁଠାରୁ ଉତ୍କୃଷ୍ଟ ହେବ ? Art ଗୁଡ଼ ଯଦି ଅଙ୍କଶାସ୍ତ୍ର ପରି ନିରେଖ ଯୁକ୍ତିତର୍କ, ମୁଖ୍ୟଗୌଣ ସମ୍ପାଦ୍ୟ ବସ୍ତୁ; ସମ୍ପାଦ୍ୟ ପ୍ରକ୍ରିୟା; କରୁଣା ସତ୍ତ୍ୱ; ଫଳ ଲାଭ ଏହିପରି ଲାଇନ୍ ଧରିବାକୁ ହୁଏ; ତାହେଲେ ଆହୁରି ସୂକ୍ଷ୍ମ ଉପାୟ ଅଛି । ସମାଲୋଚନାର ବାହନ ଯେ ପ୍ରବନ୍ଧ; ତାକୁ ଏପରି କ୍ଳିଷ୍ଟ ନୀରସ କରିଦେଲେ ପ୍ରବନ୍ଧ ତ ଦେଶର ଦଶଜଣଙ୍କୁ ରୁଚିବ ନାହିଁ; ସମାଲୋଚନାକୁ ପଚାରେ କିଏ ?

କେତେଜଣ ଭଲ ଲେଖକଙ୍କୁ ବାଦ୍ ଦେଲେ ସାଧାରଣ ରଥୀ ଯେଉଁମାନେ ସମାଲୋଚନା ଲାଗି ଓହ୍ଲାଇଛନ୍ତି, ସେମାନେ ଅଣ୍ଟାଭିଡ଼, ଦୋକଚ୍ଛ ଚଢ଼ାଇ ଆଗରୁ

ଉଆର ହୋଇଛନ୍ତି । ସମାଲୋଚନା ଅର୍ଥରେ ସେମାନେ ବୁଝନ୍ତି, କଳଆ ଦଙ୍ଗା ! ଲେଖକଙ୍କୁ ଏଣୁତେଣୁ ଦଶପଦ କହି ଗାଳି ଦେଇ ପୋଥିରେ ଡୋର ବାନ୍ଧି ତାଙ୍କର ଘରୋଇ ଛିଦ୍ର ପଦାରେ ଦେଖାଇବାରେ ସେମାନଙ୍କର ଆନନ୍ଦ । କେଉଁଦିନ ଗୃହିଣୀଙ୍କ ନାଁରେ କିଛି ଅପବାଦ ରଟିଥିଲା, ହାଣ୍ଡିରେ ଗୁଡ଼ିଲ କେତୋଟି ଫୁଟେ ଇତ୍ୟାଦି ସତ ମିଛ କହି ହୁଁ ହୁଁ କାର କରି ଧୂମ୍ରପ ପିଟିବା ସେମାନଙ୍କର ଧର୍ମ । ଏହାର ଭିତରେ ଯଦି ଟାଣି ଓଟାରି ଜାତିକୁ ଅପମାନ ଦେଲା ବୋଲି ପ୍ରମାଣ କରି-ପାରିଲେ, ତାହାହେଲେ ତ ଘନ ଘନ କରତାଳି । "ଆମ ଜାତିକୁ ଅପମାନ ହେଲା, ଆମ ପଣ୍ଡିଆଜାଏ ଏପରି ଏପରି କରିଥିଲେ (ଦଶପୃଷ୍ଠା ଗଲାଣି) ହେଁ, ବଙ୍ଗାଳି, ଗୁରୁଛକର ବଙ୍ଗାଳି ଏପରି କହିଲେ, (ଅନ୍ଧର ୩ପୃଷ୍ଠା) ଇତ୍ୟାଦି । ତେଣେ ମୂଳ ଉଦ୍ଦେଶ୍ୟ ଓଡ଼ିଆ ଶବ୍ଦମାନଙ୍କର ଭାଷାତତ୍ତ୍ୱ ଆଲୋଚନା ହେଉ ବା ଜୟଦେବଙ୍କ କବିତା ହେଉ, ସେ ରହିଲାଣି ପଛରେ ପଡ଼ି ।

ଠିକ୍ ଆମ ଗାଁ ପଠନାୟକଙ୍କ ଭୁଟ୍ଟୁରୁ ଭୁଟ୍ଟୁରୁ ପରି ! ମୋଟ କଥା, କାହିଁକି କଣ ହେଲା, ମଣିଷମନର ସୂକ୍ଷ୍ମ ପ୍ରତିକ୍ରିୟାର କାରଣ ଆମେ ଅନୁସନ୍ଧାନ କରିବାକୁ ଚାହୁଁନାହିଁ । ଭଲ ଲାଗିଲା, ବେଶ୍, ବାଃ ବାଃ ସାବାସ୍, ସାବାସ୍ କରି ତାଳି ମାରି ଛତା ଘୁଦର ଉପରକୁ ଫୋପାଡ଼ି ନାଚିଲେ ହେଲା । ଖରାପ ଲାଗିଲା, ବୁଢ଼ୀମଣା ଗୁଡ଼ି ପାଟିକରି ନାଲି ଆଖି ଦେଖାଇ "ବସ, ବସ", ନ ହେଲେ "ଧୂଏ, ଧୂଏ" କଲେ ହେଲା । ଦୁଇଟା କଥା ଭଲ ଲାଗିଲା, କାହିଁକି ଭଲ ଲାଗିଲା, କେଉଁଟା ବେଶୀ ଭଲ, କି କାରଣରୁ ଭଲ—ଏସବୁ କଥା ଆଲୋଚନା ଭଲ ହେଉନାହିଁ । ସବୁ କଥାରେ ମନକୁ ମନ ଆଖି ଅଧବୁଜା କରି ଚକଆ ଆତ୍ମଜ ଅନୁଭବ କଲେ ମଣିଷର ବିଶେଷ ଗୁଣ ଯେଉଁ ବିଚାର ବୁଦ୍ଧି, ତାର ଅପବ୍ୟୟ ହୁଏ ।

"କାଉ କଳା, କୋଇଲି କଳା ଆମ ଗାଁ ମାଧିଆ ମା କଳା, ହାଣ୍ଡି କଳା, ବର୍ଷା ହେବା ପୂର୍ବରୁ ମେଘ କଳା, ଅନ୍ଧାର ବି କଳା ।"

—"ରକ୍ତ ନାଲି, ଜଆଁ ନାଲି, ଅବିର ନାଲି, ମଧୁ ଅଜାଙ୍କ ବାଗର ସବୁ ଗୋଲାପ ନାଲି"—ଏପରି କହିଲେ କେବଳ ସ୍ଥୂଳ ବିଚାର ହେଲା । ତୁଳନା, ସମତା ସବୁଠାରୁ ବଡ଼ ବିଚାର ପୃଥକ ଗୁଣ, ଏ ସବୁଥିରେ ମସ୍ତିଷ୍କ ଚାଳନା ହେଲା ନାହିଁ । ଫଳରେ ସମାଲୋଚନା-ସାହିତ୍ୟ ସଦାଚଳ ପାହାଚରେ ମୁଣ୍ଡ ପିଟିଲା । ନ୍ୟାୟବିଚାର ଅନୁସାରେ କୌଣସି ନୂଆ କଥା ବି ହେଲା ନାହିଁ ।

ଏପରି ପରିସ୍ଥିତିରେ ଷଣ୍ଢ କଣ ହେଉଛୁ ? ନିଜର କଥା ଠିକ୍ ବୋଲି ସଳଖ ଅପକ୍ଷପାତ ବିଚାରଦ୍ୱାରା କାରଣ, ଯୁକ୍ତି ଦର୍ଶାଇବାକୁ ଲେଖକ ନାରାଜ । ତେଣୁ ନ୍ୟାୟ ଯୁକ୍ତିରେ ବିବାଦୀ ଲେଖକଙ୍କ ଯୁକ୍ତି କାଟିବା ସମ୍ଭବ ହୁଏ ନାହିଁ । କୌଣସି ଗୋଟିଏ ସାହିତ୍ୟିକ ଯୁକ୍ତିଦ୍ୱନ୍ଦ୍ୱ ଚଳାଇବା ସମ୍ଭବ ହୁଏନାହିଁ । ବୁଦ୍ଧି ବିଦ୍ୟା ଛାଡ଼ି ପାଶବିକ ଶକ୍ତି ପ୍ରୟୋଗ ଆବଶ୍ୟକ ହୁଏ । "ଅହମିକା" "ହିଂସା" ବଢ଼େ, "କ୍ରୋଧ, ଦ୍ୱେଷ" ବଢ଼ି ବାଦୀ ଲେଖକମାନଙ୍କ ବ୍ୟକ୍ତିଗତ ଜୀବନରେ ସଂଘର୍ଷ ଲାଗି ଦୈହିକ କୁସ୍ତି କସରତ୍, ଯୁଯୁତ୍ସୁ, ମୁଷ୍ଟିଯୁଦ୍ଧ ଚଟିଧାରଣ ସମସ୍ୟା ଘଟେ । ଏ ହେଲା ଖେଳୁଆଡ଼ର ସବୁଠାରୁ ହେୟ ଅବସ୍ଥା ! ନ୍ୟାୟଯୁକ୍ତି ଭିତରେ ପାରିବାରିକ, ବ୍ୟକ୍ତିଗତ ଆକ୍ରୋଶ କାହିଁକି ରହିବ ? ଯାହା ସତ, ଯାହା ନ୍ୟାୟ, ସେ ତ ସାକ୍ଷାତ ଭଗବାନ, ତା ଆଗରେ ତର୍କ ପଡ଼ିଲେ ଯୁକ୍ତି ଉପରେ ବାପ ପୁଅ, ବଡ଼ ସାନ ନ ଥାଏ—ସମସ୍ତେ ସମାନ ! ମଣିଷ ମଣିଷ ଭିତରେ ଯୁକ୍ତି ସାଙ୍ଗେ ଯୁକ୍ତି ଯୁଝାଯୁଝି, ଏଣେ ବ୍ୟକ୍ତିଗତ ଜୀବନରେ ପୂର୍ବପରି ଆନନ୍ଦ, ସ୍ନେହ, କୁଣ୍ଢାକୁଣ୍ଢି ! ଓସ୍ତାଦ୍ ଖେଳାଳୀଙ୍କର ଏହି ତ ବାହାଦୁରି ! ଏପରି ନ କଲେ ଆଉ ବିଚାର କଣ ?

ତାପରେ ଏପରି ପରିସ୍ଥିତିରେ ସାହିତ୍ୟକୁ ବୁଝିବା ବୁଝାଇବା ସମ୍ଭବ ହେଉନାହିଁ । ମନରେ ନୂଆ ଭାବ ଆସୁନାହିଁ, ନୂଆ ସମାଲୋଚନା ଅନୁସାରେ ନୂଆ ଧରଣରେ ଆମ ନିଜକୁ ପ୍ରକଟି ହେଉନାହିଁ । ନିଜର ଓଜନ ନିଜେ ବୁଝାପଡ଼ୁ ନାହିଁ । ତେଣୁ ବାହାରର ଝଟଚମକ ଆଖି ଝଲସାଇ ଦେଉଛି । ବାହାରେ କେତେ ବଡ଼ ନାଁ Mysticism, Symbolism, କେତେ—ism; ତା ଉପରେ Theory of Consciousness, Verselibre, କେତେ କଣ । ଏତେ —ism ଉପରେ, ଏତେ ବଡ ବଡ ନାଁ ଉପରେ ଆଉ କଥା ଚଳିବ ? "ମାଛ ଚଡଚଡ଼ି" କହିଲେ ହଠାତ୍ ଚମକ ଲାଗେ, ଘଡଘଡ଼ି କଥା ମନେ ପଡେ, ଆଉ ମନେହୁଏ—"ନାଇଁ ଲୋ ମା ରାଣୀ, ଏ ପାଠ ଆମ ଷୋଳପୁଅ ଶାଳର ଚଉଦ ପୁରୁଷ ଦେଖି ନାହିଁ ।" ହୁଏ ତ ସମାଲୋଚନା ପୁରା ଦସ୍ତୁର ଚାଲିଥିଲେ, ଆମର ରାମନବମୀ ଯାତ୍ରା ସାହିତ୍ୟରେ କେତେ ହନୁମାନଜିମ୍ (Hanumanism) ବାହାରନ୍ତାଣି; ତାର କେତେ ରୂପ, କେତେ ଆସ୍ୱାଦ, ତା ଉପରେ କଣ କେତେ ପାଠୁଆ ପ୍ରବନ୍ଧ ଲେଖି Doctorate ପାଆନ୍ତେଣି । କର୍ଷଣ କରି ହନୁମାନଜିମ୍ ପ୍ରବର୍ତ୍ତକ Nobel Prize ପାଆନ୍ତେଣି । ପାରସ୍ୟ ଦେଶରେ ଲେକ୍ଚର ଦେଉଥାନ୍ତେଣି—"ମୁଁ ଓଡ଼ିଶାର ହନୁମାନଜିମ୍ ପ୍ରବର୍ତ୍ତକ କବି"। ହୁଏତ କଲେଜ ପରୀକ୍ଷାରେ Mysticism, symbolism ସଙ୍ଗେ ହନୁମାନଜିମ୍‌ର ତୁଳନା

ବିଷୟରେ ପ୍ରଶ୍ନ ପଚାରନ୍ତିଣି । କିନ୍ତୁ ସମାଲୋଚନାର ନୂଆ ଆଇନ ଅନୁସାରେ ଆମେ ନିଜର ସାହିତ୍ୟ ବୁଝିପାରୁନାହିଁ ।

ବଙ୍ଗଦେଶର ଘଟଣା । ସତ୍ୟ ଦଳୁଆ ପୋଖରୀ । ପାଞ୍ଚବର୍ଷର ପିଲା "ହୈ—ଦୋ" ଗାଧୋଇ ଗାଧୋଇ ଗୋଡ ଖସିଗଲା । ସାଥୀ ପିଲା ପଗୁ, ହ୍ୟାବ୍ଲା, ଭୋଦା—ସୁଁ ହି ଡକା ପାଡ଼ିଲେ । ଏଣେ ହୈ-ଦୋ ଦୁ' ହାତ ନ ଯାଉଣୁ ପାଣି ପେଟେ ପିଇ ଜୀବନ ବିକଳରେ ହାତଗୋଡ ଛାଟି କାହାର ଲୁଗା-କାନି ଧରି ବଞ୍ଚିଗଲା । ତା ପରେ ତହିଁଆରଦିନ ବଡ ବଡ ଅକ୍ଷରରେ କାଗଜରେ ବାହାରିଲା, "ମାଷ୍ଟର ହୈ-ଦୋ ପହଁରିବା ବିଷୟରେ ଗୋଟିଏ ଜନ୍ମସ୍ଵାସ (Genius), ପାଞ୍ଚବର୍ଷ ବୟସରେ ବି ହାଓ୍ଵା ଲେକ୍ (Lake)ର ଗଭୀର ପାଣିରେ ...ଇତ୍ୟାଦି ।" ଏ ଖବର ଯେତେବେଳେ ଘରତର ଘୂରିଆସେ ପ୍ରଷ୍ଟ ହେଲା, କେହି ତ ବୁଝିଲେ ନାହିଁ ପ୍ରକୃତ କଥା କ'ଣ ? ସମସ୍ତେ ଆଖିପତା ଟେକାଳା ଖୋସି ଆଚମ୍ବିତ ହୋଇ ରହିଲେ । ଅବଶ୍ୟ ଏ ଉପମା ଟିକିଏ ବେଶୀ ଦୂରକୁ ଚାଲିଗଲା । କେହି କହୁନାହିଁ, ଇଚ୍ଛା ମିଛ କଥା ଲେଖିବାକୁ, କିନ୍ତୁ ଏପରି ବିଜ୍ଞାପନ ଫଳରେ ସମସ୍ତେ ଉନ୍ମତ କରୁଛନ୍ତି, ଏ ହେଲା ବିଜ୍ଞାପନର ଯୁଗ କି ନା ।

ବାସ୍ତବିକ ବୁଝିବା ଲୋକ ଉପରେ ସାହିତ୍ୟର ଦରଦାମ ବେଶୀ ଅଂଶରେ ନିର୍ଭର କରେ । ଜଣେ ନିଜେ ଅନୁଭବ କଲା; ଲେଖିଗଲା । ତା ନିଜ ମନକୁ ସେ ସାତ ଖିଟିଛି କି ପାଞ୍ଚ ଖିଟିଛି, ସେ ଜାଣେ । ଯେତେ ଚେଷ୍ଟା କଲେ ବି ଶୁଣାଳି କି ପଢ଼ାଳି ତାର ସବୁ କଥା ନିଜେ ଅନୁଭବ କରିପାରିବ ନାହିଁ । ଦେଖିବୁ ଗୋଟାଏ ଦୁ'ଟା ଖିଅ ଧରି ସେ ଆପଣା ଚକ୍ରରେ ମାଡ଼ି ଚାଲିଯିବ । ସେ ଯାହା ଲେଖିଯିବ, ଅନ୍ୟ ଲୋକେ ତାରି କଥାରେ ମାଡ଼ିଯିବେ । ଏଣେ ମୂଳ ରହିଲାଣି କେଉଁଆଡ଼େ । ବିଳାତ ସାହିତ୍ୟରେ ଆଜକାଲି କଣ ଚାଲିଛି ? ଲେଖକ ଯାହା ପାରି ତାହା ଲେଖୁଛନ୍ତି, ଏଣେ ନିଜେ ସମାଲୋଚନା କରି ନିଜର ଲେଖାରେ ନୂଆ ନୂଆ ତଥ୍ୟ (theory) ବାହାର କରି ଅନ୍ୟ ଲୋକଙ୍କୁ ମତାଉଛନ୍ତି । ସେ ଟାଣୁଆ ଯୁକ୍ତିକୁ କାଟିବ କିଏ ?

ସୁତରାଂ ଯେତେବେଳେ ଯୁକ୍ତି ଉପରେ ଦରଦାମ ଠିକ୍ ହେଉଛି, ସେ ଲୋକମାନଙ୍କୁ ବଡ ବୋଲି ସ୍ଵୀକାର ନ କରି ଏଡ଼ି ଦେଇ ଚଳି ହେଉ ନାହିଁ । ଲୋକଙ୍କୁ ପ୍ରବର୍ତ୍ତାଇବା ଉପରେ ବହୁତ କଥା ନିର୍ଭର କରେ, ଆଉ ପ୍ରବର୍ତ୍ତାଏ ସମାଲୋଚନା, ଲେଖକର ଲେଖା ନୁହେଁ । ସେକ୍ସପିଅର ବଡ଼ କବି, ବଡ଼ ଲେଖାଳି, ବଡ଼ ନାଟ୍ୟକାର । ଉନାକେତେ ତାଙ୍କର ଏତେ ପୂଜା ଚାଲିଲା ଯେ, ସାହିତ୍ୟରେ ସେ ହେଲେ ଦେବତା । ତାଙ୍କର ଗୋଟିଏ ଗୋଟିଏ ଗାର ଉପରେ

କେତେ ବଞ୍ଚନ, କେତେ ଦର୍ଶନ, କେତେ ଅନୁସନ୍ଧାନ ଗ୍ଭଲଲ୍ଲ । ଯେତେବେଳେ ସେ ବଞ୍ଚିଥିଲେ, ସେତେବେଳେ ତ ଏତେ ଆଦର ନ ଥିଲ୍ଲ । ସେ ମଲବାର ୨୦୦ ବର୍ଷ ପର୍ଯ୍ୟନ୍ତ ତାଙ୍କ ଲେଖାରେ ତ ଦୁନଆ ହୁଲସ୍ଥୂଲ ପଡ଼ି ନ ଥିଲା । ତାପରେ ଜର୍ମାନ ଦେଶର ବଡ଼ ବଡ଼ ପଣ୍ଡିତମାନେ (Transcendentalists) ଝିଅ ଧର ସେକ୍‌ସପିଅର ଆଲୋଚନା କଲେ । ଯେଉଁ କଥା ବାହାର ଖୋଲ୍ଲ ଆଖିକୁ ଜଣା ପଡ଼ିବ ନବୋଧ ବୋଲ, ସେଥିରେ ସେମାନେ ବଡ଼ ବଡ଼ ତଥ୍ୟ ଖୁନ୍ଦ ଦେଲେ । ଫଳରେ ସେକ୍‌ସପିଅର ଅତିମାନବ ହେଲେ । ତାଙ୍କ ହ୍ୟାମଲେଟ୍ ନାଟକରେ ନାୟକର ଚରିତ୍ର ବଡ଼ ଗୋଲମାଳିଆ । ତା ଉପରେ କଥା ଠିକ୍ କରି କହି ହେବ ନାହିଁ । ସମାଲୋଚକମାନେ ଯୁଗ ଯୁଗ ପରିଶ୍ରମ କରି ଏପରି ଭାବରେ ଆମ ଆଖିରେ ଭେଲକି ଲଗାଇ ଦେଇଛନ୍ତି ଯେ, ଯେଉଁଠି କିଛି ଗୋଲମାଳ ବା ଭୁଲ ରହିଛି, ସେଠି ଆମେ ନିଜ ନିଜ ଶକ୍ତିରେ ବଡ଼ି ବଡ଼ି ସବୁଠୁ ବଡ଼ ବଡ଼ କଥା ଭାବି ନେବାକୁ ବାଧ୍ୟ । ହ୍ୟାମ୍‌ଲେଟ୍ ପାଗଳ କି ନା, ଏ ବିଷୟରେ ବଡ଼ ବଡ଼ ଡାକ୍ତରମାନେ ଯୁକ୍ତି କରି ବ୍ୟବସ୍ଥା ଦେଇ ଯାଇଥିଲେ । ସବୁ ଦେଶରେ ଏପରି, କେବଳ ଓଡ଼ିଶା ଛଡ଼ା ।

ଫଳରେ ଆମକୁ ପଚ୍ଚରୁଛି କିଏ ? ସାମନ୍ତସିଂହାର ବଡ଼, ନା ରବି ବାବୁ ବଡ଼ ? ରବି ବାବୁ । କାହିଁକି ? ସାମନ୍ତସିଂହାର ପଟ୍ଟ ଧଡ଼ିଆ, ସ୍ଥାନବଳ; ସେପଟେ ଲଢ଼ିବାକୁ ଓଡ଼ିଆ ପୁଏ କଲମ ଧରୁନାହାନ୍ତି, ମୁଣ୍ଡ ଟେକୋଉ ନାହାନ୍ତି । ହ୍ୱିଟ୍‌ମାନ୍ ଅଶ୍ଳୀଳ, ନା ଭଞ୍ଜ ଅଶ୍ଳୀଳ ? ସେପଟୁ ଭୁବନେଶ୍ୱର ମୁଥ୍ ହ୍ୱିଟ୍‌ମାନ୍‌କୁ କିଏ ଦୋଷୀ କଲ୍ଲ ରେ ? "ସେ ପବିତ୍ର ମନରେ ଦେହର ତତ୍ତ୍ୱ ବିଷୟରେ କବିତା ଲେଖିଛନ୍ତି (Of the human body I sing) ।" ଆଜକାଲିକା ବିଦେଶୀ ଅଶ୍ଳୀଳ ଲେଖାଳିମାନେ ମଧ୍ୟ ଅଶ୍ଳୀଳ ନୁହନ୍ତି, ଶ୍ଳୀଳ । ସେମାନଙ୍କର ବଡ଼ ବଡ଼ ପାହାଡ଼ିଆ ଥିଓରି ଅଛି; ସେମାନେ Sex problemକୁ ଆଲୋଚନା କରୁଅଛନ୍ତି । ସେମାନେ ଅଶ୍ଳୀଳ ଲେଖିଲ୍ଲ ବେଳେ Art is neither moral nor immoral but simply non-moral.

ଆଉ ଭଞ୍ଜେ ? ଛି ଛି, କଣ ନ କଲେ । ଏ ପୁରୁଣା ଓଡ଼ିଆ ସାହିତ୍ୟ ଗୋଟାକଯାକ; ଥୁଃ ଥୁଃ ଖାଲି ଅଭଦ୍ର, ଅସନା ଆଦି-ରସ କଥା । କିନ୍ତୁ ଏପରି ଲେଖିବାର ଉଦ୍ଦେଶ୍ୟ କଣ ? ସେମାନଙ୍କର ବଡ଼ ideal ଥିଲା କି ନା, ସେମାନେ ଜୀବନରେ କି ସତ୍ୟ ଖୋଜୁଥିଲେ, ତାଙ୍କ ଲେଖାରେ କଣ ନିଦାନ ତଥ୍ୟ ଥିଲା, ସେସବୁ ଗାଧୋଇଗଲା । ସେମାନଙ୍କ ଉପରେ ଦେଶକାଳପାତ୍ରର କଣ ପ୍ରଭାବ ପଡ଼ିଥିଲା, ସେସବୁ କୁଆଡ଼େ ଗଲା । ସବୁ ଗଲେ ଗଲା, ଯଦିଚ ସେମାନେ ଅଶ୍ଳୀଳ

କଥା ଲେଖୁଥିଲେ, ଅନ୍ୟାନ୍ୟ ସାହିତ୍ୟରେ ତା'ଠୁ ବେଶୀ ଅସ୍ୱଚ୍ଛତା ଥିଲେ ବି ଆମର ଆଡ଼କୁ ଆଙ୍ଗୁଠି କାହିଁକି ? ଇଂରେଜି Restoration ସାହିତ୍ୟକୁ ତ ସେ ବିଷୟରେ ବେଶୀ କେହି ବଳାଇବ ନାହିଁ; ତଥାପି ଏ ବିଷୟରେ ଆମ କଲମ କଥା କହୁନାହିଁ । ଫଳରେ ହାଟ ବଜାରରେ ନିଜ ଗୁଣ ନିଜେ ନ ବାହୁନିବାରୁ କେହି ଆମକୁ ବଡ଼ ବୋଲି ମାନିନେବାକୁ ନାରାଜ ।

ଅରେ ଅନ୍ତବାବୁ କହିଲେ, "ଅମେ ଭିତରେ ପୋଲ୍ ଥାଇ ବାହାରକୁ ବଡ଼ ବୋଲି କେମିତି କହିବା ?" କିନ୍ତୁ ଆମ ସାହିତ୍ୟ ପୋଲ୍ ବୋଲି ପ୍ରମାଣ କଣ ? ରୁଚି ଉପରେ ସବୁ ନିର୍ଭର କରେ । ଗୋଟାଏ କଥା ଭିନ୍ନ ଭିନ୍ନ ଲୋକଙ୍କୁ ଅଲଗା ଅଲଗା ଅର୍ଥ ଦିଏ । ଆମ ଭିତରେ ଏପରି ମହାତ୍ମା କିଏ ନାହାନ୍ତି —ଯାହାଙ୍କ ଗମ୍ଭୀର ଆମର ସାହିତ୍ୟରେ ବଡ଼ ପଣ ଗମ୍ଭୀର ଗୁପ୍ତ ମାରି ବଡ଼ ବଡ଼ ତଥ୍ୟ (theory) ଓ ଯୁକ୍ତି ବାହାର କରିବ ? କିନ୍ତୁ କିଏ ଦେଖୁଥାଇ ?

ଯଦି କେହି ପଚାରେ, "ତୁମେ ଜୀଅନ୍ତା ନା ମଲ ?" ଅନ୍ୟ ଲୋକ ଆଖି-ତରାଟି ଦାନ୍ତକାମୁଡ଼ି କହନ୍ତା, "ଅନ୍ଧ ନା କଣ ? ଆଖିକୁ ଦିଶୁନାହିଁ ?" ଆମେ କହିବା, "ବାବୁ ଆଜ୍ଞା, ତୁମେ ମା ବାପ, ଆମେ...ଆମେ ମଲ ମୂର୍ଦ୍ଦାର !"

ମୁଣ୍ଡହଲା ସାଙ୍ଗେ ମୁହଁ ବିକଟାଳ କରି ହୁଁ, ହେଁ, ଓହୋ, "ସୁନ୍ଦର" "ଚମତ୍କାର" ଇତ୍ୟାଦି ସାହାଯ୍ୟରେ ଅମର ଯାହା ବି କିଛି ସମାଲୋଚନା ସେତିକ ପୁଣି ଗାଁ-ଗୋହିରୀରେ ଡୁବି ରହିଛି । ଖାରବେଳର ମୀର-ବାଇଦ ଆଉ ସାରା ଜଗତରେ ହୁଲସ୍ଥୁଲ ପକାଉ ନାହିଁ । ଯାହା ବା ତାଧିନ୍ଧିନା ଆମର ଶେଷ ସମ୍ବଳ, ସେ ପୁଣି ବିଳମ୍ବ ପାଉଛି ଗାଁ କନ୍ଦମ ଦାଣ୍ଡରୁ କଟକ ପିଣ୍ଡା ମଝିରେ ! ଦୂରକୁ ଶୁଭିବା ତ ଦୂରର କଥା ।



# ଲୋକହସା

ଜଟଜାଟ ବରଷା ଅସରାଏ ଛାଡ଼ିଥିଲା, ବାଟଘାଟ କାଦୁଅ; ବିଲାଗଡ଼ି, ଡୁବିଯାଉଛି ! କାଖରେ ପୋଥିବସ୍ତା, ଚୂଟି ଆଗରେ ଗେଣ୍ଡୁ ଫୁଲ, କାନ୍ଧରେ ବେଣ୍ଟ ଦ'ସେରିଆ ଯାଉଥିଲି । ହରିଆନ୍ନା ଟିକି ଝିଅଟି ହାତ ଧରି ବେଣ୍ଟ ଖୁସିରେ ଚାଲୁଥିଲେ । ଅଲଥଲ ଦୋସୂତ ପେଟ ଉପରେ ମସ୍‌ମସିଆ ନାଚ ସାଙ୍ଗେ ତାଳେ ତାଳେ ଗୋଡ଼ ପଡ଼ୁଥିଲା; କିନ୍ତୁ ହଠାତ୍ ଏ କି ବିପତ୍ତି ? ଗୋଡ଼ଟା ଖସିଗଲା ପରା ! ଦ' ହାତ ଉପରକୁ ଟେକି ନନା ଚିତ୍‌ପଟାଂ !

ଦେହଗୋଟା କାଦୁଅ; ଦୁରବସ୍ଥାର କଳନା ନାହିଁ ! ବୁଜୁଳିଟି ଅଣ୍ଟାକୁ ଅଣ୍ଟାକୁ ସରୁ ଆଖିରେ ନନା ଚାହିଁଲେ ଚାରିଆଡ଼ର ହସିବା ଲୋକଙ୍କ ମଝିକୁ । ତାପରେ ନିଜେ ବି କଣେଇ କଣେଇ ହସି ସରୁ କରି କହିଲେ, "ଉହୁଃ" ! ଝିଅଟି ଆମମାନଙ୍କ ହସ ଦେଖି ଅଳପେ ହସିଥିଲା; ପରମୁହୂର୍ତ୍ତରେ ଭେଁ କରି କାନ୍ଦି ଉଠିଲା ଆଖିଦିଟା ଉପରକୁ ଥରେ ଖୋସି ।

ସମସ୍ତଙ୍କ ସେଇଟା ହସ, ତହିଁରେ ସେ କାନ୍ଦିଲା । ଆଉ କେହି ଅଙ୍ଗେ ନିଭାଇଲା ପରି ହୃଦୟ ଭିତରେ ଭାବି ଦେଖିଲେ ନାହିଁ । ଦେଖିଥିଲେ ହସ ରୁଟି-ମୁଁ ଥାନ୍ତା, ଆଖି କଣର ମେଦୁଆ ଆଲୁଅ ତଳେ ଢଳ ଢଳ ଲୁହରେ ମିଳାଇ ଯାଇ-ଥାନ୍ତା ! କିନ୍ତୁ ସେ ଘଟଣାଟା ହୃଦୟ ଭିତରେ ଦେଖିଲା । ନନାଙ୍କ ଆଘାତଟା ବାଜିଲା ତା କଅଁଳ ଛାତିରେ । ହସି ଉଡ଼ାଇବାର ପହିଲ ଗୁଣ ସହାନୁଭୂତିର ଅଭାବ । କଅଁଳ ମରମ ଭାବ (Emotion)ର ଅଭାବ ! ବର୍ଗସୋ କହିଲେ, "ହସ ଆସେ ଜଣକ ଉପରେ ମନ ନିବେଶି ଯେତେବେଳେ ଦଳେ ଲୋକ ବସ୍ତୁର ବୁଦ୍ଧିର ପ୍ରକ୍ରିୟାକୁ ଉଦ୍‌ବୋଧନ କରନ୍ତି, କଅଁଳ ମରମ ଭାବ ଚାପି ରଖି । ହସ ଆଉ କଅଁଳ ମରମ ଭାବ ଭିତରେ ଅହିନକୁଳ ସମ୍ବନ୍ଧ !" ହସ ଭିତରେ ବସ୍ତୁର ବୁଦ୍ଧିର ପ୍ରକ୍ରିୟା; ଜନ୍ମ ମରମ ଭାବକୁ ଏକାବେଳକେ ତର୍ଣ୍ଣି ଚପି ରଖାଯାଇ ନ ପାରେ, ଅଳ୍ପକେ ହେଲେ ସେ ଥିବ । ଖାଣ୍ଟି ଶୁଖିଲା ହସ ନିଛକତଥ୍ୟ (Hypothesis) ଅବସ୍ଥାରେ ରହିଲା । ହସ ଭିତରେ ମମତା ଅଳ୍ପ ସତ; ଏଣେ ଲୋକ ତ ଖୁସିରେ ହସିଲେ ନାହିଁ । ସେଥିପାଇଁ କହନ୍ତି ଯେ, ହସ ହେଉଛି ବିଶ୍ଳେଷକ; ଦୋଷ· ଗୁଣ ବାଛୁ ଦେଖେ ନାହିଁ । ହସ ତେଢ଼େ ନାହିଁ, ଭାଙ୍ଗେ ହସରେ ବନ୍ଧୁତା ଅପେକ୍ଷା ଶତ୍ରୁତା ବେଶୀ । ହସ ଅଙ୍ଗେ ନିଭାଇବା ପରି ମମତା

ରଖି ଷାବେ ନାହିଁ । ଅବଶ୍ୟ ଏଠି ଖୁସିର ହସ କଥା ପଡ଼ୁନାହିଁ; ଟାହିଟାପରା, ଅଣ୍ଟା-ନକଲ, ମଉଜକଥା—ଏହି ବିଷୟ ପଡ଼ୁଛି ।

ହସର ପହିଲି ଉପାଦାନ, ଅକସ୍ମାତ୍ ଆଶ୍ଚର୍ଯ୍ୟ ହେବା, ଆଶ୍ଚର୍ଯ୍ୟ ହେଲେ ହସ ନ ମାଡ଼ି ପାରେ, ଗାଢ ଅଧରେ ମଶାଣି ଭୂଇଁରେ ଭୂତ ଦେଖି ହସ ମାଡ଼େ ନାହିଁ; କିନ୍ତୁ ହସିବା ପୂର୍ବରୁ ନୂଆ ଦେଖିବାର ଚମକ୍ ଲାଗିବା କଥା ଧରାବନ୍ଧା । ଉଦାହରଣ ସ୍ୱରୂପ ସମସ୍ତେ ଜାଣନ୍ତି ଯେ, ହସକଥା ବାସି ହେଲେ ତହିଁରୁ ରସ ଉଡ଼ିଯାଏ । ଏପରି ହେବାର କାରଣ, ଦେହସୁଆ ହୋଇ ନୂଆ ଦେଖିବାର ଚମକ୍, ଅକସ୍ମାତ୍ ଆଶ୍ଚର୍ଯ୍ୟ ହେବା ଗୁଣ ଚାଲିଯାଇଥାଏ । ସାଧାରଣ ଧାରଣାରୁ ବାହାର ହେଲେ ଆଶ୍ଚର୍ଯ୍ୟ ଲାଗିଲା । ଗୋଟିଏ ଚାଲି ଥରେ ପଢ଼ିବାକୁ ହେଉଥିଲେ, ବାରମ୍ବାର ପଢ଼ିବା ଚାଲିବା କାମର ସାଧାରଣ ନିୟମ ହୋଇଥିଲେ ଜଣେ ପଡ଼ିଗଲେ ଲୋକେ ହସନ୍ତି ନାହିଁ ।

ଓଢ଼ଣା ଉଚ୍ଚାଳରେ ଯେଉଁ ସେମେଣ୍ଟା ପାଲୁଆ ମୁହିଁଟି, ତାର ଯୋମଣୀ ଅଗରେ ଗଣି ଗଣି ଦଶୋଟି ଦାଢ଼ି ! କିଏ ନ ହସିବ ? ସ୍ତ୍ରୀଲୋକ ବିଷୟରେ ଯାହା ସାଧାରଣ ଧାରଣା, ତହିଁରୁ ଏ ବାହାରେ ! ସେହିପରି ପ୍ରଭଦିନ ପାହାନ୍ତି ପହରରେ ନର ବୁଢ଼ା ବିଛଣାରୁ ତାନ ଛାଡ଼ନ୍ତି, "ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ।" ସେଦିନ ମଞ୍ଜୁଷା ବିଶ୍ୱଘରକୁ ଯେଉଁ ଭଦ୍ରଲୋକଟି ଆସିଥିଲେ, ବାରଟାବେଳ ପୋଡ଼ି, ବେଢା ପାଖେ ହୋମଧୂଆଁ ଭିତରେ ଗେଞ୍ଜି ଉପରେ—କାମିଜ—ଉପରେ ମଫଲର୍—ଉପରେ କୋଟ୍—ଉପରେ ଶାଲ ! ଘରେ ଆଉ କିଛି ପୋଷାକ ନ ଥିଲା ! ଏ ସବୁଥିରେ ହସର କାରଣ ହୁଏ ଅସାମଞ୍ଜସ୍ୟ, ଅସାଧାରଣ ଗୁଣ (Ludicrous) ଖାଲି ଏତକ ନୁହେଁ, ଚରିତ୍ର, କ୍ରିୟାକଳାପ ସବୁଥିରେ ଏ ଗୁଣଟି ମିଳେ । ଜଣେ ପ୍ରତି କଥାରେ କହେ, "ଗିଡ଼ିଗିଡ଼ି ଗାବୁ ଗାବୁ", ଆଉ ଜଣେ କହେ "ତା ନାଁ କଣ ।" ଏହିପରି କେତେ ମୁଦ୍ରାଦୋଷ (Mannerism) । ସାଧାରଣ ଲୋକହସା ଉପାଦାନ ଭିତରେ ଏହିପରି କେତେ "ଅଖାଡ଼ୁଆମି" ଦେଖାଯାଏ ।

ଅନେକ ସମୟରେ ଲୋକେ ହସନ୍ତି, କାହିଁକି ନା ଲୋକହସା ଉପାଦାନ ନୀଚ, ହେୟ, ନିଜଠାରୁ ତଳେ ବୋଲି ମନେ ହୁଏ, ତେଣୁ ଶ୍ଳେଷ, ବିଦ୍ରୂପ ସଙ୍ଗେ ଆତ୍ମପ୍ରଶଂସା ମିଶି ହସ ମାଡ଼େ । ହସର ସାଧାରଣ ତଥ୍ୟ ଏପରି ନୁହେଁ, କିନ୍ତୁ ଏ ମଧ୍ୟ ଗୋଟାଏ କାରଣ । ବେଢା ପାଖେ ସେ ଲୋକଟିକୁ ଦେଖି ସମସ୍ତଙ୍କ ମନ ଭିତରେ ସୂକ୍ଷ୍ମକ୍ରିୟା ହେଲା, ସେମାନେ ଏପରି ମୂର୍ଖତା କରି ନ ଥାନ୍ତେ । ଯେଉଁ

ଲୋକ ଟୋପି, ଡାମିଜ ଓଲଟା ପିନ୍ଧିଥାଏ, ଯେଉଁ ଲୋକ ସୌଖୀନ୍ ଜରିଦିଆ ପାଟ ଘୋଡାକୁ ମୁଣ୍ଡ ଉପରେ ପିନ୍ଧି ସବୁଆଡ଼େ ଯାଏ, ତା ପ୍ରତି ନିଶ୍ଚୟ ଏପରି ଭାବ ଆସିଥାଏ ।

ହସିବା ଲୋକ ମନରେ କୌତୁହଳ ଉପାଦାନ ପ୍ରତି ଭଲ ପାଇବା ପୁଣି ଦେଖି ନ ପାରିବା, ପ୍ରେମ ବିଦ୍ୱେଷ, ସହାନୁଭୂତି ମମତାହୀନତା—ଏହିପରି ବିପରୀତ ଭାବ ରହିଥାଏ । ପ୍ରଥମେ ଗୋଟିଏ ଭାବ ଆସିଲା । ତାପରେ ବିରୋଧୀ ଭାବ ଆସିଲା ସ୍ରୋତ ମଝିରେ ବନ୍ଧ ପରି । ଏ ସଂଘର୍ଷ, ବାଧା ସଙ୍ଗେ ମନେ ମନେ ତାଳ ଦେଇ ଗୁଳିବାକୁ ବଳକା କ୍ରିୟାଶୀଳ ଶକ୍ତି ଆସିଲା । ଯେତେବେଳେ ବନ୍ଧ, ବିପରୀତ ଭାବ ଯାଇ ପୁଣି ପୂର୍ବ ଭାବ ଫେରି ଆସିଲା, ଏ ବଳକା ଶକ୍ତି ହଠାତ୍ ଅଦରକାର ହୋଇ ହସ ବାଟେ ବାହାରିଗଲା । ହରି ନନାଙ୍କ ସଙ୍ଗେ ପରିଚୟ ଅଛି, ସେ ତାଙ୍କ ଭୂଲ ରାସ୍ତା ଉପରେ ଲମ୍ବା ଫୁଟବଲ୍ ପରି ଯେଉଁକାଳୁ ଗଡ଼ି ଆସୁ-ଥିଲେ, ସେହିକାଳୁ ନିଜର ଅଜାଣତରେ ମଧ୍ୟ ଦେଖିବା ଲୋକ କୌତୁହଳୀ ହୋଇ ଇନ୍ଦ୍ରିୟ ଓ ମନଦ୍ୱାରା ତାଙ୍କ ସଙ୍ଗେ ପରିଚିତ ହୋଇଛି । ତେଣୁ ତାଙ୍କ ସମ୍ବନ୍ଧରେ ମନ ଟାଣିଲା (Interest) । ପଡ଼ିବା ଅବସ୍ଥାଟା ଶ୍ଳାଘନୀୟ ନୁହେଁ; ତେଣୁ ବିରକ୍ତି, ବିରୋଧୀ ଭାବରୁ ହସ ହେଲା, ଯେତେବେଳେ ପୂର୍ବ ପରିଚୟର ସହାନୁଭୂତି ଫେରି ଆସିଲା । ତାଙ୍କ ସଙ୍ଗେ କୌଣସି ସମ୍ବନ୍ଧ ବା ପରିଚୟ ନଥିଲେ କେହି ତାଙ୍କ ପଡ଼ିବାରେ ମୁଣ୍ଡ ବୁଲାଇ ନ ଥାନ୍ତା; ସହାନୁଭୂତି ଅତି ବେଶି ଥିଲେ କେହି ଏତେ ହସି ନ ଥାନ୍ତା । ନାଗକାଠି ମାଝେ ଦୁଇ ବିଯୋଡ଼ ବ୍ୟବହାର (Ambivalent behaviour)ର ଆଧାର, ସେମାନଙ୍କ ପ୍ରତି ଦେଖି ପାରିବା ନ ଦେଖି ପାରିବା ଉଭୟ ଅଛି । ଆକର୍ଷଣ ମଝିରେ ବିପରୀତ ଘୃଣାଭାବ ଅଣାଗଲେ ଯେଉଁ ସଂଘର୍ଷ ଘଟେ, ତହିଁରୁ ହସ ଲାଗି କ୍ରିୟାଶୀଳ ଶକ୍ତି ଉଦ୍ଭୂତ ହୁଏ ।

ଲୁନି କହିଲା, "ଅନି, ସେ ବୁଢ଼ାଟା, ବୁଝିଲୁ ସେ ବୁଢ଼ାଟା ତୋ ବର !"

"ଛୁଃ, ବୁଢ଼ା ଯେଣ୍ଡ, ମଢ଼ିଆ ନଣୁଆଟାକୁ ମୁଁ ବାହା ହେବ ନାହିଁ ।" ଛ ବର୍ଷର ଅନି କହିଲା; ସମସ୍ତେ ହସିଲେ ଏ ଅସାଧାରଣ କଥାଟା ଶୁଣି । ଯେତେ-ବେଳେ ସିନା ହସର କାରଣ ହେଲା ଅସାଧାରଣର ପରିକଳ୍ପନା; କିନ୍ତୁ ଏ କଥା ହସର ଉପାଦାନ ବୋଲି ଯେତେବେଳେ ପ୍ରଥମେ ବ୍ୟବହାର କରାଗଲା, ସେତେବେଳେ ତା ମଞ୍ଜି ପୋତା ହେଲା, ଯୌନ ସମ୍ବନ୍ଧ ପ୍ରତି ମଣିଷର ସହାନୁ-ଭୂତି, ଆକର୍ଷଣ, ଆଉ ତାର ବିରୋଧୀ ଭାବରେ ମନ ଭିତରେ ଯୌନ ସମ୍ବନ୍ଧର ଅବାଧ କ୍ରିୟା ମଝିରେ ବନ୍ଧ—ସଙ୍କୋଚ, ଲଜ୍ଜା ଭାବରେ । ହସର କାରଣ ସେହି

ଦୁଇ ବଯୋଡ଼ ବ୍ୟବହାର । ବର, ବାହାଘର, ଶାଶୁଘର, କନ୍ୟା ଏସବୁ ଆମ ଦେଶର ଅତି ପରିଚିତ ହସ ଉପାଦାନ, ଘରେ ଘରେ । ଆହମ ମୂଳ ସେହି ଯୌନ ସମ୍ବନ୍ଧର ଆକର୍ଷଣ ଆଉ ଲଜ୍ଜା ସଙ୍କୋଚରେ । ଏହି କାରଣରୁ ସ୍ତ୍ରୀ-ଲୋକ ପ୍ରତି ଏତେ ଟାହିଟାପରି ସାରି ସଂସାରରେ । କଥାଟା ମାନସହା ନୁହେଁ, କି ପ୍ରିୟ ନୁହେଁ, ତଥାପି... । ଏ ତ ଗଲା ହସର ତଥ୍ୟ—(୧) ଆଶ୍ଚର୍ଯ୍ୟ ଗୁଣ (୨) ଅସାଧାରଣ ଅଖାଡୁଆ (୩) ଦୁଇ ବଯୋଡ଼ ବରୋଧୀ ଭାବ (୪) ଯୌନ ସମ୍ବନ୍ଧ । ହସ ତଳେ ତଳେ ଏହି କେତୋଟି ଅବସ୍ଥା ଦେଖାଯାଏ । ତା ପରେ ଲୋକହସା ପ୍ରଧାନ ଉପାଦାନ ।

"ଥେବେଡ଼ା ନାକରେ ନାଟେଣୀ ମୟୂର
ଯୋଡ଼ାଏ ବେହେଡ଼ା ଦାନ୍ତ
ଆଖି ଦ'ଗୋଟି ମିଟିର ମିଟିର
କେମିତି ଭେବର ହାତ ।"
—ମାମୁଁ

ହଂସିଆ ମା ଛିପେଇ ଛିପେଇ ଗ୍ଲେ,—ମଲ୍ ଛପ । ଦେହ ଅଙ୍ଗଭଙ୍ଗୀ, ସବୁ ହସର ଉପାଦାନ ହୋଇଥାଏ । ଅଟିକାପେଟା, ଘୁସୁର ମୁହାଁ, ମାଗୁରକଣା, ଚଲ୍-ଆଖିଆ, ବଶେଷଣର ଅଭାବ ନାହିଁ । ସୂକ୍ଷ୍ମ, ଅସୀମ, ବରାଟ ଆତ୍ମା ତୁଳନାରେ ମାଟିର ଦେହଟା ବସ୍ତୁର ବୁଦ୍ଧିରେ ଦଣେ ସତେ ଯେପରି ଆଶ୍ଚର୍ଯ୍ୟ, ଅସାଧାରଣ, ଅସାମଞ୍ଜସ୍ୟର ବରାଟ ବୋଝ ପରି ।

ମିଷ୍ଟର ଫକ୍ସ ଏହିପରି ଅନ୍ୟମନସ୍କ ଭାବରେ ଘରେ ରେଳ ଚଢ଼ିଲ ବେଳେ ସ୍ତ୍ରୀକୁ ବୋଝିଆ ଭାବ ଭଡ଼ା ଦେଇଦେଲେ; ଆଉ ଖାକ ପିନ୍ଧା ଧାନ୍ଦୁଆ କୁଲିଟିର ନଶୁଆ ମୁହଁଟାକୁ ଦ ହାତରେ ଟାଣି ନେଇ ଗୋଟିଏ ବଧାୟ ଚୁମ୍ବନ ଥୋଇ ଦେଇ ଗମ୍ଭୀର ହୋଇ ବସି ପଡ଼ିଲେ ।

ଚରିତ୍ରଦୋଷ, ହୀନତା, ପାପ, ଏସବୁ ହସର ଉପାଦାନ ହୋଇ ବ୍ୟବହୃତ ହୁଏ । ଏଥିରେ ଅନ୍ୟାନ୍ୟ କାରଣ ସଙ୍ଗେ ଆଶ୍ଚର୍ଯ୍ୟ, ଅସାଧାରଣ ସମ୍ବନ୍ଧ ଅଛି । ଆହୁରି ଏପରି ସ୍ଥଳେ ହସିବା ଲୋକ ଲୋକହସା ଉପାଦାନ ଉପରେ ନଜର ବଡ଼ପଣ ଅନୁଭବ କରି ଆତ୍ମପ୍ରସାଦ ଅନୁଭବ କରେ । ରାସ୍ତା କରରେ ଦୁଇଜଣ ଠିଆ ହୋଇ ଦଉଡ଼ ବକଲ୍ ପରି ଅଙ୍ଗଭଙ୍ଗୀ କଲେ ଗୁଲଖୋର ନହିଁ ଗ୍ଳୁଲଯାଏ । ମଦମତ ଭଦ୍ରଲୋକ କୋଡା ବୁରସରେ ମୁହଁ ଦେଖି ସେହି-ଭଗ୍ର କଲମରେ ମୁଣ୍ଡ

ଲୁଣ୍ଠାଇବାକୁ ଚେଷ୍ଟା କରନ୍ତି । ସମାଜ ତଳର, ଭଦ୍ରତା ତଳର ଦୋଷ ଏହି ଶ୍ରେଣୀରେ ଯାଏ । ଜଣେ ଖୁବ୍ ପେଟୁ, ଚୂଡ଼ା ଦହି ଲାଗି ଦଶ କୋଶ ଧାଇଁପାରେ; ସଂସ୍କୃତ ସାହିତ୍ୟରେ 'ନୃତ୍ୟନ୍ତି ଭୋଜନେ ବିପ୍ରାଃ'—! ଜଣକର ଏପରି ଢମ ଯେ, ଘର ଜଣରେ ସକାଳ ଓଳଜ ଗୋପାଳସେବା କଲାବେଳେ ମିଛଟାକୁ ବାହାରକୁ ଶୁଣାଇ ପାଟି କରନ୍ତି, "ମାଂସ ଅଣ୍ଡା ଦହି ଖାଇଥାନ୍ତି !" ଇତ୍ୟାଦି । ଏସବୁ ହସ-ସାହିତ୍ୟରେ ଚରିତ୍ର ବା ବ୍ୟକ୍ତି-ବର୍ଣ୍ଣନାରେ ବ୍ୟବହାର ହୁଏ ।

ଅଶ୍ଳୀଳ ହସ ଅତି ସହଜ; ତାର ଜନ୍ମ ଯୌନ ସମ୍ବନ୍ଧ ଭିତରେ ଦେଖା ଯାଇଛି । ଅଶ୍ଳୀଳ ଇଙ୍ଗିତ ହେଲେ ଆକର୍ଷଣ ଓ ତାର ବିରୋଧୀ ଭାବ ଓ ସଙ୍କୋଚ ଏକାବେଳକେ ମନକୁ ଆସେ । ଏଥିରେ ବେଶି ମୁଣ୍ଡ ଖଟାଇବା ଦରକାର ପଡ଼େ ନାହିଁ । କେତେଗୁଡ଼ାଏ କଥା ସମାଜର ସାଧାରଣ ଭଦ୍ରତାର ଆଖିକାନ ଉହାଳରେ ରଖାଯାଇଛି ଓ ସେହି କାରଣରୁ ତାର ଆକର୍ଷଣ ବେଶି । ତାହାର ପ୍ରତି ଇଙ୍ଗିତ ହେଲେ ହେଲା । ଏ ଅତି ଆଦିମ, ଅଶିକ୍ଷିତ, ମରହଟ୍ଟୀ କାଳର ଥଟ୍ଟା ନକଲ ଅଧିକାଂଶ ଏ ଶ୍ରେଣୀରେ ଥିଲା । ସାହିତ୍ୟରେ କେବେ କେବେ ଏପରି ହସ-ରସ ଦେଖାଯାଏ—ଏପରି ଧର୍ମମୂର୍ତ୍ତି ଧର୍ମାଙ୍କ "ସ୍ୱପ୍ନରେ ରାଜଯୋଗ"ରେ ।

ଯଦୁମଣିଙ୍କ ହସ-ପେଡ଼ି, ପ୍ରହରାଜଙ୍କ ଲେଖା ବାଦ୍ ଦେଲେ ଓଡ଼ିଆ ସାହିତ୍ୟରେ ହସ ବିରଳ, କିନ୍ତୁ ବିଦେଶୀ ସାହିତ୍ୟରେ ହସ ଗୋଟିଏ ବଡ଼ ଉପାଦାନ ! ଆମ ସାହିତ୍ୟରେ ହସ ଅଭାବ ହେବା କାରଣ ଏପରି ବୁଝିହୁଏ ଯେ, ଆମେ ବେଶି ଗମ୍ଭୀର । କଥାବାର୍ତ୍ତା, ଚାଲିଚଳନ, ସାଧାରଣ ଜୀବନରେ ଆମେ ଏପରି ହସପ୍ରିୟ ଯେ, ଆମ ସାହିତ୍ୟରେ ତାର ପ୍ରଭାବ ପଡ଼ି ନାହିଁ, ଶୁଣି କେହି ବିଶ୍ୱାସ କରିବ ନାହିଁ । ସାହିତ୍ୟରେ ହସ ଅଭାବର କାରଣ ହେଉଛି, ହସକୁ ହେୟ, ତୁଚ୍ଛ, ଉଚ୍ଚ ସାହିତ୍ୟ ଲାଗି ଅଯୋଗ୍ୟ ମଣି ସେ ବିଷୟରେ ଆମେ ଉଦାସୀନ ରହିଥାଉଁ । ସାହିତ୍ୟ ବିଚାରରେ ହସର ଗୋଟାଏ ମହତ୍ତ୍ୱ ଅଛି, ଏ ଧାରଣା ଆମ ଦେଶରେ ନୂଆ ଯୁଗର ।

ସାଧାରଣ ଲୋକହସା ଉପାଦାନ ଗୁଡ଼ିଏ ହସରସ ପ୍ରଧାନ ଅଙ୍ଗ ରୂପରେ ଦେଖାଯାଏ—(୧) ବ୍ୟକ୍ତି, ଚରିତ୍ର (୨) ଭାଷା (୩) ବିଷୟ ବା ଅବସ୍ଥା । ଦୁର୍ବଳତା, ହୀନତା, ପାପ, ସମାଜର ଭଦ୍ରତା ବିରୁଦ୍ଧରେ ଦୋଷ, ଏ ବିଷୟରେ ଯାହା ଦେଖିଥାଉଁ, ବ୍ୟକ୍ତି, ଚରିତ୍ର ଲାଗି ତା ଉପଯୋଗୀ ।

"ଶୋଇଥିଲି ମା ଚେଇଁ—"

"କଣ କହିଲ ! ଚୂଡ଼ି ! ଚୂଡ଼ି !" ପଣ୍ଡିତେ "ଚୂଡ଼ି" କହିଲେ ଚଳନ୍ତି ।
(କଷ୍ଟିଭି)

ଭାଷାରେ ହସ ଫୁଟାଇବା ବରଂ ସହଜ । ଅନେକ ଉପାୟରେ ଲେଖକ ଭାଷାରେ ହସ ଆଣନ୍ତି । ଜାଣି ଜାଣି ଭୁଲ୍ କରି ଯଥା—ଚଲିକାର ଧାତୁ ପ୍ରତ୍ୟୟ, Chilly (ଥଣ୍ଡା) ଅର୍ଥ୍ୟର୍ଥେ ଇକା ପ୍ରତ୍ୟୟ; (କଷ୍ଟିଭି—କାହ୍ନୁଚରଣ ମହାନ୍ତି) । ସଂସ୍କୃତ ଶବ୍ଦ, ବାରମିଶା ବ୍ୟବହାର, ଗୁରୁଗମ୍ଭୀର ବାକ୍ୟ ଦ୍ୱାରା, ଯଥା—

"ଲମ୍ବା ଦାଢ଼ୀଂ ସ୍ୱହସ୍ତେ ଧରି ଅଲପେ ଚହୁଁ
ବୋଇଲେ ଶୁଭ୍ରତାଂ ହେ
ତୁମ୍ଭେ ବ୍ରହ୍ମା ହି ତୁଣ୍ଡେ କହିଗଲଟି ଯଇଁ
ଶ୍ଳୋକଜାଲଂ ସରାଗେ
ତାହାଂ ଶୁଦ୍ଧା ପୁନଃ କେ ରଖିବଟି ରଥଏ
ଶେଷ କଷ୍ଟିନ୍ତି ଭୂୟାଃ ।"

(ଦେଶୋଦ୍ଧରତେଲଣକମ୍ପ)

ଅପଭ୍ରଂଶ ଭାଷା, ସ୍ୱାଭାବିକ ଅଣୁଛି ମଧ୍ୟ ହସର ଉପାଦାନ ହୁଏ । ଫକୀରମୋହନଙ୍କ "ମାମୁଁ" ଉପନ୍ୟାସରେ ବଣାଖା ଦେଇ ଲେଞ୍ଜ୍ କ୍ୟାନଂଙ୍କୁ କହନ୍ତି, ଲେଣ୍ଡୀକାନ; ହରିବୋଲ ବାରିକ କମିସନର ଶବ୍ଦକୁ କହେ କମିଷ୍ଟନ । ଫକୀରମୋହନ ହସ ଲାଗି ବାରମିଶା ଭାଷା ମଧ୍ୟ ବ୍ୟବହାର କରିଛନ୍ତି—

"ଯେମନ୍ତି ମିଃରିପିକାଇଲ୍ ବୋଇଲେ ଲଙ୍କାମାରିଚ୍ଚ ଖଣ୍ଡି ଥାଉଛି, ମାନ ପୃଥିବୀର ସର୍ବଶ୍ରେଷ୍ଠ ଖାଦ୍ୟ ଥାଉଛି, ଲଙ୍କାମାରିଚ୍ଚ ଆଉ ଦର୍ଶନଶାସ୍ତ୍ର ନ ଥିଲେ ମାନବାଲୁ ରକ୍ଷା ପାଇବାର ନାହିଁ ଏକ୍‌କା ।" ଓଡ଼ିଆ ସାହିତ୍ୟରେ ହସମିଶା ଭାଷାରେ ପ୍ରହରାଜେ ଗୋଟିଏ ନୂଆ ଉପାୟ ବାହାର କରିଛନ୍ତି, ଯାହା ଅନ୍ୟ ସାହିତ୍ୟରେ ନାହିଁ ! ତା ହେଉଛି ଅତିରିକ୍ତ ବର୍ଣ୍ଣନା କରି ତାରି ଉପରେ ଶ୍ଳେଷ ବଡ଼ ସରୁ କଥା କହିଦେବା । ଧର୍ମ୍ମିଷ୍ଠ ଧର୍ମ୍ମାଙ୍କ ରାଜଯୋଗ ଅବଶ୍ୟ ବୀଭତ୍ସ-ରସ, ଅପ୍ରିୟ ଅଶ୍ଳୀଳତାରେ ସ୍ଥାନେ ସ୍ଥାନେ କଦାକାର ହୋଇଯାଇଛି; କିନ୍ତୁ ଏ ନୂଆ ଉପାଦାନଟି ତହିଁରେ ପୂର୍ଣ୍ଣମାତ୍ରାରେ ଅଛି—"ଆମ ରାଜବଂଶରେ ମାନ୍ଧାତାଙ୍କ ଅମଳରୁ ଯେଉଁ ଅନ୍ତର, ଭ୍ରାତାନ୍ତର, ଜାତ୍ୟନ୍ତର, ପାକାନ୍ତର, ବାସାନ୍ତର, ରସାନ୍ତର ଆଦି 'ଅନ୍ତର' ସୂଅ ପ୍ରଥା ଅଛି......"

"ଦେଖିଲି ମାତ୍ରେ ଠାକୁରଙ୍କ ହେବ ଲଳିତ-ଯୌବନା କି ଫଳିତ-ଯୌବନା କି ସ୍ଖଳିତଯୌବନା କି ଲୁଳିତଯୌବନା କି ଟଳିତଯୌବନା କି ଦଳିତଯୌବନା କି ମଳିତଯୌବନା" ଇତ୍ୟାଦି ।

ହସର ଅନ୍ୟତର ଗୋଟିଏ ଉପାଦାନ, ଛଳକୁ ଭାଳ କରିବା ଅତିଶୟୋକ୍ତି ବର୍ଣ୍ଣନା । କୌଣସି ଗୋଟିଏ ଉପାଦାନକୁ ଏପରି ଭାବରେ ଛଳ-ଭାଳ ପ୍ରମାଣେନ ବଢ଼ାଇଲେ ଯେଉଁ ଅସାଧାରଣ ଅସାମଞ୍ଜସ୍ୟ ହୁଏ, ତହିଁରୁ ହସ ହୁଏ । ଓଡ଼ିଆରେ ଅଣ୍ଟା, ନାପସନ୍ଦ ଶ୍ରେଣୀରେ ଯେଉଁ "ନକଲ" ଶବ୍ଦ ଅଛି, ତାହାର ମୂଳ ଅର୍ଥ ଏହି । ପ୍ୟାରୋଡ଼ି କବିତାରେ ଏପରି ଉଦାହରଣ ମିଳେ । ଯେପରି—

"ଗୁହିଁ ଗୁହିଁ ତୋ ସରଣୀ କରୁଥିଲୁ ରେ ତରୁଣି
ତଣା ମୁଁ ଶ୍ୱେବାଉଥିଲି ବସି ରେ ଚନ୍ଦ୍ର-ଆଖି ।"
(କବି ହନୁମନ୍ତ ନକଲନବିଶ୍)

"ପଥ ଗୁଡ଼ ଦେ ଯିବ ମୁଁ ଓଲ୍ ଖୋଳି,
ଆରେ ବନମାଳି
ମୁଁ ତ ସାନ ସାଆନ୍ତଙ୍କ ଟିକି ଶାଳୀ
ଆରେ ବନମାଳି ।"

ଗୁରୁଗମ୍ଭୀର ହୋଇ ତୁଚ୍ଛ ତୁଚ୍ଛ ବିଷୟ ବର୍ଣ୍ଣନା କଲେ ହସ ଆସେ । ଦୁଇ କଳହକାରିଣୀଙ୍କ କଳିଆକୁ ରାମ-ରାବଣ ଯୁଦ୍ଧ ସଙ୍ଗେ ତୁଳନା କଲେ, ଚୁଣ୍ଡିଆ ବନ୍ଧ ବିଷୟରେ କବିତା ଲେଖିଲେ, ଇତ୍ୟାଦି ।

ଛଳ-ଭାଳ ଉପାୟ ଗୁଡ଼ା ଠକାମି, ଧପାବାଜି, ଅନ୍ୟର ଭୁଲ, ଏସବୁ ହସର ବିଷୟ—ଅବସ୍ଥାରେ ବ୍ୟବହୃତ ହୁଏ । ବିଦେଶୀ ସାହିତ୍ୟରେ ହସର ଅଧିକାଂଶ ଉପାଦାନ ହେଉଛି ଭ୍ରମ, ଭୁଲ, ଭଣ୍ଡାମି, ଧପ୍ପାବାଜି । ଆମ ଦେଶରେ ଏହି ସବୁ ଅଧିକାଂଶ ବିଷୟ ଉପାଦାନ । ଲଙ୍ଗୁଳୀ ଗୋସାଇଁଙ୍କ ସମାଧି ଆଗରେ ଉପାଧିଆ ପଡ଼ି ନଖି ଓଳ୍ଟା ଡାକିଲା, "ହେ ଠାକୁରେ, ମୋ ଗୁହାରି ଶୁଣ ।" କଆବୁଦା ସେ ପାଖୁ ହଂସନାଥ ହାଙ୍କିଲେ, "ହୁଁ—ହୁଁ—ହୁଁ—ଉଁ—ଉଁ !" କଦମ ଡାଳରେ ହଂସନାଥଙ୍କୁ ନଖି ଓଳ୍ଟା କହିଲା, "ଠାକୁରେ ଆଜି ଜବାବ୍ ଦେଲେ ।" ହଂସନାଥେ କହିଲେ, "ଗୁରୁବାର ସକାଳେ ସମାଧି ଆଗରେ ହାଣ୍ଡିଆ କଣ୍ଟକ ମିଠାଇ ଥୋଇ ଏକମୁହାଁ ହୋଇ, ଆଗକୁ ଗୁହିଁ ଏକାଦମ୍ କେ—ବୃଝିଲୁ, ପଛକୁ ଗୁହିଁବୁ ନାହିଁ ।" ଗୁରୁବାର ଦିନ ହଂସନାଥେ ବାଲଲୀଳା କରାଇଲେ । ଏପରି କେତେ ଠକାମି ହସର ଉପାଦାନ ହୁଏ ।

ହସ ଆଉ କାନ୍ଦ ବେଶୀ ତଫାତ୍ ନୁହେଁ; ଖାଲି କଥାଟାକୁ ଖବ ଦେଖିବାର ଦୁଇଟା ଅଲଗା ଅଲଗା ଉପାୟ । ଗୋଟାଏ ଘଟନାରେ ଜଣେ ହସି ହସି ଗଡ଼ଯାଏ, ଜଣେ ଦୁଃଖରେ ମରମେ ମରମେ ଦଗ୍ଧ ହୁଏ । କାଲିକା କଥା; ଚମ୍ପୀକୁ ଯେଉଁଦିନ ଦୁର୍ଗାଚରଣ ଠକିଲା । ସ୍ୱାମୀ କେଉଁ କାଳୁ କଲିକତା ଗଲେଣି, ମୁହଁଟି ବି ଦୂର ଅଗାତର କୁହୁଡ଼ି ତଳେ ଲୁଚିଗଲାଣି, ହଠାତ୍ କାଲ୍ ଚିଠି—ସେ ଆସୁଛନ୍ତି । ଚମ୍ପୀର ଗୋଡ଼ ତଳେ ପଡ଼ୁ ନାହିଁ । ସୁଟ୍‌କେଶ୍, ବାଣ୍ଡ଼, ଟଙ୍କ ଯେମିତି ଯେତେବେଳେ କଲିକତିଆ ଭାଇ ପର ଦୁର୍ଗାଚରଣ ପହଞ୍ଚିଲା, ଚମ୍ପୀ କେତେ ବାହୁନିଲା । ଶେଷରେ ଯେତେବେଳେ ଦୁର୍ଗାଚରଣ ଠକାମି ଖୋଲି ଚମ୍ପୀ ହାତକୁ ଓଟାଇ ହସି ହସି ଗଡ଼ିଗଲା, ଚମ୍ପୀ ବିଛଣା ଧରିଲା, ଗାଁ ଗୋଟାକ ହସି ହସି ଗଡ଼ିଲେ । କବି କାନ୍ଦେ; ହସେ ନାହିଁ । ତାର କଳା ଏହି କାନ୍ଦ ଭିତରେ । ସଂସାରର ସବୁ ଦୁଃଖ ତା ମର୍ମରେ ଆଘାତ କରେ । ଯେ ହସେ, ସବୁ କର୍ପିଳ ମରମ ଖବ ଘୃଣି ରଖି, ତାର ବି କଳା ଅଛି । ତା କଳା ତା ହୃଦୟର, ସହାନୁଭୂତିରେ, ଚରମ ସମାଧି ଭିତରେ । ସବୁ ତାର ସରିଛି, ଆଖିର ଲୁହ ଡଡିଲି ପବନରେ ଉଡ଼ି ବୁଲୁଛି । ହୃଦୟର ଖବପ୍ରବଣତା ନାହିଁ, ତା ପରେ cynic କବି—ଖାଲି ହସ—"ହେଃ ! କଥା ଆଲୁଅଟା—କେଡ଼େ ବଡ଼ । anachronism । ଆଉ ପଙ୍ଗତ ଘର ଏ ମଣିଷ ଜାତଟା—ହାଃ—ହାଃ—" ହସି ହସି ଗଡ଼ିଯାଏ, ପବନ ଦୋହଲି ହସି ହସି ଗଡ଼ଯାଏ, ନଈ ଜଙ୍ଗଲ ପାହାଡ଼ ଉପରେ । ଫୁଲଗୁଡ଼ାକ ଖଳ ଖଳ ହସି ଉଠେ; ଆଉ ଝର ପଡ଼େ ସୁବାସମୟ ଟୋପା ଟୋପା କାକର, ଫୁଲର ଲୁହ !



# କଳା-ଶକ୍ତି

ନାଁ ଟି ତା'ର 'କଳା' ।

ମିଡ଼ିଅମ୍ ଉପରେ ପ୍ରେତାତ୍ମା ପରି ସାଧାରଣ ମାନବ ଉପରେ ଅବତରୁଥିବା କବିତାର ଆତ୍ମା, ଗୋଟାଏ ମୂର୍ଚ୍ଛନା, ଗୋଟାଏ ସ୍ପନ୍ଦନ, ଗୋଟାଏ ଅଗାଧ୍ରସ୍ୱ ବିକାଶ । ପରିଚୟ ଯଦିବା ମିଳେ, ସେ କେବଳ ପ୍ରକାଶରୁ; ତା ପୁଣି ନିଶ୍ଚୟ ନୁହେଁ । ସରସ ଚିକ୍କଣ ପତ୍ରରେ ଗଛଟା ଝିକିମିକି କରେ । ଫୁଲର ଦଳ ଭିତରେ ସୌରଭ ପରି ବେଳେବେଳେ ଅଜଣା ପୁଲକ ଜାଗେ । ସୃଷ୍ଟିର ପ୍ରାଣୀ ଆପେ ଆପେ ଚମକି କୁହେଁ, ବସନ୍ତ ଆସିଲା । କୌଣସି ଲେଖା ନାହିଁ, କୌଣସି ବାହାରର ପ୍ରମାଣ ନାହିଁ, ପ୍ରମାଣ ନିଜକୁ ନିଜେ । ଠିକ୍ ସେହିପରି ଶିଳ୍ପୀଙ୍କ ଆଗମନ । ହଠାତ୍ ଯେ ବିଶ୍ୱ ବୁଝିବ, ସେପରି ନୁହେଁ । କେତେ ଦିନ ଶୀତରେ ଥରି ହୁଏତ ଚୈତ୍ର ବସନ୍ତର ନୀରବ ଅଭିଯାନ ସହଜେ ଆଖିରେ ବାରି ହୁଏ ନାହିଁ । ପୂର୍ବର ସଂସ୍କାର ଓ ପରିସ୍ଥିତିରେ ବଢ଼ି ପୁରାତନ ଧରଣ ଦେଖିବା ଯେଉଁ ଆଖିର ଅଭ୍ୟାସ, ଅନାହୂତର ଆଗମନ ସ୍ୱପ୍ନରେ ଯେ ପ୍ରତ୍ୟାଶା କରି ନାହିଁ, ନୂଆ ଶିଳ୍ପର ବିକାଶ ସହଜେ ସେ ବାରିପାରେ ନାହିଁ; ଜାଣିଲେ ମଧ୍ୟ ଜାଣେ ନାହିଁ, ବିଶ୍ୱାସରେ ଭରିଦେଇ ଉପେକ୍ଷା କରି ଚାଲିଯାଏ । ତେଣୁ ସମସାମୟିକମାନେ ଶିଳ୍ପୀଙ୍କର କଳା-ଶକ୍ତି ବିଷୟରେ ଧାରଣା କରି ପାରନ୍ତି ନାହିଁ; କିନ୍ତୁ ଶିଳ୍ପୀର ବିଜୟ ଯେବେ ଧରାପଡ଼େ, ଶୁଆଣି ଡାକ ଯେବେ କାନରେ ପଶେ, ଶଙ୍ଖଟା, ହୁଳହୁଳିଟା, ଅର୍ଘ୍ୟଚନ୍ଦନ, ଏ ତ ସାଧାରଣ କଥା !

ଯେଉଁ ମଣିଷ କଳା-ଆତ୍ମାର ମିଡ଼ିଅମ୍ ହୋଇଛି, ସାଧାରଣ ସଂସାର ଘରକରଣାରେ ତାର ବିଶେଷ ପରିବର୍ତ୍ତନ ଘଟେ ନାହିଁ । ସେହି ଘରସଂସାର, ସେହି ଦୈନ୍ୟ, ସେହି ବୃତ୍ତି । ପୋଷା ବିରାଡ଼ି କାଗଜପତ୍ର ଉପରେ ଗୋଡ଼ମାଡ଼ି ବସେ; ସେ ତ କିଛି ଜାଣେ ନାହିଁ । ଚାକର ନିଜର କାମ କରି ଚାଲିଯାଏ, ସେ ତ କିଛି ବୁଝେ ନାହିଁ । ହୁଏତ କଳା ଦାଉରେ ଶିଳ୍ପୀ ଟିକିଏ ଅନ୍ୟମନସ୍କ ହୁଅନ୍ତି, କେତେବେଳେ ବା ସଂସାର ଆଖିରେ ଅତି ଜଡ଼, ଅତି ଅପାରଗ । ସେ ତ ଗୋଟାଏ ଗୁଣର ପରିଚୟ ନୁହେଁ, ହୁଏ ତ ଅତି ନଗଣ୍ୟ, ଅତି ଦରିଦ୍ର, ସେ ବି ଆଖି ଟାଣିବାର ଉପକରଣ ନୁହେଁ । ଭିତରକୁ ଚାହିଁ ଦେଖିବାକୁ ବାହାର ଶକ୍ତି

ନାହିଁ । ଜାଲରେ ମାଛ ପଡ଼େ, କଲମ ମୁନରେ ଅଳିଅଳ ଶିଶୁ ଦାନ୍ତ ପରଖ କରେ, ଲେଖା କାଗଜ ଏଣେ ତେଣେ ଉଡ଼ିବୁଲେ । ବାହାରର ଗଦ୍ୟମୟ ପରିସ୍ଥିତି ବଦଳେ ନାହିଁ । ତାର ପ୍ରୟୋଜନୀୟତା ଅନ୍ୟମାନେ ବୁଝନ୍ତି ନାହିଁ । ଧୋବା ଲୁଗା ମାଗେ, କାବୁଲିବାଲା ଟଙ୍କା ପାଇଁ ତାଗିଦା କରେ—ବିଶେଷତ୍ୱ କିଛି ନାହିଁ ।

କେଉଁ ଉପାୟରେ କ'ଣ ପ୍ରକ୍ରିୟା ଘଟୁଛି, ଶିଳ୍ପୀ ନିଜେ ଜାଣିପାରେ ନାହିଁ । ନିଜର କେଉଁଠି ଉତ୍କର୍ଷ, କେଉଁଠି ଅପକର୍ଷ, ସେ ଜ୍ଞାନ ଜ୍ଞାତସାରରେ ଜନ୍ମେ ନାହିଁ । ସେତେବେଳେ ଶିଳ୍ପୀ ଗୋଟାଏ ଆବେଶରେ । ହୁଏ ତ ରୁଚି ଆପେ ଆପେ କଳା ଖୋଜି ବୁଲେ । ହୁଏତ କେତେ କଥା ନୂଆ ଆଲୋକରେ ସେ ଦେଖେ । ସୂକ୍ଷ୍ମ ଅନୁଭୂତି ତାର ଆସେ, ଯାହା ସାଧାରଣ ଜଗତର ମୋଟା ଆଙ୍ଗୁଠି ଫାଙ୍କରେ ଖସିଯାଏ, ଶିଳ୍ପୀ ପାଖରେ ସେ ଆପେ ଧରିଦିଏ । ଯାହା ସାଧାରଣ ଉପାଦାନ, ତା ଭିତରୁ ଶିଳ୍ପୀ ନୂଆ ରସ ପାଏ—ଯାହା ଅନ୍ୟମାନେ ପାଇ ନ ଥିଲେ । ପ୍ରକୃତି ? ସମସ୍ତେ ଦେଖୁଛନ୍ତି, ଗାଈଆଳ ଟୋକା ଦେଖିଛି, ଘାସ ଉପରେ ଘାସ, ବିଲରେ ସଞ୍ଜ ଆଲୁଅ ତଳେ ସବୁଜ କ୍ଷେତ ଉପରେ ଡେଇଁ; ପହିଲି ଅସରାରେ ଶୁଖିଲା ମାଟିର ସୌରଭ ସେ ଶୁଙ୍ଘିଛି । କାଠକଟାଳି ଚଢ଼ୁଛି, ବଣ-ଜଙ୍ଗଲ, ହରିଣ-ଠେକୁଆ, ବାଘ-ଭାଲୁ । ଜୀବନ ? ଶହେ ବର୍ଷର ଅନୁଭୂତି ବୋଝରେ ନଇଁ ପଡ଼ିଛି । ହାଡ଼ଚମର ଶୁଖିଲା ପ୍ରାଣୀ, କେତେ ଓଲଟ ପାଲଟ ଦେଖି ଦେଖି ଆଖିରୁ ପାଣି ମରିଛି । କବିର ତ ଗାଈଆଳ, କାଠକଟାଳି, ଲୋକନାଥ ବୁଢ଼ା ହେବା ଆବଶ୍ୟକ ହୁଏନାହିଁ । ଏମାନଙ୍କ ଅଭିଜ୍ଞତା ଆଗରେ ତା ଅଭିଜ୍ଞତା କେଡ଼େ ଶ୍ରେଷ୍ଠ ବୋଲି ଜଣାପଡ଼େ; କିନ୍ତୁ ଏମାନେ ଦେଖି ଦେଖନ୍ତି ନାହିଁ । ନଈ ତ ନଈ, ଆକାଶ ଆକାଶ, ଯେପରି କାଠ ତ କାଠ, ଏମାନେ ବାହାରଟି ଭଲ ଚିହ୍ନନ୍ତି; କିନ୍ତୁ ଏମାନଙ୍କ ଆଖିରେ ସବୁ ଜଡ଼, ନିର୍ବାକ୍ । କବିର ବେଶି ଅଙ୍ଗେ ନିଭାଇବା ପ୍ରୟୋଜନ ହୁଏ ନାହିଁ, ଶିଳ୍ପୀଶକ୍ତିରେ ତାଙ୍କର ଅନ୍ତର୍ଦୃଷ୍ଟି ଆସେ । କବି-ଅନୁଭୂତି ସୂକ୍ଷ୍ମ ଯେପରି, ପ୍ରବଳ ସେହିପରି, କବି ଅକବି ଭିତରେ ପ୍ରଭେଦ ଅନୁଭୂତିର ଗୁଣ ଦେଇ ।

ଯଦି ଶିଳ୍ପୀ-ଶକ୍ତିର ମୂଳ ହୁଏ କେବଳ ଅନୁଭୂତି, ତା ହେଲେ କହିବାକୁ ହେବ ଯେ, ଉଣା ଅଧିକେ ସମସ୍ତେ କବି, ସମସ୍ତେ ଶିଳ୍ପୀ । ବାସ୍ତବିକ ତାହା ସତ । ସମୟ ବିଶେଷରେ ଯେତେବେଳେ ଯାହାର ଅନୁଭୂତି ସୂକ୍ଷ୍ମ ହେବ, ପ୍ରବଳ ହେବ, ମନ ଭିତରେ ଅଜଣା ପ୍ରେରଣା ଫଳରୁ, ସେତେବେଳେ ତାର ପ୍ରକାଶ ନ ଥିଲେ ହେଁ ସେ କବି । ଏପରି ଅନୁଭୂତି ସମସ୍ତଙ୍କର ବେଳେ ବେଳେ ଆସିଥାଏ । ପ୍ରକାଶ

ନ ଥିବାରୁ ହଳୁଆ ମନକୁ ମନ ଅବୋଧ ଗୁଣୁଗୁଣୁରେ ମୂର୍ଚ୍ଛନାର ଶକ୍ତିକୁ ପ୍ରକାଶ କରେ, ଗାଈଆଳ ଟୋକା ସ୍ତବ୍ଧ ହୋଇ କ୍ଷଣେ ଶୁଣେଁ—ଘାସ ଭିତରେ ଯେପରି କଅଣ ଅପ୍ରକାଶ୍ୟ ପ୍ରଭାବ ତାର ମନକୁ ଘଣ୍ଟା ଚକଟା କରି ଚାଲିଯାଉଛି; କିନ୍ତୁ ମୁହୂର୍ତ୍ତେ ! ପର ମୁହୂର୍ତ୍ତରେ ସେ ପବନ ଉଭେଇ ଯାଇ ଶିଳ୍ପୀ ହୁଏ ସାଧାରଣ ଗାଈଜଗୁଆଳ ଟୋକା । କେତେବେଳେ ଦୁଇଟୋପା ଲୁହ, ଛଳଛଳ ଆଖି, ଭୁଛାକୁ ଗୋଟାଏ ଆନନ୍ଦ, ଆଉ "ବାଃ ବାଃ", ଏତିକରେ ଭିତରର ପ୍ରେରଣା ଆପଣାକୁ ଫୁଟାଇ ଜିଇଯାଏଁ । ଯେଉଁ ବେଳରେ ଅନ୍ତରର ଉଚ୍ଛ୍ୱାସ ନାହିଁ, ସ୍ୱପ୍ନ ଅନୁଭୂତିର ମୋହ ନାହିଁ, ମୂର୍ଚ୍ଛନା ନାହିଁ, ସେ ଅବସ୍ଥାରେ ଶିଳ୍ପୀ ନାହିଁ ।

କବିତାର ଆତ୍ମା ଆସେ ବିଶେଷ ଅବସ୍ଥାରେ; କିନ୍ତୁ ପ୍ରକାଶ ନ ପାଇଲେ କିଏ ଚିହ୍ନୁଛି ? ପ୍ରକାଶ ପାଇଲେ ଅନ୍ୟମାନେ ସ୍ୱାଦ ନିଅନ୍ତି, ଭବିଷ୍ୟତ ଲାଗି ସଞ୍ଚି ରଖିବାକୁ ବ୍ୟବସ୍ଥା କରାଯାଏ । ପ୍ରକାଶ ଲାଗି ଏପରି ଉପାୟ ସମ୍ଭବ ନାହିଁ, ଯହିଁରେ ଦର୍ପଣ ଉପରେ ପ୍ରତିବିମ୍ବ ପରି ଶିଳ୍ପୀ-ମନର ଗୋପନ ପ୍ରତିଚ୍ଛାୟା ପ୍ରକାଶିତ ହୋଇ ପାରିବ, ଜଣକର ମନୋଭାବ ଆଉ ଜଣେ ଅବିକଳ ବୁଝିପାରିବ । ତଥାପି ଯାହା କିଛି ପ୍ରକାଶ ଲାଗି ଉପାୟ ରହିଛି, ତାହାରି ସାହାଯ୍ୟରେ ଶିଳ୍ପକୁ ସଞ୍ଚି ରଖିବାକୁ ହେବ । ତାଳପତ୍ର ବିଡ଼ାରେ ଲେଖନ ମୂନରୁ ଦୁଇଧାଡ଼ି, କୋଣାର୍କ ମନ୍ଦିରରେ ପଥର ଉପରେ ଦୁଇଗାର, ପୃଥିବୀକୁ ଶିଳ୍ପୀର ଏତିକ ମହାଦାନ । କି ଅନୁଭୂତିରେ, କେଉଁ ସ୍ୱପ୍ନର ଛାୟା ପ୍ରକାଶି ବସି ପଥର ଉପରେ ହାତ ଥରି ଉଠିଥିଲା, କିଏ କହିବ ? ବୁଝାଇବାକୁ ଶିଳ୍ପୀ ବଞ୍ଚି ନାହିଁ; ଥିଲେ ମଧ୍ୟ ବୁଝାଇବା କଷ୍ଟକର ହୋଇଥାନ୍ତା । କଳାର ମୂର୍ଚ୍ଛନା ତ ଜ୍ଞାତସାରରେ ନିଷ୍ଠାଶୀଳ ହୁଏ ନାହିଁ; ତଥାପି ଯାହା ପ୍ରକାଶ ପାଇଲା, ସମସ୍ତେ ତାର ହିସାବ ରଖିବେ । ଅନ୍ୟମାନଙ୍କୁ କେହି ପଚାରିବେ ନାହିଁ । ଶିଳ୍ପୀ-ଆତ୍ମା କଳାର ମୂର୍ଚ୍ଛନା ଦୁଆରେ ଦୁଆରେ ଉପାଧିଆ ପଡ଼ି ପ୍ରକାଶ ଲୋଡ଼ିଥିଲା, ସୃଷ୍ଟି ଚାହିଁଥିଲା । ସେମାନଙ୍କ ଦ୍ୱାର ରୁଦ୍ଧ ଥିଲା, ଚିରଯୁଗ ରୁଦ୍ଧ ରହିବ, ପାଷାଣ କଥା କହିବ ନାହିଁ ।

କଳାର ବିକାଶ ଲାଗି କଳାର ଆତ୍ମା ଯେପରି ଲୋଡ଼ା, ଉପାଦାନ ସେପରି ଲୋଡ଼ା । ଉପାଦାନ ହୁଏ କଙ୍କାଳ, ତାରି ଭିତରେ କବି-ଶକ୍ତି ହୁଏ ଜୀବନ । ଏ ଉପାଦାନ ଅଭିଜ୍ଞତାରୁ ଯେପରି ଆସେ, କଳ୍ପନାରୁ ସେପରି ଆସେ । ଯେଉଁ ପରିସ୍ଥିତିରେ ଶିଳ୍ପୀ ବଢ଼ି ଆସିଛି, ଯାହା ତାର ଦେଖାପରଖା, ଜଣାଶୁଣା, ପରିଚିତ, ସେ ଯେପରି ଉପାଦାନ ହୁଏ—କଳ୍ପନା ସେହିପରି । କଳ୍ପନାରେ ମଧ୍ୟ ଅଭିଜ୍ଞତା ରହିଛି; କେବଳ ସ୍ରଷ୍ଟା ହେବାର ଭିନ୍ନ ଧରଣ । ଆହୁରି କଳ୍ପନାରେ ଅଛି କଳା-ଶକ୍ତିର ଅବତାର ଫଳରୁ ଗୋଟାଏ ସ୍ୱପ୍ନ । ଏସବୁ ଏକାଠି କରି ସଜାଇ

ରଖିଲେ, ଖାଲି ଦୁନିଆ ମଝିରୁ ଅନୁଭୂତ ଗୋଟାଇ ଭଣ୍ଡାର ଭରିଲେ କଳାଗଢ଼ା ହେବ ନାହିଁ । କଳାର ଆତ୍ମା ଆଶ୍ରା କରିବା ଆବଶ୍ୟକ । ଯେତେବେଳେ ତା ଆସେ, ପ୍ରଥମ ଅବେଗର ହୁଏ ସୃଷ୍ଟି । "କେତେ କଣ ବାକି ପଡ଼ିଛି, ଏ ନୂଆ ଦୃଶ୍ୟ କେହି କଣ ଦେଖିଛି ? ନିଗୂଢ଼ ସୃଷ୍ଟିର ଅପ୍ରକାଶିତ ଭାଷା ପ୍ରକାଶିବାକୁ ହେବ, ନୂଆ ସର୍ଜନା କରିବାକୁ ହେବ ।" ସେ ପର୍ଯ୍ୟନ୍ତ ତର ସହେ ନାହିଁ । ଏ ଯେପରି ଗୋଟାଏ ଦାୟିତ୍ୱର ବୋଝ—ସଂସାର ପ୍ରତି ଦାୟିତ୍ୱ, ଅସୀମ ସ୍ରଷ୍ଟାଙ୍କର ଅଂଶ ଲଭିବା ଦାୟିତ୍ୱ । ସବୁ ପ୍ରବୃତ୍ତି ଗୋଟିଏ ଆଡ଼କୁ—ସୃଷ୍ଟି । କେବଳ ତହିଁରେ ଆନନ୍ଦ, କାର୍ଯ୍ୟ ମାତ୍ରକେ । ଫଳ କଣ ହେବ, ଶିଳ୍ପୀ ଭାବିବାକୁ ଅବସର ପାଏ ନାହିଁ । କଳା ତ ମୂର୍ଚ୍ଛନାର ଉରୁସ ପେଜ ।

ଚିର ନୂତନ ଚିର-ତରୁଣ କଳା ଯେଉଁମାନଙ୍କଠାରେ ପ୍ରକାଶ ପାଇଥାଏ, ସେମାନଙ୍କର ବିଶେଷ ପ୍ରତିଭା । ଏ ଗୋଟାଏ ସ୍ୱୟଂପ୍ରକାଶ, ବିଶ୍ୱର ବୁଦ୍ଧିରେ ବନ୍ଦୀ ହେବ ନାହିଁ—କେଉଁ ପରିସ୍ଥିତିରେ, କେଉଁ ଉପାୟରେ କଳାଶକ୍ତିର ଉଦ୍‌ବୋଧନ କରିହେବ । ଅସୀମ ଆଦର୍ଶର କ୍ଷଣିକ ଗ୍ରସ୍ତାପାତ, ସ୍ୱାଧୀନ ଅବତାର, କାହାର ଆଜ୍ଞାଧୀନ ନୁହେଁ—ଇଚ୍ଛାର ଦାସ ନୁହେଁ; ତହିଁରେ କାହାର ଆୟତ୍ତ ନାହିଁ । ସ୍ୱଇଚ୍ଛାରେ ପ୍ରକାଶ, ସ୍ୱୟଂ ବିଳସ୍ତ । ବାଣୀ-ପୂଜା, ବାଣୀଆବାହନ, ପୁରୁଣା କାବ୍ୟକବିତାରେ ପ୍ରଥମେ ଯେଉଁ ବୀଣାପାଣି ସ୍ତୁତି ପ୍ରଭୃତି ଦେଖାଯାଏ, ସେ ସବୁ କଳାର ସ୍ୱାଧୀନ ପ୍ରକାଶ ପ୍ରତି ସମ୍ମାନର ଅର୍ଘ୍ୟ ! ଯେପରି କି ପ୍ରାଚୀନ କବି ଜାଣି-ଥିଲେ, ଯଥାସାଧ୍ୟ ଚେଷ୍ଟା ସତ୍ତ୍ୱେ ଅନାୟତ୍ତ ମୂର୍ଚ୍ଛନା ବିନା କଳାପ୍ରକାଶ ଅସମ୍ଭବ । ହୁଏତ ଶିଳ୍ପୀ ନିଜେ ବୁଝେ ନାହିଁ । ଉପନ୍ୟାସ ଲେଖିଲେ ମାନସପଟରେ କେତେ ଚରିତ୍ର ଜୀବନ ପାଇ ଉଠି ବସନ୍ତି, ଦୂର ଅତୀତର ଅନ୍ଧାର ଭିତରୁ, ଆଦର୍ଶ ଭିତରୁ, ଚାରିପାଖର ପରିସ୍ଥିତି ମଝିରୁ । ସେମାନେ ଆପେ ଆପେ ଆସନ୍ତି, ଆପେ ଆପେ ଖେଳିବୁଲି ଯାଆନ୍ତି । କେତେବେଳେ କଳା କି ଭାବରେ କେଉଁ ପରିଣତି ଦିଆଯିବ, ଶିଳ୍ପୀ ଆଗରୁ ନକ୍‌ସା କାଟି ନାହିଁ । ଶିଳ୍ପୀ ସେତେବେଳେ ଭାବରେ ବିଭୋର; ଭୂତ ଲାଗିଥିବା ମିଡ଼ିୟମ୍ ପରି । ହୁଏ ତ କଣ ଘଟୁଛି, ତାର ଗୋଟାଏ ଅସ୍ପଷ୍ଟ ଅନୁଭୂତି ରହୁଛି; ଆଉ କିଛି ନାହିଁ । ସାଧାରଣତଃ ଦେଖାଯାଏ, ନିଜ ପ୍ରକାଶିତ କଳାର ନିଜେ ଉଚିତ ସମାଲୋଚନା କରିବା ଶିଳ୍ପୀ ପକ୍ଷରେ ସମ୍ଭବ ନାହିଁ । ହୁଏତ ନିଜେ ଶିଳ୍ପୀ ଯେଉଁ ବୁଝାମଣା ଦିଏ, ତହିଁରେ ନିଜ ସୃଷ୍ଟି କଳାର ମୂଲ୍ୟ କମିଯାଇପାରେ ।

କଳାଶକ୍ତି ଯେ ପର୍ଯ୍ୟନ୍ତ ଅଛି, ସେ ପର୍ଯ୍ୟନ୍ତ ନୂଆ ସୃଷ୍ଟି କରିବାକୁ ଉତ୍ସାହ ଅଛି, ବଳ ଅଛି । କଳା ଗୋଟିଏ ସୀମା ବାହାର ଶକ୍ତି; ସବୁଦିନେ ନୂଆ,

ସବୁଦିନେ ଉଦ୍‌ବେଗ ଉଚ୍ଛ୍ୱାସରେ ଚଞ୍ଚଳ । ଶିଳ୍ପୀ ଚିରଦିନ ଯୁବା । କଳା ଭିତରେ ବାର୍ଦ୍ଧକ୍ୟ ରହି ନ ପାରେ; କାରଣ କଳା ଓ ବାର୍ଦ୍ଧକ୍ୟ ଏ ଦୁହେଁ ଉଦ୍ଦେଶ୍ୟ ଓ ପ୍ରକାଶରେ ପରସ୍ପର ବିରୋଧୀ । କଳା-ଶକ୍ତିରେ ପ୍ରେରଣାର ଭିଡ଼ା ପଡ଼ିଲେ ଶିଳ୍ପୀ ନ ଥାଏ । ପୁରୁଷୋତ୍ତମଙ୍କ ଦରବାରରେ କବି ଜୟଦେବ ହୁଏତ କୌଣସି ମୁହୂର୍ତ୍ତରେ ସାଂସାରିକ ଚିନ୍ତାରେ ପ୍ରବୃତ୍ତ । ସେତେବେଳେ ସେ ଜଣେ ସାଧାରଣ ଓଡ଼ିଆ କବି, 'ପଣ୍ଡିତ କବି' ଆଦି ଗୋଟାଏ ଭୂଷଣ ସେତେବେଳେ ତାଙ୍କର ପରିଚୟ ନୁହେଁ । ହୁଏତ ନିତ୍ୟକର୍ମ ସମୟରେ ଅକସ୍ମାତ୍ କଳାର ମୂର୍ଚ୍ଛନା ଆସିଲା; ସେତେବେଳେ ସେ କବି । ସବୁ ମୁହୂର୍ତ୍ତରେ ଜଣେ କବି ହେବ, ଏପରି ନୁହେଁ । ପ୍ରେରଣା ନ ଥିଲା ସମୟରେ ପଦ ମିଳାଯାଇପାରେ, ଶବ୍ଦବିନ୍ୟାସ ବ୍ୟତୀତ ଅନ୍ୟ ସବୁ ଘଟିପାରେ । ଜଣେ ଲେଖକକୁ କବି ମାନି ନେଇ ତାର ପ୍ରତ୍ୟେକ ଲେଖା, ପ୍ରତ୍ୟେକ ପଙ୍‌କ୍ତିରେ ଉଚ୍ଚ ଆଦର୍ଶ ଖୋଜି ବୁଲିଲେ ଫଳ ନାହିଁ । ହୁଏତ ଅନେକ ସମୟରେ ଖାଲି ଲେଖିବା ଲାଗି ଲେଖା ହୋଇଛି । ଏପରି ଅବସ୍ଥାରେ କବି କବି ନୁହେଁ, ଜଣେ ସାଧାରଣ ବ୍ୟକ୍ତି ।

ଯେଉଁ ମୁହୂର୍ତ୍ତରେ କଳା ପ୍ରାଣବନ୍ତ, ସେହି ମୁହୂର୍ତ୍ତର କଳା ଆଲୋଚନା କରି ବସିଲେ ବ୍ୟକ୍ତିଗତ ଜୀବନର ମଣିଷ କି ଦରକାରରେ ଆସିବ ? ବ୍ୟକ୍ତିଗତ ଜୀବନରେ ସେ ଯାହା ଥିଲା, ଭୂତ ଲାଗିଲା ପରି କଳା ଲାଗିଲା ବେଳେ ସେ କଣ ପୂର୍ବ ସାଧାରଣ ଅବସ୍ଥାଠାରୁ ଭିନ୍ନ ନୁହେଁ ? ବ୍ୟକ୍ତିଗତ ଜୀବନରେ କବି କେତେ କାର୍ଯ୍ୟ ନ କରନ୍ତି ? ଘରକରଣା ବୃତ୍ତିରେ କବି କେବେ ଆଳୁବିକାଳୀ ସଙ୍ଗେ ଝିକ୍‌ମିକ୍ ଲଗାଇ ଷଉ କରୁଥିଲେ; ସେ ଅବସ୍ଥାର କବିଙ୍କୁ ତାଙ୍କର ଉଚ୍ଚ କଳାର କବିତା ଭିତରେ ଖୋଜି ବୁଲିଲେ କବିତାର କେଉଁ ବୁଝାମଣା ହେବ ? ବ୍ୟକ୍ତିଗତ ଜୀବନରେ କବି ବଡ଼ କର୍ମଠ ଥିଲେ, ହାତରେ କୋଡ଼ି ଧରି ବାରିଯାକ ବାଇଗଣ ଲଗାଉଥିଲେ, ହୁଏତ ହାତରେ ଲଗୁଡ଼ ଧରି ମାଙ୍କଡ଼ ଜଗୁଥିଲେ, କବିତାରେ ବା ଆଭ୍ୟନ୍ତରୀଣ ଜୀବନରେ ସେ ଛବି କେଉଁଠି ମିଳେ ?

ତେଣୁ ସାଧାରଣ ଜୀବନକୁ ମାପକାଠି କରି ମାପି ବସିଲେ କବିକୁ ବୁଝିବା ହେବ ନାହିଁ । ସାଧାରଣ ଜୀବନକୁ ଏକାବେଳକେ ଏଡ଼ି ଦେଲେ ଚଳିବ ନାହିଁ । କବିଙ୍କର ଯାହା ଅଭିଜ୍ଞତା, ତାରି ଭିତରୁ ସେ ଉପାଦାନ ଆଣିବେ । ପରିସ୍ଥିତି ବିଷୟରେ ଧାଡ଼ିଏ ଦୁଇଧାଡ଼ି ଲେଖି ନ ଦିବେ, ଏପରି ନୁହେଁ । ଦୈହିକ, ବାଚିକ, ମାନସିକ, ନୈତିକ, ଆର୍ଥିକ, ଐତିହାସିକ, ପ୍ରାଗୈତିହାସିକ କବିଙ୍କ ଜୀବନ ସମ୍ବନ୍ଧୀ କେତେ କଥା ସେଥିରେ ସ୍ଥାନ ପାଇବ, ସାଧୁ, ତହିଁରେ ଆପତ୍ତି ନାହିଁ ଉକ୍ତ କବିଙ୍କ ଜୀବନ ସମ୍ବନ୍ଧୀୟ ସବୁ ଉପାଦାନ ଏକାଠି କଲେ ସେହି ଲେଖା ପୂର୍ଣ୍ଣ

ଉଚ୍ଚ ଆଦର୍ଶର କବିତା ହେବ ତ ? ଅନେକେ ପୁଣି କବିଙ୍କ ଜନ୍ମସ୍ଥାନ, ତାଙ୍କ ପ୍ରିୟ ବୃକ୍ଷଲତା ଦେଖିବାକୁ ବ୍ୟସ୍ତ; କିନ୍ତୁ ତହିଁରେ ଉପକାର କିଛି ନାହିଁ । ସେହି ଆକାଶ, ସେହି ନଦୀ ରହିଛି, କେତେ ଲୋକ ନ ଦେଖୁଛନ୍ତି; କିନ୍ତୁ କବି ଯେଉଁ ସନ୍ଦେଶ ସେଠୁ ପାଇଥିଲେ, ସେହି କବି ନ ହେଲେ ଆଉ କେହି ସେପରି ପାଇପାରିବେ କି ? କବିଙ୍କ ଜୀବନର ସାଧାରଣ ଅଭିଜ୍ଞତା ତ ଉପାଦାନ; କିନ୍ତୁ ତାଠୁଁ ତ ବଡ଼ କିଛି କବିତାରେ ଅଛି । ସେ ଆତ୍ମା, ସେ ମୂର୍ଚ୍ଛନା କବି-ଶକ୍ତିର, ସାଧାରଣ କବି ମଣିଷର ନୁହେଁ ।

Style is the man । କିପରି ହେଲା, ହଠାତ୍ ଦେଖିଲେ ବିଶ୍ୱାସ ହେବାର କଥା । କବି ଭାବର ପରିବାହ; ତେଣୁ "ଲେଖନଭଙ୍ଗୀ"ରେ ନିଛକ ଶୁଦ୍ଧତା, ସ୍ୱତବାନ୍ତୁ ବ୍ୟତୀତ ଆଉ କିଛି ନାହିଁ । କବି ରଙ୍ଗଢଙ୍ଗ ଭଲ ପାଉଥିଲେ, ଆଡ଼ମ୍ବରପ୍ରିୟ ଥିଲେ, ତେଣୁ ଏ ଭାଷାରେ ଏସବୁ ନ ଥାଇ ଯିବ କାହିଁ ? ଏସବୁ ଏତେ ସହଜ ଯେ, ଶିଶୁମାନଙ୍କୁ ଏଥିରେ ଅତିଶୀଘ୍ର ଭୁଲାଯାଇପାରେ । ଆଡ଼ମ୍ବରପ୍ରିୟ ସାଧାରଣ ଲୋକ ଲେଖି ବସିଲେ ଭାଷାରେ ଆଡ଼ମ୍ବର ରଖିବା ସ୍ୱାଭାବିକ; କିନ୍ତୁ ସେ ଲୋକ ଉପରେ ଯେତେବେଳେ ଅନ୍ତର ଗୋଟିଏ ଆତ୍ମା, କଳାଶକ୍ତି ଆଶ୍ରା କରିଛି, ସେ ନିଜକୁ ପ୍ରକାଶ କଲାବେଳେ ପୂର୍ବର ସାଧାରଣ ଲୋକ ପରି କରିବା ଧରାବନ୍ଧା ନୁହେଁ । କବିର ଭାଷା କବିର, କବି-ଶକ୍ତିର ଯେଉଁ ଲୋକଠି ଆବିର୍ଭାବ ହେଲା, ତାହା ଲୋକର ସାଧାରଣ ଜୀବନର କେବେହେଁ ନୁହେଁ । ତା ହୋଇଥିଲେ, ଦୁଇଟି କାରଣରୁ ଘଟିଥିବ—(୧) ହୁଏ ତ ସେ ଲେଖା ଆବେଶ ମୁହୂର୍ତ୍ତର ନୁହେଁ, (୨) ହୁଏତ କବି-ପ୍ରତିଭାର ସେ ଗୋଟିଏ ବିକାଶ । ସାଧାରଣ ଅଭିବ୍ୟକ୍ତି ଉପରେ ନିର୍ଭର କରିବା ଫଳରୁ ତାହା ସାଧାରଣ ଜୀବନର ନୁହେଁ ।

ଟା'ଣି ଓଟାରି ପ୍ରମାଣ କରି ବସିଲେ କଳାକୁ ଧଳା ବୋଲି ଛେଳିକୁ କୁକୁର କରାଯାଇପାରେ । ତେଣୁ କୌଣସି ମତକୁ ବାଧାତାଙ୍କ ଗାର ଭାବନେଲେ ସେ ଅନୁସାରେ fallacy ଦେଇ ପ୍ରମାଣ କରାଯାଇପାରେ; କିନ୍ତୁ ଖୋଲା ଆଖିରେ ଦେଖିଲେ ଅନେକ ସମୟରେ ସାଧାରଣ ମଣିଷଠାରୁ ଭିନ୍ନ ପ୍ରକୃତି ଅତି ସହଜରେ ମିଳିଥାଏ । ଅନେକ "ଲେଖନଭଙ୍ଗୀ" ପରଖି ଲେଖକ ବିଷୟରେ ଯାହା ଧାରଣା କରାଯାଇଥାଏ, ବାସ୍ତବିକ ତା' ହୋଇ ନଥାଏ । ସେତେବେଳେ ବିକଳ୍ପେ ନିପାତନ ସିଦ୍ଧ ନ କରି ଗତି ନାହିଁ ।

ଅନ୍ତର ଯଦି Style is the man ମତକୁ ବିଶ୍ୱାସ କରାଯାଏ, ତେବେ କବି-ପ୍ରତିଭାକୁ ଅପମାନ କରାହେବ । ତେବେ ବୁଝିବାକୁ ହେବ, ଅଙ୍କଶାସ୍ତ୍ର ପରି

କବି-ପ୍ରତିଭାକୁ ମାପିଚୁପି ତିଆରି କରିହେବ; ହୁଏତ Laboratoryରେ କବି ପ୍ରସ୍ତୁତ କରିବାର ସ୍ପର୍ଦ୍ଧା ଆସିବ । ତା ହେଲେ ଆଉ କବି ଅସୀମ କଅଣ ? ପରିସ୍ଥିତିର ଆଇନ୍‌ରେ ବନ୍ଧା ସସୀମ କବି । ତା ହେଲେ ଅଉ କବିଙ୍କର ମର୍ଯ୍ୟାଦା ଗୋଟାଏ କଅଣ ? ପରିସ୍ଥିତି ଉପରେ, ସମସ୍ତ କାଳ ଉପରେ କବି-ଆତ୍ମା କଣ ? କବି ବିଦେଶୀ ଖବର ଫାଷ୍ଟ ବୁକ୍‌ର ଘୋଡ଼ା ଲେଖନ୍ ପଢ଼ିଲେ ଯାହା, ଆଉ ଦୁଇ ପୃଷ୍ଠା ଆଗକୁ ମାଡ଼ିଲେ ତାଠୁ ବେଶୀ ନିଶ୍ଚୟ । ଏତ ବିଳଦଆ ହିସାବରେ ବି ସ୍ଥିର । ତା ହେଲେ ଆଉ କବି-ଆତ୍ମା ବୋଲି ଗୋଟାଏ କ'ଣ କବିଙ୍କର ଅସାଧାରଣ ଗୁଣ ବା କଅଣ ?

କିନ୍ତୁ ବାସ୍ତବିକ ତା ଘଟେ ନାହିଁ; ତେଣୁ "man"କୁ ବିଶ୍ଳେଷଣ କଲେ କବି-ଶକ୍ତିର ପାଖ ପଶିବା ମଧ୍ୟ ସମ୍ଭବେ ନାହିଁ । କବିଙ୍କ ଭିଷାରେ ଏତେ ପଣ ବଙ୍ଗଳା, କଅଣ କବି ବଙ୍ଗ ଦେଶକୁ ବିଶେଷ ଶ୍ରଦ୍ଧା କରୁଥିଲେ—ଏ ତଥ୍ୟଟି ଆବିଷ୍କାର କଲେ ଇତିହାସର କିଛି ଉପକାର ହେବ, ସାହିତ୍ୟର ନୁହେଁ । ଯଦି କେବେ କେହି ପ୍ରମାଣ କରିବସେ, Woodrow Wilson ଉର୍ଫ୍ ବିଲସନ୍ ଜଣେ ଓଡ଼ିଆ; ସେକ୍‌ସପିଅରଙ୍କ ପୂର୍ବପୁରୁଷ ବଙ୍ଗାଳୀ ମୁସଲମାନ୍ (ସାଖ୍-ପିର୍) । ତହିଁରେ କବି-ଅତ୍ମା ସେକ୍‌ସପିଅରଙ୍କର ବୁଝାମଣା ହେବ ନାହିଁ । ସାଧାରଣ ଜୀବନର ବହୁ ଉପାଦାନ କବିଙ୍କ ଲେଖାରେ ରହିବ ତ; ତା ବୋଲି ସେ ତ ନିଜେ କବିତାର ଆତ୍ମା ନୁହେଁ । ମଣିଷର ଅତ୍ମାକୁ ପାଇବା ଲଗି ମୁର୍ଦ୍ଧାର ସାର୍ଣ୍ଣିବା କି ପ୍ରୟୋଜନ ?

ସାଧାରଣ ବ୍ୟକ୍ତିଗତ ଜୀବନରେ କବିତାଶକ୍ତି ଉଦୟ ହେଲେ ବାହାକୁ କିଏ କିପରି ଜାଣିବ ? ନିଜେ ପ୍ରକାଶ ନ କଲେ ଆଉ ଜଣେ ଜାଣିବାର ଉପାୟ ନାହିଁ । ଯେ ପର୍ଯ୍ୟନ୍ତ ପ୍ରକାଶ ନ ଘଟିଛି, କବି ମନ କିପରି ପ୍ରକ୍ରିୟାରେ ଅଛି, କେହି କହିପାରିବ ନାହିଁ; ତେଣୁ କବିଙ୍କ ଲେଖାରେ ସାଧାରଣ ମଣିଷକୁ ନ ଖୋଜି କବିଶକ୍ତି (the future man)କୁ ଖୋଜିବା ଉଚିତ ।

ଯାହା ତାଙ୍କର ପ୍ରକାଶ, ତାରି ଭିତରୁ ଯେଉଁଠି ତାଙ୍କର ପ୍ରେରଣାର ବିକାଶ, ସେଇ ତାଙ୍କର କବିତା । ତାଙ୍କର କବିତାର ଅତ୍ମାକୁ ଖୋଜିବାକୁ ପଡ଼ିବ, ତାଙ୍କ ବ୍ୟକ୍ତିଗତ ଜୀବନରେ ନୁହେଁ, ତାଙ୍କର କବିତାର ଜୀବନରେ । ନିଷ୍ଫଳ ହେଉ, କ୍ଷତି ନାହିଁ; କିନ୍ତୁ କବିଶକ୍ତି ଭିତରେ ଅସୀମ ଐଶ୍ବରିକ ଶକ୍ତି ଯାହା, ତାରି ସନ୍ଧାନୀ ବୋଲି ନିଜର ଆନନ୍ଦ ହେବ । କବିତାର ଐତିହାସିକ ଆନନ୍ଦ ଛାଡ଼ି, ସାହିତ୍ୟିକ, ଆଧ୍ୟାତ୍ମିକ ଆନନ୍ଦ ମିଳିବାର ଅବକାଶ ରହିବ । ପ୍ରକାଶିତ କର୍ମର

କେଉଁ ଅଂଶରେ କବି ସାଧାରଣରୁ ବାହାରି ଅସାଧାରଣ ଅସୀମର ପ୍ରେରଣା ପାଇଛନ୍ତି ବୋଲି ବିଗ୍ଭର ହେବ, ହୁଏତ ଶତକଡ଼ା ପ୍ରକାଶିତ ଲେଖାରୁ ୯୯ ଭାଗ ଅକବିତା ଫେଡ଼ି ଯେଉଁ ଅଳ୍ପ ଅଂଶରେ କବିପ୍ରତିଭା ମୂର୍ତ୍ତି ହେଲା, ସେହି ପ୍ରକାଶରୁ ତାର ପରିଚୟ ମିଳିବ ।

କବିଙ୍କ ଅଭିଜ୍ଞତା ଉପରେ କବି କଳ୍ପନା । ତାର ଅଳକୂଳ ନାହିଁ, ସୀମା ନାହିଁ । କଳ୍ପନାର କବିଅନୁଭୂତି ସାଧାରଣ ଅନୁଭୂତିଠାରୁ ଭିନ୍ନ । ସାଧାରଣ ଅଭିଜ୍ଞତା ଉପରେ ଆହୁରି କିଛି ପାଆନ୍ତି, ଆହୁରି ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ନୂଆ ଆଲୋକ, ନୂଆ sensibility । ତା ପାଖରେ ସାଧାରଣ ଅଭିଜ୍ଞତା ଅତି ନ୍ୟୂନ । ଶିଳ୍ପୀଙ୍କର ପୂଜା ସେଥିପାଇଁ, ମାନବ ଉପରେ ଅତିମାନବ ସଂମାଜ୍ଞନ ଐଶ୍ୱରିକ ଶକ୍ତିର ଅଂଶାବତାର ସେ ।

ଲୋଭ ହୁଏ ସାଧାରଣ ଜୀବନ ସଙ୍ଗେ କବିତାକୁ ଯୋଖି ଏ ଅପେକ୍ଷାକୃତ ସହଜ ଉପାୟରେ କବିପ୍ରତିଭାର କଥ ପରିଖିବାକୁ । ଅନେକେ ପୁଣି ବ୍ୟକ୍ତିଗତ ଜୀବନରେ କବିଙ୍କ ଚରିତ୍ର ଇତ୍ୟାଦି ଦେଇ କବିତାକୁ ବିଗ୍ଭର ଦେଖନ୍ତି । କବି ଲମ୍ପଟ, କବି ଦୁଃଖୀ, କବି ଦୁର୍ବଳ, ତା ବୋଲି ଯେଉଁ ମୁହୂର୍ତ୍ତରେ କବି-ପ୍ରତିଭାର ବିକାଶ, ସେତେବେଳେ "କାଳିସୀ" କବି ବାସ୍ତବିକ ଏସବୁ ତ ? ବ୍ୟକ୍ତିଗତ ଜୀବନର ଦୋଷ ପାଇଁ କେତେ କବି ଉପେକ୍ଷା ପାଆନ୍ତି ।

ଭ୍ରାନ୍ତି ।

କବି ଅନୁଭୂତି ଚିରଦିନ ରହେ ନାହିଁ । ବୟସ ବୃଦ୍ଧିର ଶୃଙ୍ଖଳ ଯେତିକି ଦୃଢ଼ ହୁଏ, କବି ମିଡ଼ସ୍ମମ୍ କଳାଶକ୍ତିର ଅବତାର ଲାଗି ସେତିକି ଅନୁପଯୁକ୍ତ ହୁଏ । କ୍ରମେ ଶକ୍ତି ଦୁର୍ବଳ ହୋଇଆସେ । କଳାଶକ୍ତିର ଉଗ୍ରତାପ ସହିବାକୁ ଉପାଦାନ ତ ଦୁର୍ବଳ, ଅବତାର ଆସିବ କାହିଁ ? ପ୍ରକାଶ କରିବା ଶକ୍ତି କ୍ଷୟ ହୋଇ ଆସେ । ବାହାରେ ଇନ୍ଦ୍ରିୟ ଦୁର୍ବଳ, ଅଖିର ଆଲୁଅ କଭି କଭି ଆସୁଛି, ବଳ ନଇଁବାକୁ ନୂଆ ଆଲୋକରେ ଉପବେଶ କରିବା ପ୍ରବୃତ୍ତି କମ୍, ଆକାଶର ରସ, ମାଟିର ରସ ଗ୍ରହଣ କରି ଉପାଦାନ ପୋଷିବା କଷ୍ଟକର । ଭିତରେ ବୟସବୃଦ୍ଧିର ପ୍ରକୋପ, ସାଂସାରିକ ଗଦ୍ୟମୟ ଜଟିଳତା । କବିପ୍ରତିଭାର ଏ ବାର୍ଦ୍ଧକ୍ୟ ଯେ କେବଳ ବୟସ ଉପରେ ନିର୍ଭର କରେ, ତା ନୁହେଁ; ସାଧାରଣ ଘଟନା ଉପରେ ମଧ୍ୟ ନିର୍ଭର କରେ । କବିର ଯୌବନର ଯେପରି ବୟଃକାଳ ନାହିଁ ବାର୍ଦ୍ଧକ୍ୟର ମଧ୍ୟ ସେପରି ବୟଃକାଳ ନାହିଁ । ଯୌବନର ଦ୍ୱିପ୍ରହରରେ କବି-ଜୀବନର ସନ୍ଧ୍ୟା ଘଟିପାରେ, ବାର୍ଦ୍ଧକ୍ୟର ଯନ୍ତ୍ରଣା କଭି ଆସିଲାବେଳେ କବି ଜୀବନରେ ଯୌବନ ଆରମ୍ଭ

ହୋଇପାରେ; କିନ୍ତୁ ଯେତେବେଳେ ସଞ୍ଜବତୀ ଲାଗେ, କି କରୁଣ ସେ ଦୃଶ୍ୟ ! ଯୌବନର ପ୍ରଖର ଶକ୍ତିରେ କବି ଗଢ଼ିଥିଲା ସୃଷ୍ଟି ! ସର୍ଜନର ମୋହରେ ସେତେବେଳେ ସେ ପାଗଳ ! ଭିତରେ କଳାଶକ୍ତିର ପ୍ରକୋପ ପ୍ରକାଶ ଚାହେଁ, ଖାଲି ପ୍ରକାଶ । ସେତେବେଳେ ମାନ ଅପମାନ ଭୟ ନାହିଁ, ଆଦର ଉପେକ୍ଷା ପ୍ରତି ନିଘା ନାହିଁ; କିନ୍ତୁ କବି-ଜୀବନର ଶେଷ ଦୃଶ୍ୟରେ ଯେତେବେଳେ ବନ୍ଧ୍ୟାତ୍ୱ ଆସେ, କରୁଣ ଆଖିରେ କବି ଚାହେଁ ଅତୀତର ମାନସପୁତ୍ରମାନଙ୍କୁ । ସୃଷ୍ଟି-ଗୌରବ ନିଭିଗଲେ କବି ଚାହେଁ ସମ୍ମାନର ଗୌରବ । ସେତେବେଳେ ଦେଶ ବିଦେଶରେ "ମୁଁ କବି, ମୁଁ ଅମୁକ ଦେଶର କବି" ଢୋଲ ପିଟି ପ୍ରଚାର କରିବା ଲାଗି ଅବକାଶ ଆସେ । ନିଜେ ଯେତେବେଳେ ଦୁର୍ବଳ, ସେତେବେଳେ ମାନସମ୍ମାନ, ଅହଙ୍କାର ବଜାୟ ରଖିବାକୁ ଅସ୍ତ୍ରିନ୍ ଷ୍ଟେଜ ଠିଆ ହେବା ଦରକାର ପଡ଼େ । ନିଜର ଗୌରବ ବଜାୟ ରଖିବାକୁ ହେବ; ଭିତରେ ଝରଣା ଶୁଖି ଯାଇଛି, ବାହାରେ ଆଡ଼ମ୍ବର ଦରକାର । ଯେଉଁ କବି ସଂସାରର ସବୁ ବନ୍ଧା ଗତ ଉପରେ କାର୍ତ୍ତିକର ଆଲୁଅ ପରି ଝଟକୁଥିଲେ, ସେ ପୁଣି ବନ୍ଧା ଗତରେ ଛୁଞ୍ଚମାଛ ପରଖ ଦେଖାଇ ତରୁଣ ଦଳ ସଙ୍ଗେ ଆକ୍ରୋଶ ରଖି ଯୁଝିବାକୁ ପ୍ରବୃତ୍ତ ହୁଅନ୍ତି । ଧୂପ ଆଣ, ଅର୍ଘ୍ୟ ଆଣ, ମୋତେ ପୂଜା କର, ଏପରି ଅବସ୍ଥା ମଧ୍ୟ ଆସେ । ଲୋଭ ହୁଏ, ସିଂହାସନ ବଜାୟ ରଖିବା ଲାଗି, ସିଂହାସନ ଚାଲିଗଲେ ବୁଢ଼ା ହଇ ହୁଙ୍କାରେ ଶିଆଳ ରଜା ହୋଇ ଥାଟ ଦେଖାଇବାକୁ ଇଚ୍ଛା ହୁଏ । ଧନ୍ୟ ସେମାନେ, ଯେଉଁମାନେ ଏ ଜୀଅନ୍ତା ମରଣରୁ ରକ୍ଷା ପାଇ ଶକ୍ତି ହ୍ରାସ ହେବା ପୂର୍ବେ ସେପାରିକୁ ପାଲ ମେଲନ୍ତି ।

ଜୀବନଟା ବୁଲ୍‌ବୁଲ୍ ପରି ପ୍ରକାଶ-ସ୍ଥାନ କବି, ହୁଏତ ପୂର୍ବର ପ୍ରେରଣାର-କବାଟରେ କଡ଼ା ହଲାଇ କେତେଥର ଫେରିଯାଏ ।



# କୁଆତରା

ନଥର ଆକାଶ ତଳେ ଧୀର ପବନ. ଥର ଥର ଗ୍ଲଗଲ୍ପ । ଯେପର ଗୋଟାଏ ଦୀର୍ଘଶ୍ୱାସରେ ଗତ ଗୋଟାକର ଜଡ଼ ଅବସାଦ ଝାଡ଼ଝୁଡ଼ ସାର ପ୍ରକୃତ ଉଠିପଡ଼ଲ୍ପ । ଝାପ୍‌ସା ଅନ୍ଧାର ଉପରେ ସ୍ଥିର ଉଜ୍ଜ୍ୱଳ ତାରାଟି । ସେ ଗୋଟିଏ ସଙ୍କେତ କ ନା ! ଆଉ ଘଡ଼କେ ଆଲୁଅ ଆସିବ । ଜମାଟବନ୍ଧା ଅନ୍ଧାର ହାଲୁକା ହୋଇ ଆସିଲ୍‌ଣି; ଖାଲ୍ ନଷ୍ଟଳ ହୋଇ ଗୃହିଁ ରହବାକୁ ହେବ—ଯୁଗ ବଦଳ କପର ଧୀରେ ଧୀରେ ଗ୍ଲଲଛ । ବାହାରର ସ୍ଥିର ଶାନ୍ତ ଆବରଣ ତଳେ ଏହ ଯେଉଁ ବରାଟ ପରବର୍ତ୍ତନ ଗ୍ଲଲଛ, କୁଆତରା ତାର ସାକ୍ଷୀ ।

ଯୁଗ ଯୁଗ ବତଯାଏ; ତଥାପି କୁଆତରା ଉଠୁଥାଏ । ଆଗକୁ ଗୃହିଁ ମନେ ହୁଏ, ଗଲ୍ପ କଥା ଗଲଣି; ଅତୀତର ବନ୍ଧା ଗତ, କୁସଂସ୍କାର, ଏସବୁ ହେବ ଦନେ ସପନ । ସାହତ୍ୟର ଇତହାସରେ ଏଇପର କେତେ ଓଲଟପାଲଟ ଦେଖା ଗଲଣି । ଆଜ ଯେ ନୂଆ, କାଲକୁ ସେ ବାସି; ଆଜ ଯେ ମୁକ୍ତର ଅସ୍ତ୍ର, କାଲ୍‌କୁ ସେ ବନ୍ଧନର ଶିକୁଳ । ବନ୍ଧା ଗତ ବୋଲ ମୂଳରୁ ତ କଛ ନ ଥାଏ; କନ୍ତୁ ତା ବୋଲ ନୂଆ କଛ ନ କରବା ଉଚତ ହେବ ନାହିଁ । କୁଆତରା ଉଠିବା ପଛେ ଭ୍ରମ ହେଉ, ସେ ଭ୍ରମରେ ଚକ ଘୂରୁଛ, ଯୁଗ ବଦଳୁଛ; ତାକୁ ଅସ୍ୱୀକାର କଲେ ବଞ୍ଚିବାଟା ହେବ ଗୋଟିଏ ଫାଙ୍କି । ପ୍ରତ ଯୁଗରେ ସେ ଯୁଗର ଯାହା ଉପଯୁକ୍ତ ପରବର୍ତ୍ତନ, ସେ ପ୍ରୟୋଜନର ଗୁରୁତ୍ୱର ଆପେ ଆନ୍ଦୋଳନ ଆଣିଥାଏ । ସେ ନୂଆ ଭାବ ବରୁଦ୍ଧରେ ପୁଣି ଯୁଗ ବଦଳ ଲଢ଼ାଇ କରେ, ବନ୍ଧାଗତ କୁସଂସ୍କାର ବୋଲ ତାକୁ ଏଡ଼ ଗ୍ଲଲଯାଏ ।

ଓଡ଼ଆ ସାହତ୍ୟ ଯୁଗବଦଳ ସଙ୍ଗେ ତାଳ ରଖି ଗୋଡ଼ ପକାଇପାର ନାହିଁ; ତେଣୁ ଏ ଯୁଗର ଅନ୍ୟାନ୍ୟ ସାହତ୍ୟ ତୁଳନାରେ ଆମ ସାହତ୍ୟ ସାହେବୀ ଟୋପି ଆଗରେ "ମରହଟ୍ଟୀ" ଚୁଟି ପର, ବଙ୍ଗାଳି କେଶପ୍ରସାଧନ ଆଗରେ ତଉଁସବର୍ଣ୍ଣ-ଗୋଜକାଠିବଶିଷ୍ଟ ଜୁଡ଼ା ପର । ଯୁଗକୁ ନୁହେଁ; ତେଣୁ ସାହତ୍ୟ ଦଳବ, ବଦଳାଇବାକୁ ପଡ଼ବ । ଅବକଳ ଏହପର ଦନେ ଉପେନ୍ଦ୍ରକବ ଭାବଥିଲେ, ଦନେ ରାଧାନାଥ ଫକୀରମୋହନ ଭାବଥିଲେ; ପୁଣି ଦନେ 'ସବୁଜ'ଦଳଆ ଭାବଥିଲେ । ସ୍ଥାନେ ସ୍ଥାନେ ଶିକ୍ଷିତ ଲୋକେ ନୂଆ ସାହତ୍ୟ ଗଢ଼ବାକୁ ଚେଷ୍ଟା

କରୁଛନ୍ତି, ଚର୍ଚ୍ଚା କରୁଛନ୍ତି, ବୈଠକ ବସୁଛି, ବକ୍ତୃତା ହେଉଛି । କିନ୍ତୁ ଏ ନୂତନତ୍ୱ ହନକର କାମ ନୁହେଁ, ଘଡ଼ି ନକ୍ଷତ୍ର ଧରି ଆସିପାରେ ନାହିଁ । ତଥାପି ସମ୍ମିଳିତ ଉଦ୍‌ଯୋଗରୁ ଫଳ ଫଳିବ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ଏ ନବ ଉଦ୍‌ବୋଧନକୁ ଦେଖି ମନେ ପଡ଼େ ଆୟରଲାଣ୍ଡର କେଲ୍‌ଟ ଜାଗରଣ (Celtic twilight) କଥା । କେବଳ କେତେଜଣ ଉତ୍ସାହୀ, ଆଙ୍ଗୁଠି ଆଗରେ ଗଣି ହେବେ; କିନ୍ତୁ ସେମାନଙ୍କ ଉଦ୍‌ଯୋଗ ଓ ଶ୍ରମ ସାର୍ଥକ ହେଲା । କେଉଁ ଦୂର ଅତୀତର ବୀର ଗାଥା ଛଡ଼ା ଆୟରଲାଣ୍ଡର ଥିଲା କଅଣ ? କିନ୍ତୁ ୟେଟ୍‌ସ, ସିଞ୍ଜ୍ ଆଦି ଆଇରଲଣ୍ଡ ଦ୍ୱାରା ଅନୁପ୍ରାଣିତ ହେଲେ । ହଠାତ୍ ଗୋଟିଏ ଦଳ ବାନ୍ଧି କେତେଜଣ ଶିକ୍ଷିତ ତରୁଣ କାର୍ଯ୍ୟ ଆରମ୍ଭ କରିଦେଲେ—ସେ ଦେଶର ବଣ ଜଙ୍ଗଲ, ଆକାଶ ନଈ, ଫୁଲଫଳଠାରୁ ଆରମ୍ଭ କରି ସବୁ ସଂସାର ସଂସ୍କୃତ ସାହିତ୍ୟରେ ସ୍ଥାନ ଦେବେ—ଏହି ଉଦ୍ଦେଶ୍ୟରେ । ମହାକବି ୟେଟ୍‌ସଙ୍କ କବିତାର ପ୍ରତ୍ୟେକ ଧାଡ଼ିରେ ଦେଖାଯାଏ ଆୟରଲଣ୍ଡର ପ୍ରତିଛବି, ଶୁଣାଯାଏ ସେ ଦେଶର ହୃତ୍‌ପିଣ୍ଡର ସ୍ପନ୍ଦନ । ଆଇରିଶ୍ ଗ୍ରାମ୍ୟ ଭାଷାରୁ ରତ୍ନ ସଂଗ୍ରହ କରିବା ଲାଗି ସିଞ୍ଜ୍ କି ପରିଶ୍ରମ ନ କରିଛନ୍ତି । ଝିପାଖାତା ଧରି କେବିନ୍‌ରେ, ଶେଡନ୍‌ରେ, ବଣ ଜଙ୍ଗଲରେ କାନ ଡେରି ଶୁଣିଛନ୍ତି— ଭିନ୍ନ ଭିନ୍ନ ଲୋକଙ୍କର ଭିନ୍ନ ଭିନ୍ନ ପରିସ୍ଥିତିରେ ଗ୍ରାମ୍ୟ ଭାଷାଦ୍ୱାରା କିପରି ପ୍ରୟୋଗରେ ଭାବ ପ୍ରକାଶ ହୁଏ । କେତେଥର ଘରୋଇ କଥାରେ ଗାଉଁଲି ପ୍ରୟୋଗ ଶିଖିବା ଲାଗି କବାଟ ଫାଙ୍କରେ କାନପାତି ଶୁଣିଛନ୍ତି । ଏ କଠିନ ପରିଶ୍ରମ ଫଳରେ କେତେ ଆଇରିଶ୍ ଭାଷାରୁ କେତେ ପ୍ରୟୋଗ ସେ ସାହିତ୍ୟରେ ସ୍ଥାନ ଦେଲେ ।

ଓଡ଼ିଆ ସାହିତ୍ୟର ଭବିଷ୍ୟତକୁ ଚାହିଁ କେଲ୍‌ଟ ଜାଗରଣର ସ୍ନିଗ୍ଧ ଆଲୁଅ ମନରେ ଆସେ; କିନ୍ତୁ ସଙ୍ଗେ ସଙ୍ଗେ ମନେପଡ଼େ, ଓଡ଼ିଆ ଜାତି ଆଇରିଶ୍‌ମାନ୍ ନୁହନ୍ତି । ଯେଉଁ ଦେଶର ଭୁଲ ମୂଲିଆ କଲିକତାରୁ ଫେରି ଭଙ୍ଗା ଭଙ୍ଗା ବଙ୍ଗଳାରେ ଜାତଭାଇ ସଙ୍ଗେ କଥା କହେ, ଯେଉଁ ଦେଶର ଶିକ୍ଷିତ ତରୁଣ ଦଶଜଣ ଏକାଠି ଥିଲେ, ଜଣେ ବଙ୍ଗାଳୀ ସଙ୍ଗେ ସମସ୍ତେ ବଙ୍ଗଳା କହନ୍ତି, ଯେଉଁ ଦେଶର ଭାଷା-ପ୍ରୀତି ଏପରି ଯେ ବାପ ମାଙ୍କ ପାଖକୁ ଚିଠି ଲେଖିଲେ ଇଂରାଜୀରେ, ସେ ଦେଶର ସାହିତ୍ୟର ଉଦ୍‌ବୋଧନ ଠିକ୍ କେଲ୍‌ଟିକ୍ ଜାଗରଣ ପରି ନ ହୋଇପାରେ । ଆମରି ସାହିତ୍ୟରୁ ବିଦେଶୀ ଭାଇ ଯେବେ ଆମରି ଛବି ନ ପାଇ, ହୁଏତ ବିଲାତର କୋନୋହଲେ ବଙ୍ଗଦେଶର ଗୋଟାଏ ବିକୃତ ଛବି ପାଇବେ, ତେବେ ଆମ ସାହିତ୍ୟକୁ ପ୍ରଶଂସା କରିବାକୁ କିଛି ରହିଲା ନାହିଁ ।

ସାହିତ୍ୟ ସାରା ବିଶ୍ୱର (Universal) ସତ; କିନ୍ତୁ ସେ ଗୁଣର ଉପାଦାନ ପ୍ରାଦେଶିକ (Local) । ଯେଉଁ "ଓଡ଼ିଆମି" ଏ ସାହିତ୍ୟର ପ୍ରାଣର ସ୍ପନ୍ଦନ, ତାହା ନୂଆ ସାହିତ୍ୟରେ ନାହିଁ । ଆମ ଦେଶର ସାହିତ୍ୟ କାଞ୍ଜି-ତୋରାଣିରୁ ରସ ଟାଣି ବଞ୍ଚିବ, ମାଣ୍ଡିଆ ଯାଉ, କାକରା, ଆରିସା ପିଠାରେ ମୋଟେଇବ । ଏହି ଆକାଶ, ଏଇ ପବନ, ଏଇ ମଳିମୁଣ୍ଡିଆ ଉପାସିଆ ଜାତି—ଆମେ ଏହି ବେଶରେ ବହୂଆ ଖୋସି ଗାମୁଛା ପକାଇ ଜଗତ ଆଗରେ ଠିଆ ହେବା । ପାନ, ଗୁଣ୍ଡି, ପଖାଳ, ଶୁଖୁଆ ଭିତରେ ଆମଠାରେ ଯାହା ମହତ୍ତ୍ୱ, ଯାହା ଆଦର୍ଶ, ତାକୁ ହିଁ ଉଦ୍‌ବୋଧନ କରି ଜଗତକୁ ଦେବା—ଭୂଜଅଣା ଜାତିର ନୂଆ ଆନ୍ଦୋଳନରେ ଉଦ୍‌ବୁଦ୍ଧ ପ୍ରାଣ ସଂସ୍କୃତି ।

ଏହାର ଉଦ୍ଦେଶ୍ୟ ନୁହେଁ ଯେ, ସଂକୀର୍ଣ୍ଣ ପ୍ରାଦେଶିକତାରେ ବନ୍ଧା ରହି ପୁରାତନ ବନ୍ଧାଗତରେ ଚିରଯୁଗ ଆମେ ଗଡ଼ି ଚାଲୁଥିବା—ଆମର ଭଞ୍ଜକବି, ଆମର କୋଣାରକ ରଡ଼ି ଗୁଡ଼ି ଚିରଦିନ ଆକାଶ ଅବନୀ କମ୍ପାଉଥିବା । ଏ ଯୁଗର ରୁଆଡ଼ରି ଉଠିଛି ବୋଲି ବିଶ୍ୱାସ କରିବାକୁ ହେବ; ନବଯୁଗର "ଆବହାଉଆ"ରେ ଯେଉଁ ଭାବ ଉପଯୁକ୍ତ, ତାକୁ ହିଁ ପ୍ରଚାର କରିବାକୁ ହେବ । ନୂଆ ଯୁଗର ବିପ୍ଳବ ଦରକାର, କିନ୍ତୁ ସଦା ଉପରେ ମନେ ରଖିବାକୁ ପଡ଼ିବ ଯେପରି ଏ ବିପ୍ଳବ, ଏ ଆନ୍ଦୋଳନ ହୁଏ ଆମ ନିଜର, ଆମ ନିଜ ସଂସ୍କୃତିମୂଳକ । ସଂକୀର୍ଣ୍ଣ ମନରେ ବୈଦେଶିକତା ପ୍ରାଦେଶିକତା ବ୍ୟବଧାନ ରଖିବା ଯେପରି ଦୁର୍ବଳତା, ଅବିବେକୀ ଦାସ ମନରେ ନୂତନତ୍ୱର ଦୋହାଇ ଦେଇ ନିଜର ସଂସ୍କୃତି ଭୁଲି ବୈଦେଶିକତାର ଚାକଚକ୍ୟ ଆଉ ମୋହରେ ଭାସିଯିବା ସେହିପରି ଦୁର୍ବଳତା ।

ରୁଷ ସାହିତ୍ୟରେ ଗୋଡ଼ଦଳା ମଳିମୁଣ୍ଡିଆ ଗରିବର ଜୀବନ ଆଲୋଚନାର ବିଷୟ ହୋଇଛି । ଦୁଃଖଦାରିଦ୍ର୍ୟ ଯେପରି ହୋଇଛି କଳାଶିଳ୍ପର ଭଣ୍ଡାର ! ଏ ଗୋଟିଏ ନୂଆ ଭାବ । ଏପରି ନୂଆ ଭାବ ଆଖି ଖୋଲିଦିଏ, ହୁଏତ ଶାସ୍ତ୍ରରେ ଯାହା ନିରର୍ଥକ ବନ୍ଧାଗତ ବୋଲି ଲାଗୁଥିଲା, ତା ଉପରେ ଆଲୋକ ପକାଏ । ପତିତା ଜୀବନରେ ପତିବ୍ରତା ଅଛି, ବାହାରକୁ ପବିତ୍ର ସମାଜ-ବନ୍ଧନ ଭିତରେ ଦାସତ୍ୱ, ସ୍ୱାର୍ଥପରତା, ପଙ୍କିଳ ପାପ ଅଛି—ବର୍ଣ୍ଣାଡ଼ ଶ ଏପରି ଧାରଣା ଦିଅନ୍ତି । ଏ ନୂଆ ଚିନ୍ତା ଥରେ କାହାରି ମସ୍ତିଷ୍କରୁ ବାହାରିଲେ ସାରା ସୃଷ୍ଟିରେ ତହିଁରେ ସମସ୍ତଙ୍କ ଅଧିକାର, ତେଣୁ ଯଦି କୌଣସି ଲେଖକ ହୃଦୟରୁ ସହିତ ଏପରି ଭାବକୁ ଅନୁମୋଦନ କରେ, ନୂଆ ତଥ୍ୟର ଉଜ୍ଜ୍ୱଳ ଆଲୋକରେ ନିଜ ଦେଶର ଦୋଷ ଦୁର୍ବଳତା ଦେଖିପାରେ, ତାହା ହେଲେ ଆପତ୍ତି କିଛି ନାହିଁ । କିନ୍ତୁ ଏପରି ନୂଆ

ତଥ୍ୟଦ୍ୱାରା ଓଡ଼ିଶା ଦେଶର ପ୍ରକୃତ ଅବସ୍ଥା ବର୍ଣ୍ଣିତ ଦେଖିବାକୁ ହେବ । ବିଲାତର ସମାଜ ପୃଥକ୍ । ସେମାନଙ୍କ ଦେଶରେ ସମାଜରେ କେବଳ ସ୍ୱତନ୍ତ୍ର ବାଦ (Individualism) । ସେ ଦେଶର ଲୋକେ ସେ ଦେଶର ସମାଜ ଉପରେ ସେମାନଙ୍କ ତଥ୍ୟର ପ୍ରତିଛବି ଦେଖାଇ ଯାଇଛନ୍ତି । ଆମ ଦେଶର ସାହିତ୍ୟରେ ସେହି ବିଦେଶୀ ସମାଜର ଆଲୋଚନା କଲେ କିପରି ଫଳ ହେବ ? ବରଂ ପରିଷ୍କାର ହେବ ନାହିଁ କି ଯେ, ଲେଖକ ନୂଆ "ଆଇଡ଼ିଆ" ହଜମ କରିପାରି ନାହାନ୍ତି, ତେଣୁ ସ୍ଥଳ କାଳ ପାସୋରି ଯେଉଁଠି ତାହା ପ୍ରଯୋଜ୍ୟ ନୁହେଁ, ସେଠି ତାହା ପ୍ରୟୋଗ କରିଛନ୍ତି ? ନୂଆ ଭାବ, ନୂଆ ଚିନ୍ତା ଦେବା ଲାଗି ସାରା ଜଗତ ଗୃହିଁ ବସିଛି । ପୁରାତନ ବନ୍ଧାଗଣରେ ଗଡ଼ି ଗଲେ ବାହାରୁ ସେ ରସ ଗ୍ରହଣ ନ କରିବା ବରଂ ଅନୁଚିତ; କିନ୍ତୁ କୌଣସି ମତ ବା ଭାବ ଗ୍ରହଣ କରିବା ପୂର୍ବରୁ ତହିଁରେ ଅନୁପ୍ରାଣିତ ହେବା ଦରକାର । ପ୍ରାଚୀନତା ବ୍ୟତିରେକେ ନୂତନତ୍ୱ ଗ୍ରହଣ କରିବା ସପକ୍ଷରେ ନିଜ ମନରେ ଦ୍ୱିଧାରେ ଶଙ୍କିତ ନ ହୋଇଥିବା ବିଶ୍ୱାସ ଥିବା ଆବଶ୍ୟକ ହୁଏ । ପ୍ରତ୍ୟାଖ୍ୟାନ ପୂର୍ବରୁ ମଧ୍ୟ ସେହିପରି । ତାହା ନ କରି କେବଳ ନୂତନତ୍ୱ ମୋହରେ ବୁଦ୍ଧିବୃତ୍ତିକୁ ଏକାବେଳକେ ଲୁପ୍ତ ରଖିବା ବରଂ ଗର୍ହିତ ।

ଆଜିକାଲି ଦେଖାଯାଏ, ଅନେକ ଲେଖକଙ୍କ ଭାଷାରେ ବଙ୍ଗଳାର ମାତ୍ରା ଟିକିଏ ବେଶି । କଥାବାର୍ତ୍ତା କଲାବେଳେ ଯେପରି ଇଣ୍ଡୋ ଜର୍ମାନିକ୍ 'ଅ'କାର ଶବ୍ଦକୁ ପଦ ଶେଷରେ ବାଦ୍ ଦିଆଯାଇଥାଏ, ଭାଷାରେ ସେହିପରି ଓଡ଼ିଆ ଭାଷାର ମୌଳିକତା ପରିବର୍ତ୍ତେ ଅଯଥା ବଙ୍ଗପ୍ରଭାବ ଦେଖାଯାଏ । ଯେଉଁ ଶବ୍ଦ ଓଡ଼ିଆରେ ନାହିଁ, ଯେଉଁ ପ୍ରୟୋଗ ଅନ୍ୟାନ୍ୟ ଭାଷାରେ ଅଛି, ହୁଏତ ଓଡ଼ିଆରେ ନାହିଁ— ସର୍ବସାଧାରଣଙ୍କ ସମ୍ମତିକ୍ରମେ ଅନ୍ୟ ଭାଷାରୁ ସେ ଶବ୍ଦ ଆଣିବା ବରଂ ସ୍ୱାଭାବିକ । "ରେଲ୍‌ଗାଡ଼ି ଲାଇନ୍ ଉପରେ ଗଲେ" ନ କହି "ବାଷ୍ପୀୟ ଶକଟ ଲୌହବର୍ତ୍ମ ଉପରେ..." ଇତ୍ୟାଦି କହିବା ହାସ୍ୟାସ୍ପଦ । କାହିଁକି ନା "ରେଲ୍" ଓ "ଲାଇନ୍" ଏ ଦୁଇଟି ଆବଶ୍ୟକ ଶବ୍ଦ ସର୍ବସାଧାରଣଙ୍କ ଇଚ୍ଛା ଅନୁସାରେ ସାଧାରଣ ଭାଷାରେ ସ୍ଥାନ ପାଇପାରିଛି । ଓଡ଼ିଆରେ ଏପରି ଅନେକ ଶବ୍ଦର ପ୍ରୟୋଗ ଅଛି, ଇଂରାଜୀରୁ ଅନୁବାଦ କରିବା ନିମନ୍ତେ ଅନେକ ନୂଆ ଶବ୍ଦ ସୃଷ୍ଟି କରିବା ଆବଶ୍ୟକ ହେଉଛି, କିନ୍ତୁ ଯେଉଁ ସ୍ଥଳରେ ଶବ୍ଦ ଅଛି, ଶବ୍ଦ କାଠିଣ ବା ବ୍ୟବହାର ଲାଗି ଅସଜ ନୁହେଁ, ସେଠି ବଙ୍ଗଳାକୁ ଓଡ଼ିଆ ଅକ୍ଷରରେ ଛପାଇବାର ଆଦୌ ଆବଶ୍ୟକ ନାହିଁ ।

ବଙ୍ଗଳାଠାରୁ ଅଧିକ ଭରି ସଂସ୍କୃତକୁ । ଓଡ଼ିଆ ସହିତ ସଂସ୍କୃତର ଯେତେ ସମ୍ବନ୍ଧ ଥିଲେ ମଧ୍ୟ ଓଡ଼ିଆ ଭାଷା ଗୋଟିଏ ସ୍ୱତନ୍ତ୍ର ଭାଷା । ଓଡ଼ିଆ ସଂସ୍କୃତ ନୁହେଁ । ପ୍ରତ୍ୟେକ ପ୍ରୟୋଗ ଲାଗି ସଂସ୍କୃତ ଉପରେ ନିର୍ଭର କରିବା ଗୋଟାଏ ଅଭ୍ୟାସ ହୋଇଯାଇଛି, ଫଳରେ ଓଡ଼ିଆ ଭାଷାକୁ ସଂସ୍କୃତର ଉଧାର ଶୁଝିବାକୁ ହେଲେ ଏ ଭାଷା ଦେବାଳିଆ ହୋଇଯିବ । ସଂସ୍କୃତ ଓଡ଼ିଆ ଭିତରେ ବ୍ୟବଧାନ କେଉଁଠି ? ଗାଉଁଲି କଥା ଓଡ଼ିଆ ଭାଷାରୁ ଓଡ଼ିଆର ଭିନ୍ନ ଭିନ୍ନ ପ୍ରାଦେଶିକ ଭାଷାରୁ କୌଣସି ନୂଆ ପ୍ରୟୋଗ ଆସିପାରେ କି ନା, ଏ ବିଷୟରେ ଅନୁସନ୍ଧାନ ହେବା ପ୍ରୟୋଜନ । ଯେ ପର୍ଯ୍ୟନ୍ତ ଦେଶର ଦଶଜଣ ଗୋଟିଏ ପ୍ରୟୋଗ-ପ୍ରଣାଳୀରେ ଭାବ-ପ୍ରକାଶ କରିବାଲାଗି ଏକମତ, ସେତେବେଳେ ସେମାନଙ୍କ ପ୍ରୟୋଗ ସଂସ୍କୃତ ବ୍ୟାକରଣ ଆଖିରେ ବେ-ଆଇନ୍ ହେଲେ ମଧ୍ୟ ସେ ଭାଷା । ଗାଉଁଲି ବୋଲିର ଉପଯୋଗିତା ବିଦେଶୀ ସାହିତ୍ୟରୁ ପରିଷ୍କାର ପ୍ରମାଣ ହୁଏ । ଗାଉଁଲି ଭାଷା ଭିତରୁ ବାଛି ବାଛି କପର ରତ୍ନ-ସଂଗ୍ରହ କରିବାକୁ ହେବ, ସେ ବିଷୟରେ ଇଉରୋପ-ସାହିତ୍ୟ, ଏପରି କି ବଙ୍ଗଳା ସାହିତ୍ୟ ମଧ୍ୟ ସାକ୍ଷୀ ।

ବୈଦେଶିକତାର ଅପବ୍ୟବହାର ଯୋଗୁଁ ଯେପରି ଲୋକହସା ଫଳ ଫଳୁଛି, ତାର ଉଦାହରଣ ମିଳେ ଗୋଟିଏ ଶ୍ରେଣୀର କବିତାରେ । ଓଡ଼ିଶାରେ ବେଳେ ବେଳେ ଗୋଟିଏ ଗୋଟିଏ କବିତା ଦେଖାଯାଏ, ଧାଡ଼ିରେ ଯାହାର ଆକାର ସୁନ୍ଦର, ଲିଖନଭଙ୍ଗୀ ବିଚିତ୍ର ଓ ଶବ୍ଦମାନଙ୍କର ସଂଖ୍ୟା ଚମତ୍କାର ଉପାୟରେ ବିଷମ । ଇଂରାଜୀରେ ଭର୍ସଲିବାର୍ ଦଳ ଯେ କବିତାର ଲିଖନଭଙ୍ଗୀ ବଦଳାଇଥିଲେ, ତା ପଛରେ ସେମାନଙ୍କର ଯୁକ୍ତି ଥିଲା, ତଥ୍ୟ ଥିଲା, ମନସ୍ତତ୍ତ୍ୱ ଆଲୋଚନା କରି ସାହିତ୍ୟରେ ସେମାନେ ତା ପ୍ରୟୋଗ କରୁଥିଲେ । ପ୍ରବଣତା ଯେଉଁ ଶବ୍ଦକୁ ବିଚିତ୍ର ଭଙ୍ଗୀରେ ଭାଙ୍ଗି ଦେଉଥିଲେ, ତହିଁରେ ମଧ୍ୟ ଭିତରି ଛନ୍ଦ ଥିଲା; କିନ୍ତୁ କୌଣସି ଯୁକ୍ତି ତଥ୍ୟ ନ ଥାଇ କେବଳ ନୂଆ ଦିଶିବାପାଇଁ ପଦ ଲେଖାଯାଏ—

"ତୁମେ
କିଏ ଗୋ ଯାଉଛ କିଆଁ ଆଜି
ଏତେ ଡେରିରେ
ମୁଁ ପଥ ଜାଗି ବସିଛୁ
ଏଇ
ଓହ୍ଲାଇଲେ ବାରିଆଡ଼େ ।"

ତା ହେଲେ ବୈଚିତ୍ର୍ୟ ଆଇପାରେ, ଉପାଦେୟତା ନାହିଁ ।

ଉପନ୍ୟାସ ଲେଖିବା ବିଷୟରେ ବିଦେଶରୁ କି ଉପକାର ମିଳେ ? ଦେଖିବାକୁ ଗଲେ ଉପନ୍ୟାସ ମାତ୍ରକେ ବିଦେଶରୁ ଆମଦାନି । ସେ ଦେଶରେ ଉପନ୍ୟାସର ପଦ୍ଧତି କେତେ ଥର ବଦଳିଲାଣି; କିନ୍ତୁ ଆମେ ସେହି ଜୀର୍ଣ୍ଣ "ବଡ଼ ଗଳ୍ପ"କୁ କାମୁଡ଼ି ଧରିଥାଉଁ । ଯେ କୌଣସି ଉପାୟରେ ପ୍ଲଟ୍‌ଟି ଚହଟ ଚକ୍‌କଣ କରିବାକୁ ହେବ, ଏପରି ଧାରଣା ଆମ ମନରେ ବସା ବାନ୍ଧିଛି । କିନ୍ତୁ ପ୍ଲଟର ସେପରି ମୂଲ୍ୟ ଆଉ ନାହିଁ । ପ୍ଲଟ୍ "ଅସାଧାରଣ" ହେଲେ ଅବାସ୍ତବ ହୋଇପାରେ । କାଳ୍ପନିକ ଉପନ୍ୟାସକୁ ଛାଡ଼ି ରିଏଲିଷ୍ଟିକ୍ ଆର୍ଟ ର ବୃତ୍ତୀ ଅନୁରୂଣୀ କମ୍ପା ପଶ୍ଚିମହଲରେ ବନ୍ଧା ପଡ଼େ ନାହିଁ । ପ୍ଲଟ୍‌ର ନିଜର କୌଣସି ମୂଲ୍ୟ ନାହିଁ, ଉପନ୍ୟାସର ଅନ୍ୟାନ୍ୟ ଉପାଦାନର ସାପେକ୍ଷତାରେ ପ୍ଲଟ୍‌ର ମୂଲ୍ୟ । ପ୍ଲଟ୍ ବା କଅଣ ? ଗୋଟିଏ ଲୋକର ଜୀବନକାଳ କଣ ଯଥେଷ୍ଟ ପ୍ଲଟ୍ ନୁହେଁ ? ଘଟଣା ଦୁଇପ୍ରକାର ହୋଇପାରେ—ଗୋଟିଏ ଲୋକର ବାହାରର ଘଟଣା ସଙ୍ଗେ ସମ୍ବନ୍ଧ ହେତୁ କ୍ରିୟାକଳାପରୁ, ଅନ୍ୟଟି ଲୋକର ମନ ଭିତରକୁ ଆଲୋଚନା କରି ଦେଖିଲେ ତାର ମନର ଭାବର କ୍ରମ ବିକାଶ ଓ ଅବସ୍ଥାରୁ । ଏହି ଅପର ପ୍ରକାର ପ୍ଲଟ୍ ଅନ୍ତର୍ଦୃଷ୍ଟି କାରଣଯୋଗୁ ଅଧିକ ଆୟାସସାଧ୍ୟ, କିନ୍ତୁ ଅଧିକ ଆଧୁନିକ । ବଙ୍ଗ-ସାହିତ୍ୟରେ ମାମୁଲି 'ପ୍ରେମ-ପ୍ଲଟ୍', 'ହା-ହୁତାଶ ପ୍ଲଟ୍' ପ୍ରଭୃତି ଶ୍ରଦ୍ଧା ଏ ଦେଶରେ ଅସାଧାରଣ ନୁହେଁ; କିନ୍ତୁ ଇଉରୋପୀୟ ସାହିତ୍ୟର ବର୍ତ୍ତମାନ ଲେଖକମାନେ "ଆଭ୍ୟନ୍ତରୀଣ ଗତି" ବିଷୟରେ ଶିକ୍ଷା ପାଇ ଅତି ସାଧାରଣ ବାହାର ଘଟଣା ଉପରେ ମନୋଭାବର କ୍ରମ ଅନୁସରି ଯେପରି ଉପନ୍ୟାସ ଲେଖିଲେଣି, ତାହା ଅନୁକରଣ କରିବା ପ୍ରୟାସ ଆମର ନାହିଁ । ବିଭୂତିଭୂଷଣ ବନ୍ଦ୍ୟୋପାଧ୍ୟାୟ କେବଳ ଦୁଇଟି ଗ୍ରାମ୍ୟ ଶିଶୁଙ୍କ ମନର ଭାବ ଉପରେ ଉପନ୍ୟାସ ଲେଖିଛନ୍ତି । ସେ ଦୁହେଁ ଜନ୍ମ ହେବା ଦିନୁଁ ଯାହା ଦେଖିଲେ, କ୍ରମେ ଅନୁଭୂତି କିପରି ବଢ଼ିଲା, ଶିଶୁ ମନରେ ଅଭିଜ୍ଞତାର ଗୁଣରେ କିପରି ପ୍ରତିକ୍ରିୟା ହୁଏ, ସେହି ବିଷୟ ଉପନ୍ୟାସରେ ବ୍ୟାଖ୍ୟା କରି ଏକ ନିଃଶ୍ୱାସରେ ପଢ଼ିବା ଭଳି ବିରାଟ ଉପନ୍ୟାସ ଲେଖିଛନ୍ତି । ଅଚିନ୍ତ୍ୟ ସେନ୍ ପ୍ରଭୃତି ତରୁଣ ଦଳରେ ନବଯୁଗର ଏପରି ଲେଖା ପ୍ରାୟ ଦେଖିବାକୁ ମିଳେ । ଅଚିନ୍ତ୍ୟ ବାବୁ ପୁଣି ଭାଷାରେ ବିପ୍ଳବ ଆଣିଛନ୍ତି, ଆବର୍ଜନା ଅଦରକାରୀ ଅଂଶ ବାଦ୍ ଦେଇ ଅଳ୍ପ ଲେଖାରେ କିପରି ଅଧିକ ପ୍ରକାଶ ହେବ, ସେ ଉଦ୍ୟମରେ ଉନ୍ମତ୍ତ କରିଛନ୍ତି । ସେମାନେ ନିଜର ମସ୍ତିଷ୍କ ଖର୍ଚ୍ଚ କରୁଛନ୍ତି । ଆମେ ତାଙ୍କର ଉଦ୍ୟମରୁ କିଛି ନ ଶିଖି କେବଳ ନ ଶିଖିବା କଥା ଶିଖୁଥାଉଁ । ପ୍ଲଟ୍ ଧରିଲେ ମନୁଷ୍ୟର ଜୀବନକାଳଠାରୁ ଉପାଦେୟ ଆଉ କିଛି ନାହିଁ କହିଲେ ଚଳେ ।

ବଡ଼ ବଡ଼ ଔପନ୍ୟାସିକମାନେ ଏପରି ପୂର୍ଣ୍ଣାଙ୍ଗ ଉପନ୍ୟାସ ଲେଖିଥାନ୍ତି, ଯହିଁରୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜମ ପରିଣତିର ପ୍ରକୃତ ଚିତ୍ର ମିଳେ । ଥ୍ରେମିଁ ୟା ରୋଲିଁ ୟା ଲେଖିଲେ ଜନ୍ କ୍ରିଷ୍ଟୋଫରଙ୍କ ଜୀବନୀ; ଗଲ୍‌ସ୍ ଉଆର୍ଦ୍ଦି କେବଳ ଜଣେ ଲୋକର ଜୀବନକାଳ ବର୍ଣ୍ଣି ବସିଲେ ତା ନୁହେଁ, ମନୁଷ୍ୟ ଜୀବନରେ ସୌନ୍ଦର୍ଯ୍ୟର ପ୍ରଭାବ ବର୍ଣ୍ଣିବାକୁ ଯାଇ ସେ ଗୋଟିଏ ଯୁଗର ଉପନ୍ୟାସ ଲେଖି-ବସିଲେ । ସେମାନଙ୍କ ପରି ବଙ୍ଗଳାର ଶରତ୍‌ଚନ୍ଦ୍ର ଲେଖିଲେ "ଶ୍ରୀକାନ୍ତ ।" ଏପରି ପ୍ରୟାସରେ ବହୁ ଆୟାସ ପ୍ରୟୋଜନ ହୁଏ ସତ; କିନ୍ତୁ କାର୍ଯ୍ୟ ପୂର୍ଣ୍ଣାଙ୍ଗ ହୁଏ । ଜୀବନର ଗୋଟିଏ ବଡ଼ ଉଦ୍ଦେଶ୍ୟ ପଛରେ ଗୋଡ଼ାଇ ଶେଷରେ ଫେଲ୍ ହୋଇ ମରିବା ବରଂ ଭଲ; ଦିଗୋଟି ଶ୍ରେଷ୍ଠ ଉଦ୍ଦେଶ୍ୟ ସାଧି ଶେଷରେ ସଙ୍କୀର୍ଣ୍ଣତା ଭିତରେ ବନ୍ଦୀ ହୋଇ ରହିବା ଭଲ ନୁହେଁ । ଓଡ଼ିଶାର କୁଅତରି ତଳେ ଏପରି ଅନ୍ତର୍ଦୃଷ୍ଟି ଆବଶ୍ୟକ ହେଉଛି । ଗୋଟିଏ ପୂର୍ଣ୍ଣାଙ୍ଗ ଜୀବନ ବର୍ଣ୍ଣି ବସିଲେ କେତେ ପ୍ରକାର ସମସ୍ୟା, ଚରିତ୍ର, ରସ ଆସି ପହଞ୍ଚିବ; କେବଳ ସହଜ ବାଟରେ ଗଲେ ଭବିଷ୍ୟତ୍‌ରେ ବିଶେଷ ଲାଭ ହେବାର ଆଶା ନାହିଁ ।

ଓଡ଼ିଶାର ଯେ କୌଣସି ପରିସ୍ଥିତିରୁ ଯେ କୌଣସି ପ୍ଲଟ୍ ଉଠାଇ ନେଇ ସ୍ରଷ୍ଟା-ମନରେ ବିଶ୍ଳେଷଣ କରି ଦେଖିଲେ କିପରି ଉପନ୍ୟାସ ହୁଅନ୍ତା ? ଏ ପ୍ରସଙ୍ଗରେ କାଳିନ୍ଦୀ ବାବୁଙ୍କ "ମାଟିର ମଣିଷ" ଓ କାହ୍ନୁଚରଣ ମହାନ୍ତିଙ୍କ "ଦୁଇଅ.ରି ଦାଉ" ପ୍ରଶଂସାଯୋଗ୍ୟ । ଇଂରାଜୀରେ ଜେମ୍‌ସ୍ ଜଏସ୍ "ୟୁଲିସେସ୍" ବୋଲି ଯେଉଁ ବିରାଟ ଉପନ୍ୟାସ ଲେଖିଛନ୍ତି, ତାର ଘଟଣାର ସମୟକାଳ ହେଉଛି ଗୋଟିଏ ମାତ୍ର ଦିନ ! ଗୋଟିଏ ଅଖଣ୍ଡ impression ଆଣି ଦେବାକୁ ହେବ, ସେ ଯେଉଁ ଉପାୟରେ ହେଉ—ବର୍ଣ୍ଣିତ ଘଟଣାର କାଳ ଦୁଇଘଣ୍ଟା ହେଉ ବା ଦୁଇ ଯୁଗ ହେଉ । ନବଯୁଗର ସାହିତ୍ୟ ଲେଖିବା ପାଇଁ କେବଳ ଅନ୍ୟମାନଙ୍କୁ ଅପେକ୍ଷା କରି ବସିବାର ଆବଶ୍ୟକତା ନାହିଁ । ମଣିଷର ଯାହା ସାଧାରଣ ଦାବୀ— ସ୍ୱାଧୀନ ଚିନ୍ତା, ତାହା ବଳରେ ନିଜେ ନୂତନ କିଛି କରିଯାଇପାରେ, ଅନ୍ୟ-ମାନଙ୍କର ଆଦର୍ଶ ଭିନ୍ନ ଉପାୟରେ ନିରେଖି ଦେଖିବାକୁ ବାଟ ଖୋଲିଦିଏ ଯାହା । ଯଦି ସ୍ୱାଧୀନ ଚିନ୍ତାରୁ ଯାହା ମିଳିଲା ତହିଁରେ ସ୍ୱାଧୀନ ମତ ବିଶ୍ୱାସ କରିପାରିଲା, ତେବେ ସାହସ ବାନ୍ଧି ଅତି ନୂତନ (Ultra modern) ସାହିତ୍ୟଦ୍ୱାରା ଦେଶକୁ ଅଗ୍ରଗତିରେ ଚଳାଇବା ଉଚିତ । ଅଗ୍ରଗତି ନିର୍ଭର କରେ ସ୍ୱାଧୀନତା ଉପରେ, ଦାସମନ ଦ୍ୱାରା କିଛି ଫଳ ନାହିଁ ।

ଏ ଯୁଗରେ ବିଜ୍ଞାନର ଉନ୍ନତି ଯୋଗୁ ସାହିତ୍ୟରେ ଗୋଟିଏ ନୂତନ ଚିନ୍ତାଧାରା ଆସିଛି । ଘଟଣା ପରୀକ୍ଷା କରି ପ୍ରତ୍ୟକ୍ଷ ଓ ବହିସ୍ଥ ଅନୁଶୀଳନ ଭିତରୁ

ସଜ୍ଜୀକରଣଦ୍ୱାରା ଆଇନ ବାହାର କରିବା ଯେପରି ବିଜ୍ଞାନର ସାଧାରଣ ଉପାୟ, କୌଣସି ଘଟଣାକୁ ବିଶ୍ଳେଷଣ କରି ଦେଖିବା, ଆଲୋଚନା କରିବା ସେହିପରି ବିଜ୍ଞାପନର ଆମୋଦ । ଏପରି କ୍ରିୟା ପ୍ରତିକ୍ରିୟା କରେଷି କରି ବୈଜ୍ଞାନିକ ଉପାୟ ଧରିବାଦ୍ୱାରା ନବଯୁଗର ସାହିତ୍ୟ କେତେଗୁଡ଼ାଏ ସମସ୍ୟା ପାଖରେ ପହଞ୍ଚିଛି—ମନୁଷ୍ୟ ଜୀବନର ସମସ୍ୟା, ପରିସ୍ଥିତିର ସମସ୍ୟା—ଇତ୍ୟାଦି ।

ଗତ ମହାଯୁଦ୍ଧ ପରେ ଯେତେବେଳେ ଇଉରୋପର ପୁରାତନ ସମାଜର ଧ୍ୱଂସ ହେଲା, ପୂର୍ବର ସୁଶୃଙ୍ଖଳ ବନ୍ଧା ଗତ ଛିନ୍ନ ଭିନ୍ନ ହେଲା, ସେତେବେଳେ ଇଉରୋପ ଦେଖିଲା, ଗୋଡ଼ ତଳୁ ମାଟି ଖସି ଯାଉଛି; ଆଶ୍ରୟ ନେବାକୁ ପୂର୍ବର ସଂସ୍କାର ଆଉ ନାହିଁ । ନୂଆ ସୃଷ୍ଟି, ନୂଆ ସଂସ୍କାର ପାଇଁ ସେତେବେଳେ ଚେଷ୍ଟା କରାହେଲା । ବିଭିନ୍ନ କାରଣରୁ ଯେଉଁ ସମସ୍ୟାଗୁଡ଼ିକ ଆସିଥିଲା, ତାର ସମାଧାନ ଆବଶ୍ୟକ ହେଲା । ଆମ ଦେଶରେ ଯେ ସମସ୍ୟା ନାହିଁ, ଏପରି ନୁହେଁ; ବରଂ ଆମ ସାହିତ୍ୟରେ ସମସ୍ୟାର ଅଭାବ ଏ ଯୁଗର ସମସ୍ୟାସାର ସାହିତ୍ୟ ତୁଳନାରେ ଅଯଥା ପ୍ରାଚୀନ । କିନ୍ତୁ ବିଦେଶର ସମସ୍ୟା ଆମ ଦେଶରେ ନୁହେଁ, ଏ ପରିସ୍ଥିତିରେ ଏପର୍ଯ୍ୟନ୍ତ ହୋଇପାରି ନାହିଁ । ଆମ ଦେଶର, ଆମ ଜାତିର ବହୁତ ସମସ୍ୟା ଅଛି—ଉଦର-ସମସ୍ୟା, ନାରୀ-ସମସ୍ୟା, ହରିଜନ-ସମସ୍ୟା, ବିବାହର ଯୌତୁକ ସମସ୍ୟା—ଇତ୍ୟାଦି । କିନ୍ତୁ ଶ୍ରମିକପକ୍ଷ ସମସ୍ୟା, କଳକାରଖାନା-ପ୍ରପୀଡ଼ିତ ଦେଶର ବିକୃତ ଜୀବନଯାପନର ସମସ୍ୟା, ଏସବୁ ଆମ ଦେଶର ନୁହେଁ । ଚାକିରି ଲାଗି ବିଦେଶକୁ ଯିବା କାରଣରୁ ଗ୍ରାମ ଶୂନ୍ଶାନ୍—ପରିସ୍ଥିତିର ପ୍ରଭାବ ପାଇ କ୍ରମେ କୁଟୁମ୍ବ ସଂଖ୍ୟା କମି "ସ୍ୱତନ୍ତ୍ରବାଦ" ଆଡ଼କୁ ଅଗ୍ରସର କରୁଥାଇଁ । ଏପରି ଅବସ୍ଥାରେ ଆମରି ବୋଝ ଆମକୁ ବେଶୀ । ମଫସଲର ଗରିବ ଚଷା ଶୀତରେ ଥରି ଥରି, ଅଖା ଭିତରେ ଧୂଆଁ ମଝିରେ ରାତି କଟାଉଛି, କଇବନ୍ଧ ଯୋଗୁଁ ବାଟି ବାଟି ଜମି ବାଲିବନ୍ତ ହୋଇ ଯାଉଛି । ଏସବୁ ଜୀବନମରଣର ସମସ୍ୟା କଣ ଆମ ସାହିତ୍ୟରେ ଦେଖାଯାଏ ? ଖାଲି ପ୍ରେମ, ବିଚ୍ଛେଦ, ପୁଣି ପ୍ରେମ, ଆତୁର ପ୍ରେମ, ଏହିପରି ହତଭାଗ୍ୟ ଦାମ୍ପତିଙ୍କର ସମସ୍ୟାରେ ସାହିତ୍ୟ ଆମର ଭରାଭରି ।

ନୂଆ ଓଡ଼ିଶାର କୁଅତରାକୁ ରାହିଁ ଗୋଟିଏ କଥା ବାରମ୍ବାର ମନେ ପଡ଼େ—ଆମ ଦେଶର ସାହିତ୍ୟିକମାନେ ଦେଶର ସାଧାରଣ ଲୋକଙ୍କୁ ବୋଧହୁଏ ଏପର୍ଯ୍ୟନ୍ତ ଛୁଇଁପାରି ନାହାନ୍ତି । ଦେଶର ଦଶଜଣଙ୍କ ପାଖରେ ସାହିତ୍ୟ ପହଞ୍ଚି ପାରିବା ଲାଗି ସେମାନଙ୍କ ଶିକ୍ଷା । ସମ୍ପ୍ରତି ମୁଦ୍ରାଦୋଷ ଦାୟୀ, ସାହିତ୍ୟର ନିଜ ରୂପ ସେହିପରି ଦାୟୀ । ଭାଷାର ସାଧାରଣ ମାପକାଠି ଏପର୍ଯ୍ୟନ୍ତ ହେଲା ନାହିଁ,

ବଙ୍ଗଳା ଲେଖିବେ ନା ସଂସ୍କୃତ ଲେଖିବେ ଏପର୍ଯ୍ୟନ୍ତ ସ୍ଥିର ହୋଇପାରିନାହିଁ । ଉଭୟେ ଦେଶର "ଓଡ଼ିଆ" ଠାରୁ ବହୁତ ଦୂରରେ ।

ଭାଷା କାଳ୍ପନିକ ନ ହୋଇ ଦେଶର ପ୍ରତିନିଧିସ୍ୱରୂପ ହେବା ଦରକାର । ଓଡ଼ିଆରେ ବର୍ତ୍ତି, ଭାବ, ବର୍ଷ ଇସ୍କୁଲ କଲେଜରେ ଯେପରି ଇଂରାଜୀରେ ଭାବ-ପ୍ରକାଶ କରିବାକୁ ହୁଏ, ସେହିପରି ଓଡ଼ିଆ ଶିଶୁ ଦେଶଭାଷାରେ ବଡ଼ ମାନସମ୍ମାନ ପାଇଁ ସଂସ୍କୃତ ମିଶା ବ୍ୟାକରଣୀ ଭାଷାରେ ଭାବ ପ୍ରକାଶ କରେ; ନୋହିଲେ ହାଲ୍ ଫେଶନୀ ଲେଖନଭଙ୍ଗୀରେ ବଙ୍ଗଳା ଆଡ଼କୁ ଢଳିପଡ଼େ; ତେଣୁ ଦେଶର ଦଶ-ଲୋକେ ଯେଉଁ ଭାଷା ବୁଝନ୍ତି ବା ଯେଉଁ ଭାଷାର ପୋଷକତା କରନ୍ତି, ତାଠାରୁ ଦୂରକୁ ଚାଲିଯାଏ । ଗରିବ ମୂଲିଆ କି ଆଶାରେ ସାହିତ୍ୟ ପଢ଼ିବ ? ତାର ପେଜ ତୋରାଣି ତ ତହିଁରେ ନାହିଁ; ଚା ଟେବୁଲ, କୋଠା ମଟରର ବିଷୟ-ବସ୍ତୁ ତାର କଅଣ ହେବ ? ତାର ସଂସ୍କୃତି (Tradition) ସମସ୍ୟା ଚିନ୍ତା ତହିଁରେ ନାହିଁ । ଯେଉଁ ବାସ୍ତବ ଜୀବନରେ ସେ ବଞ୍ଚୁଛି, ସେ କଥା ଏ ସାହିତ୍ୟ କହୁନାହିଁ । ତାର ଦୁଃଖ ଦୁର୍ଦ୍ଦଶା, ସମସ୍ୟା ଅଭିଯୋଗର ପୋଷକତା ଏ ସାହିତ୍ୟ କରୁନାହିଁ । ତେଣୁ ଆଉ କଣ ? ଜୀବନର ଆଦର୍ଶ ଲାଗି ଦାର୍ଢ୍ୟତାଭକ୍ତିରୁ ସେ ଯାହା ପାଏ, ତାର ଦୁର୍ବଳତାର ଅତିରଞ୍ଜିତ ଚିତ୍ର ବୈଷ୍ଣବ ପାଣି ଗୀତ-ନାଟ୍ୟରେ ସେ ଯାହା ଦେଖିଥାଏ, ତହିଁରେ ତାର ସାହିତ୍ୟିକ କ୍ଷୁଧା ସେ ମେଣ୍ଟାଏ । ନବଯୁଗର ଓଡ଼ିଆ ସାହିତ୍ୟର ଏ ଅପ୍ରକାଶିତ ସତ୍ୟ ଆଡ଼କୁ ପ୍ରଥମେ ଆଖି ପକାଇବା ଦରକାର । ରୁଷ-ସାହିତ୍ୟରୁ କେବଳ ପିଲ-ଭୁଲାଣି ଅସାଧାରଣ ବିଷୟ-ବସ୍ତୁ ମିଳେ ନାହିଁ । ନୀଚୁଦଳି ନୀଚ (?) ଅତ୍ୟାଚାରିତ ଦେଶର ଦଶଜଣଙ୍କ (masses) ଗର୍ବିତ ମୂର୍ତ୍ତି ତାର ଅସଲ ବିଷୟ-ବସ୍ତୁ ।

## ବିପ୍ଳବୀ ନବଯୁଗର କୁଆତାରା !

ସବୁ ଯୁଗରେ ଲୋକେ ଭାବିଥାନ୍ତି, ସେମାନେ ବିପ୍ଳବୀ । ଅତୀତକୁ ଅନାଇ କହନ୍ତି, ଅନ୍ଧାର ତୁଟି ଯାଉଛି, ଆଲୁଅ ଆସିବ, ସବୁ ଯୁଗରେ ପୁଣି ସେମାନଙ୍କ ସଂସ୍କୃତିକୁ ପର ଯୁଗ କହେ, "ମର୍ହଟି" । ଦୀପ ଆଲୁଅ ବଡ଼ ହୋଇ ନଲ୍ଟଣ ଆଲୁଅ ଆସେ; ତା ପରେ ଆସେ—ବିଜୁଳିବତି ।

କିନ୍ତୁ କୁଆତାରା ନିଭେ ନାହିଁ । ହୁଏତ ଗୋଟାଏ ଭ୍ରାନ୍ତି; ତଥାପି—ସୃଷ୍ଟିର ଜନ୍ମ ଗଡ଼ି ଚାଲେ, କୁଆତାରା ସବୁଦିନେ ଉଜ୍ଜ୍ୱଳ !



# କାରୁଣୀ

ଅଗନାଗ୍ନି ବନସ୍ତ ଭିତରେ ସୂର୍ପଣଖା ଭେଟିଲା ରାମ ଲକ୍ଷ୍ମଣଙ୍କୁ । ଜାତରେ ରାକ୍ଷସୀ, ଏଡ଼େ ମୁହଁ, ଅଲରା ବାଳ, ନଖ ସତେ କି ଶୂଳ ପଟେ ଲେଖାଁ ! କି ବିକଟାଳ ! କହିଲା କଣ ନା ବାହା ହେବ । ରାମଚନ୍ଦ୍ର ତ ହସି ହସି ଗଡ଼ିଲେ । "ଭାଇ ଲଇଷଣ, କାଲ ହବ ନାହିଁ, ହବ ନାହିଁ । ଦବୁ ନାସା ଦାନ, ଦବୁଟି ।" ଲକ୍ଷ୍ମଣ ଏଣେ ସୁରୁରେଇ ସୁରୁରେଇ ଖଣ୍ଡା ଉଞ୍ଚି ନାକ ଉପରେ କଷି ମାରିଲେ ସ୍ଟେଟେ ଯେ, ନାକ ଏକା ଅରକେ ଦ'ଫାଳ ।

ଯାହା ଶୁଣିଛୁ, କଟିଆ ଓଷ୍ଠ ଉଠି କହିଲା, "ଭଲ ହେଲା—ଆଚ୍ଛା । ନାସଦାନ, ଯା ।" ସମସ୍ତେ ହୁହାଇ ହୁହାଇ ହସିଲେ । ସବୁ ବୁଝାଳ ବୁଝିଲେ, ନାକଟା କାଟିବା ଅନ୍ତତଃ ଦଶଥର ଉଚିତ ହୋଇଛି । ଭଲ ନାକ, ଭଲ କଟା ଭଲ ସୂର୍ପଣଖା ନାକ କଟା । ସମସ୍ତଙ୍କ ସହାନୁଭୂତି ପଡ଼ିଲା ରାମଲକ୍ଷ୍ମଣଙ୍କ ଉପରେ ।

ହଜାର ହଜାର ବର୍ଷ ବିତିଗଲା । ସୂର୍ପଣଖା ଜନ୍ମ ହେଲା ନରିପୁର ମହାଜନ ଘରେ, ନାଁ ହେଲା ସୁପି । ଲକ୍ଷ୍ମଣ ଜନ୍ମ ହେଲେ ଗଞ୍ଜାମ ଜିଲ୍ଲା ଏକ୍ରୁପାଲ୍ଲି ଗାଁରେ, ନାଁ ହେଲା ଲଛମନ । ବାଇଶି ବର୍ଷର ଲଛମନ ହେଲେ ବାବାଜି, କୌପୁନୀ ମାରି ଚମୁଟା କମଣ୍ଡଳୁ ହାତରେ ଧରି ବୁଲିଲେ । କହରା ବର'ଠାଖିଆ ବାଳ ପଡ଼ିଲା ବେକରେ, ମୁହଁରେ । ଝିକ ଝିକ୍ ଗୋରା ଧିଅ ଝରା ଲାଗି ଦିଶିଲା ତମ୍ବା ପରି । ବୁଲି ବୁଲି, ଶେଷରେ ନରିପୁର ମହାଜନ ଘର ଖମାର ପାଖରେ ଯେ ଯେଉଁ ଝଙ୍କା ବରଗଛ, ତାରି ମୂଳେ ଟୁଙ୍ଗି ଠିଆ ହେଲା । ଭକ୍ତ ଜମିଲେ ବହୁତ, ଲଛମନ ବାବା ଫୁଙ୍କିଲେ, ଫୁଙ୍କିଲେ, ଫୁଙ୍କିଲେ । ଅଖି ଦିଶିଲା ନାଲି, ପବନ ହେଲା ଧୂଆଁଳିଆ । ଜପ, ତପ, ନିଦ୍ରା, କାମ, କେତେ କ'ଣ ।

ଷୋଳ ବରଷୀ ଗେଲ-ବସରୀ ଝିଅ ସୁପି, ନଈକ ଗାଧୋଇ ଯାଏ ବଡ଼ ଅନ୍ଧାରୁ—ଗୋଟିଏ ଗୋଟିଏ, ଖୋଜେ ଖୋଜେ, ଢଳ ଢଳ, ହଲ ହଲ । ହାତେ ଲମ୍ବ ଓଢ଼ଣା ଦୋହଲେ ଏପାଖ ସେପାଖ, ଝୁଟି ଦେବ ଯେପରି ସାପ ଦୁଳଅ । ଠିକ୍ ଟୁଙ୍ଗି ପାଖେ—"ନାନି, ଆଗେ ଆଗେ ଚାଲିଥା; କଣ୍ଟାଟେ ପଶିଲା ଗୋଡ଼ରେ ।" ତା ପରେ ତଦ୍ଧିଆରଦନ "ବୋଉ, ଯା ଯା, ହେଇ ମଧୁଆ ଆସୁଛୁ

ପଛରୁ, ଚାଲି ଆସୁ ।" ସେଠୁ ତା ଆରଡାକ, "ଗୁଣ୍ଡି, ଯା ଯା, ଦେଠି ପଳେଇଲୁ । ମୋ ଗୁଡ଼ାଙ୍କୁ ମେଞ୍ଚାଟା କୋଉଠି ପଡ଼ିଗଲା, ଗୋଟେଇ ନଏଁ ।" ଆହା ବିଚାରା । ଦୀକ୍ଷା ନେଲା, ଆଳାପ ବି ଶେଷକୁ ଜମିଲା ଭଲ । ବସି...ଇ ଥାଏ, ଚାହିଁ...ଇ ଥାଏ । "ବାପା, ବାବାଜଙ୍କ ଦୁଧ ପଠେଇ ଦଅ", "ବୋଉ, ବାବାଜଙ୍କର ଘିଅ ନାହିଁ ।" ସୁନେଇଁ ଚାନ୍ଦର କଇଁଫୁଲିଆ ଜହ୍ନରେ ତାର ମନଟା ବୁଲେ ଚୁଇ ପରି, ଝୁଙ୍ଗି ଏପାଖ ସେପାଖ, ଗଛ ଏ କନ୍ଧ ସେ କନ୍ଧ । ଆଖିରେ ନିଦ ଭରିଯାଏ, ସୁପି ସପନ ଦେଖେ—କେତେ ସୁଖରେ ସୁଖୀ ସେ ! କେତେ ଦେଶ, କେତେ ବଣ ଜଙ୍ଗଲ, ସାଙ୍ଗରେ ଖାଲି ଜଣେ ଲୋକ । ବାବାଜଟା କଣ ପଥର ? ନୀରବ ଆଖିର ଗୋପନ ବ୍ୟଥା ସେ ବୁଝେ ନାହିଁ । ଶେଷରେ ଯେଉଁ ଦିନ ସୁପି ମୁହଁ ଫିଟାଇଲା, ବାବାଜି ଉଠି ଠିଆ ହେଲା, ଆଖି ଦିଟା ଶଗଡ଼ ଚକ ପରି ବୁଲାଇ ବୁଲାଇ । ଚମୁଟା ମୁନରେ ନାକ ଉପରେ ଗେଡ଼େ ଥୋଇ ପଚାରିଲା, "କସ କହଲୁ ଶ...ଲ...ହାମେ ବାବାଜି ଅଛେ, ହାମେ ବାବା..." ସିଧା ଚାଲିଗଲା ପଶ୍ଚିମ ଦେଶକୁ, ସିଧା । ଚାରିଆଡ଼ ଶୁନ୍‌ଶାନ୍ । ବରଗଛ ଫାଙ୍କରେ ଜହ୍ନ ଆଲୁଅ ଦେଖିଲା, ସୁପି କାନ୍ଦୁଚ, ଏକୁଟିଆଟା, ମୁଣ୍ଡଲା ଡାଳ ଫାଙ୍କରେ ଲୁହଗୁଡ଼ା ପଡ଼ୁଛି ଟୋପା ଟୋପା, ଟକ୍ ଟକ୍, ଟକ୍ ଟକ୍ । ନିଭିଲା ଧୁନି ପାଉଁଶ ଉପରେ କାନ୍ଦୁଛି ସୁପି, ଥର ଥର ।

ଥିଏଟର ଭାଙ୍ଗିଲା । ଏତେ ଲୋକଙ୍କର ଘୋ ଘା ଭିତରେ ଶୁଭୁଛି ଖାଲି "ଆହା......ସୁପି !" ଜଣେ ଝିଅ ଥିଏଟର ଦେଖି ଆସିଥିଲା କଟକ, ଲୁଗା କାନିରେ ମୁହଁ ପୋଛି ପୋଛି ଚାଲିଲା ପଦାକୁ । ଏ ସୁପି ସେ ସୂର୍ପଣଖା ନୁହେଁ, ଏଠି ସହାନୁଭୂତି ଚାଲିଛି ତାର ପ୍ରତ୍ୟାଖ୍ୟାନ ଉପରକୁ । ଦୁଇଟା ଏକା ଘଟଣାରେ ହସକାନ୍ଦର ତଫାତ୍ କାହିଁକି ? ଗୋଟାକରେ ରାମ ଲକ୍ଷ୍ମଣଙ୍କ ଉପରେ ସହାନୁଭୂତି, ସୂର୍ପଣଖାର ଘଟଣା ଶୁଣୁଛି ବୁଝି, ଚଳ୍ପା! ଉପଭୋ, ଆରଟିରେ ସୁପି ଉପରେ ସହାନୁଭୂତି, ତାର ଘଟଣା ବୁଝା ପଡ଼ୁଛି ନିଜେ ଅଙ୍ଗେ ନିଭାଇଲା ପରି ହୃଦୟ ଭିତରେ । ଓଜନ ଉପରେ କଥା, ଗୋଟାକରେ ରାମଲକ୍ଷ୍ମଣ ଉପରେ ଓଜନ, ଆରଟିରେ ସୁପି ଉପରେ ଓଜନ ପଡ଼ିଛି । ତେଣୁ ଯେଉଁ ଲୋକ ବଖାଣୁଛି ବା ଘଟଣାର ଅଭିନୟ ରୂପରେ ହେବ ବରାଦ କରିଛି, ଯଦି ତାର ଉଦ୍ଦେଶ୍ୟ ଫଳ ଫଳେ, ତେବେ ତାର ସହାନୁଭୂତି ଅତି ଘଟଣାର ଭିନ୍ନ ଭିନ୍ନ ଅଂଶ ଉପରେ ସେ ଯେଉଁ ଓଜନ ଦେଇ-ଥିବ, ତାହାରି ଉପରେ ନିର୍ଭର କରେ, ବସ୍ତୁଟି ହାସ-ନାଟକ କି କରୁଣ-ନାଟକ ହେବ । କିନ୍ତୁ ସୂର୍ପଣଖାର ନାକର ରକ୍ତ ଦେଖିଲେ ଦୁଃଖ ଆସିପାରେ, କରୁଣ-ନାଟକ ହେବ ନାହିଁ । ମହାଜନ ଝିଅ ସୁପିର ନାକ ସତେ ସତେ ନ ଫୁଟିଲେ ମଧ୍ୟ କାରୁଣୀ ହେବ । ଚାହାଳୀରେ ଟିକି ପିଲାଙ୍କ ହାତ ପିଠିରେ ଯେତେବେଳେ

ବେତବାଡ଼ି ଗର୍ଜେ, ଝିକ ଝିକ ବୁଧିଆ ଆଖିରୁ ବୁହେ ଲୁହ, ମନରେ ଦୁଃଖ ହୁଏ; କିନ୍ତୁ ସେ ତ କରୁଣ-ନାଟକ (ଟ୍ରାଜେଡ଼ି) ନୁହେଁ । ମୁଣ୍ଡବ୍ୟଥା ହେଲେ, ଦାନ୍ତମୂଳ ଧରିଲେ ତ ଟ୍ରାଜେଡ଼ି ହୁଏ ନାହିଁ । ତଫାତ୍ କେଉଁଠି ?

କରୁଣର ମୂଳ ମାଡ଼ିଆସି ଗ୍ରାସିଯାଏ, ଭାବ ବୁଝିବାର ଅବସର ନାହିଁ, ବଇଶାଖୀ ଝଡ଼ପରି । ଟ୍ରାଜେଡ଼ି ଅଙ୍କୁର ଗଛର, ବଢ଼ିଲା ନଈର ମଳମଳ ପଣ । ଦୁଃଖର ପ୍ରତି ଅଣୁକ ଅନୁଭୂତି ଭିତରେ ବୁଝିବାକୁ ହେବ । ବିରୋଧୀ ଚେଷ୍ଟା ଉପରେ କ୍ରମେ କ୍ରମେ କପରି ବିଫଳତା ଆସି ଶେଷରେ କେବଳ ଦୁଃଖମୟ ଫଳ, ଅପୂର୍ଣ୍ଣ ରଖିଲା, କରୁଣ ନାଟକ ତାହାହିଁ ବୁଝାଏ । ଥିଲା କଣ, ହେଲା କଣ, କେଉଁ କ୍ରମରେ ହେଲା, ସଂଘର୍ଷ ହେଲା କପରି, ଏସବୁ ଦେଖୁଁ ଟ୍ରାଜେଡ଼ିରେ । ସହାନୁଭୂତି ଆସେ, ଦୁଃଖ, ଭୟ । କରୁଣ ନାଟକ ମନର ସବୁ ପ୍ରବୃତ୍ତି ଉପକାର କରେ ଯେପରି ବୁଝିବାକୁ, ଚେଷ୍ଟା ଆଉ ସଂଘର୍ଷରେ ସବୁ ପ୍ରବୃତ୍ତିର ଶେଷ ପରୀକ୍ଷା ଦେଖାଇଥାଏ ସେହିପରି । କେବଳ କରୁଣ ରସ ଗୋଟାଏ ସ୍ଥାଇ, ଗୋଟାଏ ସ୍ଥିତିବାନ୍ ଧାରଣା; କରୁଣ ନାଟକ କେବଳ ସ୍ଥାଇ ନୁହେଁ, କଥନୀ; ସ୍ଥିତିବାନ୍ ନୁହେଁ, କାର୍ଯ୍ୟକାରୀ । ପୁଅଟି ମରିଯିବାରୁ ବୁଢ଼ୀ କାନ୍ଦୁଛି, ଏ ଦୁଃଖ ମନ ଉପରେ ପଡ଼େ ସ୍ଥାଇ ପରି । ଏ ଦୁଃଖର କାର୍ଯ୍ୟକାରିତା କଅଣ, ଜୀବନ ଉପରେ ଓଜନ କେତେ, କପରି କ୍ରମରେ ଏ ଦୁଃଖ ଆସିଲା, ଜୀବନର ଭିନ୍ନ ଭିନ୍ନ ସମ୍ବନ୍ଧ ଉପରେ କ୍ରିୟା କଣ, ଏସବୁ ଯେଉଁ ଉପାୟରେ ମନ ଭିତରେ ମଳମଳ ପଣ ଆଣିବ, ତହିଁରେ ହେବ କରୁଣ-ନାଟକ, ତହିଁରୁ ବାହାରିବ କାରୁଣୀ, ତା ନ ହେଲେ ଏ କେବଳ କରୁଣ ରସ । ଷଣ୍ଢ ଆଭୃତ ପାଲରେ ପଡ଼ି ଉଡ଼ନ୍ତା ପକ୍ଷର ଦୁର୍ଦ୍ଦଶା ନୁହେଁ ଟ୍ରାଜେଡ଼ି । ଦୁଃଖ ହୋଇପାରେ; କିନ୍ତୁ ସହାନୁଭୂତି ଆଉ ସମ୍ମାନ ଏ ଉଭୟ ଆସିବେ ନାହିଁ । ତେଣୁ କାରୁଣୀର ନାୟକ ଘୋର ବା' ବଡ଼ାସି ବିରୁଦ୍ଧରେ ଯୁଝୁଥିବା ସରସା ତାହ । ତାହ ଭାଙ୍ଗିବ, ନୋହିଲେ ଟ୍ରାଜେଡ଼ି ହେବ ନାହିଁ; କିନ୍ତୁ ତା ପୂର୍ବରୁ ବହୁତ ଟଣାଓଟରା, ଯହିଁରେ ଲୋକେ କହିବେ—"ଓଃ, ଏଡ଼େ ସରସା ତାହଟା ।"

କରୁଣ ନାଟକରେ ଦୁଇଟି ଦଳ, ଗୋଟିଏ ପାଖେ ନାୟକ, ଯେ ଶେଷରେ ହେବ ହତ, ଆର ପାଖେ, ଯେଉଁ ଦଳ ଜିତିବ; କିନ୍ତୁ ଯାହା ପ୍ରତି ଆମର ସବୁ ସହାନୁଭୂତି ପୋଛୁପୋଛି ଝଡ଼ାଝଡ଼ି ସର ନାହିଁ । ବିପକ୍ଷ ଦଳ ହେଉ ମଣିଷ, ନୋହିଲେ ଘଟଣା, ନୋହିଲେ ଭାଗ୍ୟ । ଏ ଦୁହିଙ୍କ ସଂଘର୍ଷ ଆଣେ ଗୋଟାଏ ଉଚ୍ଚ ଅନୁଭୂତି, ଗୋଟାଏ ସହାନୁଭୂତିମିଶା ଔତ୍ସୁକ୍ୟ । ସଂଘର୍ଷ ନିଷ୍ଟସ୍ୱ ରହିବ, ପରେଷାର ପଦାରେ ପଡ଼ୁ ନ ପଡ଼ୁ । ପିମ୍ପୁଡ଼ିକୁ ଗୋଡ଼ରେ ଦଳିଲେ, ନୋହିଲେ ମଶାକୁ

ତାଲରେ ନାଚିଲେ ଏ ଭଳି ଅନୁଭୂତି ଆସିବ ନାହିଁ । ସଂଘର୍ଷ ଯେଉଁଠି ଖୋଲା ଆଖିକୁ ନ ଦିଶୁଛି, ହୁଏତ ସେଠି ରହିଛି ଦୁଃଖଦୁର୍ଦ୍ଦଶାର ସମବକାଶ, ପରିସ୍ଥିତି ପ୍ରତିଘାତ ଉପରେ 'ଘଟେଇ' ଆସୁଛି, ନାୟକ ଉପରେ ମନକୁମନ କାର୍ଯ୍ୟଦ୍ୱାରା ଘାତ ପ୍ରତିଘାତ କରୁଛି, ଆଉ ତାର ଭାଗ୍ୟ ଆଗେଇ ପୁଣି ପଛକୁ ହଟୁଛି । ତାର ଆଶା ଭରସା ଭିତରେ ରହିଛି ଅଜଣା ଆଶଙ୍କା, ତାର ସୁନେଲି ସପନର ଖୁଣ୍ଟୁଡ଼ି ସେ ପାଖେ ଅଛି ନିଷ୍ଠୁର ବାସ୍ତବତା, ତାର ଉତ୍ସାହ ଉଦ୍ୟମ ତଳେ ତଳେ ଅଛି ବିଧିବିଧାନର ଭଗାଣ୍ଡି ହସ ।

କରୁଣ-ନାଟକର ମନ ଉପରେ କ୍ରିୟା ହୁଏ କିପରି ? ଯେଉଁ ଲୋକର ଭଲ ଗୁଣ ବା ଉଦ୍ୟମ ଦେଖି ତା ଆଡ଼କୁ ଟଳି ପଡ଼ୁଥାଉଁ, ପ୍ରଶଂସା କରୁଥାଉଁ, ସଂଘର୍ଷଦ୍ୱାରା ଶକ୍ତିର ପରିଚୟ ପାଇ ସମ୍ମାନ କରୁଥାଉଁ, ସେ ମାଟି କାମୁଡ଼ିଲେ ଦୁଃଖ ହେବ, ଭୟ ହୋଇପାରେ, ଅନିଶ୍ଚିତ ଭାଗ୍ୟ ବା ଅତି ପରାକ୍ରମୀ ବିପକ୍ଷଦଳ କଥା ଭାବି । ଭୀମ ପୁଣି ଘଟିଲେ ପୁଝାରୀ କାମରେ, ଯୁଧିଷ୍ଠିର ଗଲେ ବନବାସ । ଯେତେ-ବେଳେ କରୁଣନାଟକ ହେଲା ଆରମ୍ଭ, ସେତେବେଳେ ବିପକ୍ଷ ଦଳ ନିଜେ ଭାଗ୍ୟ ! ଅତି ସହଜ ଭାଗ୍ୟ ଉପରେ ତ ଆଉ କଥା ନାହିଁ ! ବେଳେ ବେଳେ ଭାଗ୍ୟର ସ୍ଥାନ ନେଲେ ଦେବତା, ଉଦ୍ଦେଶ୍ୟ, ଇଚ୍ଛା ଡର । ଓଷା ପାଳିବ ତ ପାଳିବ, ନୋହିଲେ ଜାଣିଥା । ମନସା ଦେବୀ ସୌଦାଗରଙ୍କୁ କେତେ ହଲପଟା କଲେ, ସୁଦଶାବ୍ରତରେ ରାଜାଙ୍କର ଦୁର୍ଭାଗ୍ୟ ଇତ୍ୟାଦି ଇତ୍ୟାଦି କଥା । ଏ ଦେଶରେ ନୂଆ ନୁହେଁ ।

କିନ୍ତୁ ଏ ହେଲା ବାହାର ଟ୍ରାଜେଡ଼ିର କଥା । ଅସ୍ତ ଆଲୁଅରେ ଶେଷ ରେଖାଟି ମିଶିଯାଏ ଧୀରେ ଧୀରେ କେଉଁ ଅଜଣା ଦରିଆର ସେପାରିରେ । ମେଘ ଭାସି ବୁଲିଯାଏ ଛୁଇ ପରି । ତାପରେ ଆସେ ଗୋଟାଏ ବିରାଟ ଶୂନ୍ୟତା, ଯେପରି ସେ ଏକା......ଏକା ' ତୁଳସୀତଳର ମିଞ୍ଜି ମିଞ୍ଜି ସଞ୍ଜବତୀ କି କଥା କହେ ମଉନ ରହି, କିଏ ଜାଣେ ? ଅକସ୍ମାତ ସବୁ ସୁଖ, ସବୁ ସମ୍ପଦ ମଝିରେ ଦୁଃଖ କାହିଁକି ? ଜଳୁଛି କିଏ ? ଯାଉଛି କିଏ ? ଅଭାବ କାହାର ? ତଥାପି ଦୁଃଖ ଆସେ, ମନେ ହୁଏ ଯେପରି ଏତେ ଲଢ଼ ଲଢ଼ି, ଫଳ ନାହିଁ । ଜୀବନଟା ଗଲା ବୃଥା । ହୁଏତ କେତେ କଥା ଆଖି ଆଗରେ ଭାସି ବୁଲିଯାଏ, ଝାପ୍‌ସା ଆଲୁଅରେ ଅତୀତର କେତେ ଆଶା, ଇଚ୍ଛା । ସେ ଦିନ, ଆଉ ଆଜି ! ସେ ଦିନ ସାମନାରେ ଜୀବନକୁ ରଖି ମନେ ମନେ କେତେ ରଙ୍ଗିଣୀ ମୋହ ଆଙ୍କିଥିଲି; ଶାଉଁଳା ଘାସର ସୌରଭରେ ମାଟି ଉପରେ ପାଦ ରଖି ଦ୍ରୁତ ଦୁଲଇ ଶିଶୁ ହାଙ୍କିଥିଲି, "କାଲି... ହବ,...କାଲି ।" ଆଉ ଆଜି ! କେତେ କୁହୁଡ଼ିଖିଆ ଶୁଖିଲା କଢ଼ି, କେତେ ଚିତା ପାଉଁଶ । ଜୀବନଟା ନିଜେ ଗୋଟାଏ ବଡ଼ କାରୁଣି, ତା ଆଗରେ ଅଧିକ କିଛି

ନାହିଁ; କିନ୍ତୁ ଏପରି ଅନୁଭୂତ ନିଜ ମନକୁ ଆସେ, ଜବରଦସ୍ତି ତାହାର ମୁଣ୍ଡରେ ପୁରାଇବା ବା ସେହି ଅନୁଭୂତ ଅଣାଇବା କଷ୍ଟ । ତା ପରେ ଜଣେର ଗୋଟିକିଆ ମନ, ଆଉ ଏକାଠି ଗୁଣ୍ଡ ଦଳର ମନ ସମାନ ନୁହେଁ । ମନକୁ ମନ ବୁଝି ଅନୁଭବ କରିବା ଯେପରି, ଥିଏଟର ଗୃହମଧ୍ୟ ଉପରେ ଠିଆ ହୋଇ ଦଳେ ଲୋକଙ୍କ ମନକୁ ଧରିବା ସେପରି ନୁହେଁ । ଏତେ ଲୋକଙ୍କ ମନରେ ଧାରଣା ଦେବାକୁ ହେଲେ ଦୁଇଟି ଉପାୟ । ଅଳ୍ପ ଆକାରରେ ଅଧିକ ବହଳ (Intensive), ତା ନହେଲେ ଘନ ନୋହିଲେ ବି ଅନ୍ଧାର, ପରିସରରେ ବଡ଼ (Extensive) କରି ବଖାଣିବାର ଉପାୟ । ଟିକି କଥାରେ ବହଳ ଭାବ ରଖି ଧାରଣା ଦେବା କଷ୍ଟ, ହାତ କରାମତି ଦରକାର ବେଶି, ଜୀବନ ଭିତରକୁ—ପ୍ରତ୍ୟେକ ଶ୍ରେଷ୍ଠ ଶ୍ରେଷ୍ଠ ଘଟଣା ଭିତରକୁ ଖିଅ ଧରି ପଶିବା ଆଗେ ଲୋଡ଼ା । କେମିତି ଗୋଦାର ଜୀବନର ଟ୍ରାଜେଡ଼ି ଜଣ ଜଣ କରି ଲୋକେ ଶୁଣି ବୁଝିପାରନ୍ତି, ନିଜେ ଆଖି ଆଗରେ ଦେଖି; କିନ୍ତୁ ସାମ୍ନାସାମ୍ନି ଥିଏଟରରେ ଏତେ ଲୋକ ଦେଖି ବୁଝିବା ଯେପରି କଷ୍ଟ, ସୂକ୍ଷ୍ମ କଳନାକୁ ଅଖିପୁରା ମୋଟା ଘଟଣା କରି ବୁଝାଇବା ସେପରି କଷ୍ଟ । କରୁଣ ନାଟକର ନାୟକ ହୁଅନ୍ତୁ ଜଣେ ବଡ଼ ରାଜା, ଦଶଜଣଙ୍କ ଆଖି ଆପେ ଆପେ ଲାଖିଯିବ । ବଡ଼ ବଡ଼ ଘଟଣା, ବଡ଼ ବଡ଼ ଲୋକ, ଏମାନେ ହେଲେ ପ୍ରଥମେ କରୁଣ ନାଟକର ବିଷୟ ।

ନାୟକ ହେଲେ ବଡ଼ ଲୋକ, ଘଟଣା ହେଲା ସ୍ଥୂଳସ୍ଥୂଳ ଲାଗିବାଭଳି । ଝର ଝର ରକ୍ତ, ଗୁଣ୍ଡଫେଷା ହାଡ଼, ମେଞ୍ଚାମେଞ୍ଚି ଚକଟାଚକଟି ମାଉଁସ, ଦେଖିବାଲୋକ ମନରେ ଏସବୁ ଯେତେ ସହଜେ ଗାର ଟାଣେ, ଭଙ୍ଗା ମନ, ଦଦରା ଆଶାଭରସା, ନଷ୍ଟ ଜୀବନ, ଏସବୁ ସେତେ ସହଜରେ ଚମକ ଲଗାଏ ନାହିଁ । ଝଣ୍‌ଝାଣ୍ ତରୁଆଲ, ଭୁଷାଭୁଷି, କେଞ୍ଚାକେଞ୍ଚି, ଖୁନ୍ କଲେ, ବାଡ଼ିଆ କଚଡ଼ା, ବାହାରର ଏଇ ଆଡ଼ମ୍ବର ଯେଉଁ ଟ୍ରାଜେଡ଼ି ଆସିଲା ପ୍ରଥମେ । ତା ପରେ ଯେତକ ଯେତକ ଉନ୍ନତି କଲା, ସେତକ ସେତକ ସାଧାରଣ ହେଲା । ବାହାରର ଗାଲଗପ ହଟଚମକ ମହଲା ଆସିଲା । ଯାତ୍ରା ପୁଅଙ୍ଗରେ ଯେଉଁ "ଭେସରମି" ସାଜସଜ୍ଜା, ଆଡ଼ମ୍ବର, ସେସବୁ ଏଇ ଆଦିମ ଅଖିପୁରା ଉପାୟ (Board effects)ର ପ୍ରମାଣ । ରାବଣ ମଲା, ଦୁଇଘଣ୍ଟା କଦମ ଦାଣ୍ଡରେ ଯୁଦ୍ଧ । ଲକ୍ଷ୍ମଣ ଶକ୍ତି ଶେଳ, ଗୋଟିଏ ରାତି । ବୈକୁଣ୍ଠ ସାଙ୍ଗା, କଟିଆ ମଠ, ନଙ୍ଗଳା ମଠ ବାଟେ ଦୁଇ ଘଣ୍ଟା ଗୋଡ଼ାଇ ଗୋଡ଼ାଇ ଶେଷରେ ମଶାଲଧୋଖା କାଣ୍ଡ ଫୋପାଡ଼ିଲା ରାବଣ । ଭାଇ ଡାଲେ; ରାମ କାନ୍ଦଲେ, ମାଙ୍କଡ଼ ସୈନ୍ୟ କାନ୍ଦଲେ, ଦାଣ୍ଡ ଫାଟିଲା, ଦୁଃଖରେ ଗଡ଼ ଗଡ଼ ମାଙ୍କଡ଼ ସୈନ୍ୟ ଦେଖଣାହାରୀ ଟିକିପିଲାଙ୍କ ଉପରେ ପଡ଼ିବାରୁ ପିଲାଏ କାନ୍ଦଲେ, ପିଲାଙ୍କ କାନ୍ଦଣା ଦେଖି ଆଡ଼େଇ ହୋଇ ବସିଥିବା ମା'ମାନେ କାନ୍ଦଲେ । ହନୁମନ୍ତ ଗନ୍ଧମାର୍ଦ୍ଦନ ଉପାଡ଼ିବାକୁ ଡୋଟାକୁ ଗଲା, ବିଶାଳ ଘରବୁହା କାନ୍ଧରେ ଏତେ ତାଳବୁଦା

କୋହ ଆଣ୍ ଅଣ୍ଣ କୁଅଁତରା ହଉଁଲଣି । ଅଖି ଆଗରେ ମଲ ଖଣ୍ଡିଆ କପଟ ଦେଖା ହେଉଥିଲା, ସେକ୍ସପିଅରଙ୍କ ବେଳର ନାଟକ ତାର ସାକ୍ଷୀ । ନାଟକ ସରିଲାବେଳକୁ ଷ୍ଟେଜ୍ ଉପରେ ଖାଲି ମୁର୍ଦ୍ଧାରମାଳ, "ଟାମ୍ବରଲେନ୍" ନାଟକ ଅଭିନୟ କରୁ କରୁ ଲଢ଼େଇ ମୁହଁ ଥରେ ଛାଡ଼ିଲା ଦେଖଣାହାରୀଙ୍କ ଉପରକୁ, ସେଥିରେ ଗୋଟିଏ ସ୍ତ୍ରୀ ଲୋକ ଆଉ ଗୋଟିଏ ଛିଡ଼ା ପିଲା ସତକୁ ସତ ମରିଗଲେ ।

ପରେ ସାକ୍ଷାତ୍ ଖୁଣ ଜଖମ୍ ପରିବର୍ତ୍ତେ ଆସିଲା ଦୁଃଖ, ବିରହ । ବାଇଦ ବାଜିଲା, ନହବତ, ପେଁକାଳୀ କାଢ଼ିଲା, ଏତେ ଧନର ଖୁସିବାସିଆ ଜୀବନ ଏତେ ଧନର ସୁଖ ସୁଆଗଠାରୁ ବିଦାବିଦ ସାରି କାନ୍ଦ କାନ୍ଦ ରୂପା ଦେଇ ଚାଲିଗଲେ ଶାଶୁ ଘରକୁ । ବହିଲା ଏଥର ଏକା ଶିବ ତଳବାଣିକ, ପୁଣି ଆଉ ପଶା ଅଭିସା ପାଇବ ନାହିଁ, ବଣଭୋଜିବେଳେ ରୂପେଇ ଅଉ ନ ଥିବ, ମାଙ୍କଡ଼ବସି ଖାଇବାକୁ । ଶକୁନ୍ତଳା କାନ୍ଦିଲେ, କଣ୍ୱ ଋଷି କାନ୍ଦିଲେ ମିରିଗ ଛୁଆଟି ପଛେ ପଛେ ଗଲା କେତେ ବାଟ, 'ନୋମାଲିଆ' ଆମ୍ବ ଗଛରେ ଛନ୍ଦିଗୁନ୍ଦି ହୋଇ ରହିଲା । ମରଣ ପରିବର୍ତ୍ତେ ବିଚ୍ଛେଦ, ବିରହ ଆସିଲାବେଳକୁ କାରୁଣି ପାହାଚେ ଉଠିଛି । ମଣିଷ ବୁଝିଛି, ଖାଲି ମୁହଁ ନେଫେଡ଼ି ଅଖି ବୁଜି ପଡ଼ିବାଠୁଁ ମରଣ ଅଛି, ଜୀଅନ୍ତା ମରଣ; ସ୍ମୃତିର ମରଣ, ସ୍ୱପ୍ନର ମରଣ, ଶେଲିବସର "ମାନସ ପୁତ୍ର"ମାନଙ୍କ ମରଣ; ସଳଖ ତାହା ଭାଙ୍ଗି ନ ପାରି ମରିପାରେ, ଶୁଖିଯାଇପାରେ, ବାହାରକୁ ସିଧା, ଚକ୍‌ଚକ୍ ଭିତରେ ପୋଲା । ଏ ଦେଶର ସାହିତ୍ୟ ଏ ଉଚ୍ଚ ପାହାଚରେ ବଢ଼ିଛି ବହୁତ ଦିନୁ । ଅଖି-ଝଲସାଣି ଜାକଜମକ ଭିତରେ ଦେଖିଥାଉଁ ସୀତା ଶୋକ, ସୀତା ବନବାସ, କରୁଣ ରସର ଉତ୍ତର ଚରିତ, ଶକୁନ୍ତଳା ପ୍ରତ୍ୟାଖ୍ୟାନ; ଶୁଣିଥାଇ—

> "କୋଇଲି ଲୋ କେଶବ ଯେ ମଥୁରାକୁ ଗଲେ
> କାହା ବୋଲେ ଗଲେ ପୁଣ ବାହୁଡ଼ି ନଇଲେ ଲୋ
> କୋଇଲି ।"

ଦୁଃଖ ଦୁର୍ଦ୍ଦଶା, ଆଶା ଭଙ୍ଗା, ମରଣର ସ୍ଥାନ ନେଇଥାଏ । ସମାଜ ପରିସ୍ଥିତି, ସାଧାରଣ ଘଟନା ଉପରେ ଜୀବନର ବୋଇତ କପଟ ଭାଙ୍ଗି ଯାଏ ଆଜିକାଲିକା ୟୁରୋପ ଦେଶର ଉନ୍ନତ କରୁଣ-ନାଟକ ତହିଁରେ ଖୁବ୍ ଦକ୍ଷ । ଇଚ୍ଛା ହେଉଛି, ଅତୀତର ମସିଆ ପୃଷ୍ଠା ଓଲଟାଇ କପଟ ନୂଆ ଜୀବନ ପାଆନ୍ତେ । ଉଦ୍‌ଯୋଗ ହେଲା, ଅତୀତର ବାସ୍ତବତା ରହିଲା ନୂଆ ଆଶା, ନୂଆ ଆଦର୍ଶର ସପନ ମୋହର ତଳେ; କିନ୍ତୁ ନିସ୍ତାର ନାହିଁ ଅତୀତର ଚିତା ପାଉଁଶରୁ ବାହାରିଲେ

ପ୍ରେତ । ନେଳି ଆକାଶ ହେଲା କାଳିଆ, ସୂର୍ଯ୍ୟ ଗଲା ବୁଡ଼ି, ଅନ୍ଧାର, ବରଷା, ଏହିପରି କେତେ ସାଧାରଣ ବିଷୟ ।

ପ୍ରଥମରେ ବିପକ୍ଷ ଦଳ ଥିଲା ଭାଗ୍ୟ; ଦେବତା, ଅଦେଖା ଶକ୍ତି । ଶୋଷ କଲେ ନଇଁକା ନଈ ପାଣି ଯାଉଛି ଶୁଖି, ଭୋକ କଲେ ଖାଇବା ଗୁଣ୍ଡା ହେଉଛି ପାଉଁଶ, ଡଙ୍ଗା ଉପରେଇରୁ ଉଜା ହେବା ମାତ୍ର ଜୀବନ ପାଇ ଯାଉଛି ପାଣିକି । ସୀମାହୀନ ଅନ୍ଧାରି ଭାଗ୍ୟ ବିରୁଦ୍ଧରେ ମଣିଷ କେତେ ନଗଣ୍ୟ, କଅଁ-ବିରୋଧୀ ଭୁଲାଗଦା; କିନ୍ତୁ ଯେତେବେଳେ ମଣିଷ ବୁଝିଲା, ସୀମାହୀନ ମାଟିର ଘଟ ନୁହେଁ ସବୁସ୍ତ, ଭାଗ୍ୟର ଏକତରଫା ଡିଗ୍ରୀ ଛାଡ଼ି ମଣିଷ ପକ୍ଷରେ କୁହ୍ ଅଛି କହିବାକୁ, ସେତେବେଳେ କରୁଣ ନାଟକର ଧାରଣା ବଦଳିଲା । ଭାଗ୍ୟର ଏକଗୁଟିଆ ଅଧିକାର ବଦଳିଗଲା । ମଣିଷର ଉତ୍ସାହ; ଶେଷ ନ ହେବା ପର୍ଯ୍ୟନ୍ତ ପ୍ରାଣପଣ ଚେଷ୍ଟା, ମରଣ ଉପରେ ବିଜୟୀ ଅମର ଆତ୍ମା, ଅମର ପ୍ରେମ, ଧୀରେ ଧୀରେ ସ୍ଥାନ ପାଇଲା । କ୍ରମେ ଭାଗ୍ୟ ବାହାରର ଘଟନା ନ ହୋଇ ଭିତରକୁ ଗଲା, ଅର୍ଥାତ୍ ପ୍ରତ୍ୟେକେ ନିଜ ନିଜର ଭାଗ୍ୟ ଲାଗି ଊଣା ଅଧିକେ ଦାୟୀ; ଏ ଭାବ ଆସିଲା । କାନ୍ଥରେ ଫାଟ ଅଛି, ବରମଞ୍ଜି ଗଜା ହୋଇ ପରେ ଚେର ମେଲି କାନ୍ଥ ଫଟାଇବ । କାନ୍ଥରେ ଫାଟ ଅଛି, ଏ ହେଲା ଚରିତ୍ରର ପ୍ରବଣତା । ବରମଞ୍ଜି ଗଜା ହେଲା; ଏ ହେଉଛି ପ୍ରବଣତାର ସୁବିଧା ନେଉଥିବା ବିପକ୍ଷଦଳ, ଊଣା ଅଧିକେ ଭାଗ୍ୟ ଦାୟୀ ହେଲେ ମୁଖ୍ୟ ନାୟକ ବାଟ ଛାଡ଼ୁଛି ନିଜ ଦୋଷରୁ । ଏପରି ଧାରଣାର ଓଜନ କେତେ ? ଯହିଁରେ ଫାଟ ନ ଥିବ, ଦୋଷ ତ୍ରୁଟି କିଛି ନ ଥିବ, ସେ ଆଦର୍ଶ ପ୍ରତି ସମ୍ମାନ, ନିଜେ ଚେଷ୍ଟା କଲେ ଫାଟ ବୁଜା ଯାଇପାରେ, ତେଣୁ ଭାଗ୍ୟ ଉପରେ ଅନ୍ଧ ବିଶ୍ୱାସ ନ ରଖି ନିଜର ସ୍ଥିତିବାନ (Potential) ଶକ୍ତି ଉପରେ ବିଶ୍ୱାସ, ଏପରି ଧାରଣା ବିଜ୍ଞାନ ଆଖିରେ ଭଲ, ବସ୍ତୁବାଦ ଆଖିରେ ଅତି ଶ୍ରଦ୍ଧାର ହେଉ ; କିନ୍ତୁ କଳା ହିସାବରେ ଦୁର୍ବଳ । "କବି ଯେ ସତ ମିଛ କହି କବିତା ଘୁରୁଘିରେ ମନ ମୋହନ୍ତି" ସେ ସମ୍ଭବ ଅସମ୍ଭବ, ସତ ମିଛ, ଅଦେଖା ଆଦର୍ଶ, ସୀମାହୀନ ସାଧାରଣ ପରିକଳ୍ପନାର ବହିର୍ଭୂତ ଧାରଣା, ତାର ସ୍ଥାନ ରହିଲା କେଉଁଠି ? କୌଣସି ପ୍ରକାର ତ୍ରୁଟି, ଦୋଷ, କରୁଣରେ ହେଉ ହେବା ଭଲ ଫାଟ (Tragic Flaw) ନ ଥାଇ ବିନା ମେଘରେ ବଜ୍ରପାତ ପରି ଭାଗ୍ୟ ଆସି ଧର୍ମ ନେଇଯିବ, ଏପରି ଦେଖାଇଲେ ଅପ୍ରାକୃତ ହେବ ଯେପରି, ନିଜ ଉପରେ ବିଶ୍ୱାସ, ମଣିଷର ଆଦର୍ଶ, ସେ ସବୁ ପ୍ରତି ଅସମ୍ମାନ ହେବ ସେପରି । କିନ୍ତୁ କୌଣସି ଉଚ୍ଚ କରୁଣ ନାଟକର ମୋଟ ଧାରଣା ଅଙ୍କ କଷି ବାଣ୍ଟି ଦେଲା ପରି ପ୍ରତ୍ୟେକ କାରଣ ଉପରକୁ ବାଣ୍ଟି ଦେଲେ ଛୁଟିବ ନାହିଁ । ଯାହା ବାକି ରହିବ, ତାର ପରିମାଣ ଅତି ବେଶୀ, ତାର ନିଦାନ ସେଇ ଅଦମ କରୁଣ

ନାଟକର ଅଦେଖା ଶକ୍ତି । ଶକୁନ୍ତଳା ପ୍ରତ୍ୟାଖ୍ୟାନର ଓର ହେଉଛି ଦୁର୍ବାସାଙ୍କ କ୍ରୁଦ୍ଧ ଅବହେଳା; କିନ୍ତୁ ଯେଉଁ ପରିମାଣରେ ସୀମାହୀନ କରୁଣ ରସ ମିଳୁଛି, ସେ କଣ ଏଇ ଗୋଟିଏ ଓରରେ ମେଣ୍ଟି ଯିବ ? କେତେ ସୁପି କେତେ ଲକ୍ଷ୍ମଣଙ୍କଠୁଁ ହତାଶ ହୋଇ ଫେରି ଆସୁଛନ୍ତି, କିନ୍ତୁ ଟ୍ରାଜେଡ଼ି କଣ ଏକା ? ଯେଉଁଦିନ ଆଙ୍ଗୁଠି ଅଗରେ ହିସାବ କରି ଟ୍ରାଜେଡ଼ିର ସମୁଦାୟ ଧାରଣାକୁ ଭିନ୍ନ ଭିନ୍ନ ହେତୁରେ ବାଣ୍ଟି ଦେଲେ ତୁଣ୍ଡି ଯିବ, ଆଉ ଭିନ୍ନ ଭିନ୍ନ ହେତୁର ଓଜନକୁ ଏକାଠି କରି ସେହି ମୋଟ ଧାରଣା ପୂର୍ବ ପରି ଅଣାଯାଇ ପାରିବ, ସେଦିନ କଳାର କୁହୁଡ଼ି ମିଳାଇଯିବ । ତେଣୁ ଯେତେ କାରଣ ଦେଖାଇଲେ ସୁଦ୍ଧା ସମୁଦାୟ ଧାରଣାର ବହୁତ ଅଂଶ ରହିବ, ଯାହା ଅଦେଖା ହାତର କର୍ମଫଳ ।

ପ୍ରଥମେ ବିପକ୍ଷ ଦଳ ଥିଲା ଭାଗ୍ୟ, ତାପରେ ଚରିତ୍ରଗତ ଦୋଷ ଆଉ ଘଟନାଚକ୍ର; କ୍ରମେ ଭାଗ୍ୟ ପରିବର୍ତ୍ତିରେ ଭାଗ୍ୟ ପରି ପରାକ୍ରମୀ ଅନ୍ୟାନ୍ୟ ଶକ୍ତି, ସମାଜ, ଆଇନ, ସ୍ୱାର୍ଥ, ଦଶ ଲୋକ । ସମାଜର ଆଘାତ ସହି ନ ପାରି ଥରକର ଭୁଲ ଲାଗି ନାୟିକା ଧୀରେ ଧୀରେ ପଙ୍କରେ ବୁଡ଼ିଯାଉଛି । ସାତବର୍ଷର ହାରାମଣି କରୁଛି ବିଧବାର ଏକାଦଶୀ, କାଲିକାର ଚଗଲା ଝିଅ ଆଜି ଆଉ ପଦାକୁ ଯିବାକୁ ହୁକୁମ ପାଉନାହିଁ । ପେଟ ବିକଳରେ ଚୋରି କରି ଦୁଃଖୀ ଲୋକ ଯାଉଛି ଜେଲ, ବଡ଼ ଲୋକ ଯାଉଛନ୍ତି ସଭାକୁ । ଗଲ୍‌ସୱାର୍ଦ୍ଦି ସେ ଦେଶର ସମାଜକୁ କରିଥିଲେ ବିପକ୍ଷ ଦଳ । ତାଙ୍କର "ନ୍ୟାୟ ବିଗ୍ରହ" ନାଟକ ଏତେ ହୁଲସ୍ଥୁଲ ପକାଇଲା ଯେ, ଜେଲଖାନା ଆଇନ ତଦାରଖ ହୋଇ ସଂସ୍କାର କରାହେଲା ସଙ୍ଗେ ସଙ୍ଗେ ।

କରୁଣ-ନାଟକ ସେତିକରେ ରହିନାହିଁ । ଧାରଣା, ଆଦର୍ଶ, କର୍ତ୍ତବ୍ୟବୋଧ, ଏସବୁ ଧୀରେ ଧୀରେ ହେଲାଣି ବିଷୟ, ଅତି ସାଧାରଣ ନିତିଦିନିଆ ଜୀବନ ଭିତରେ କେପରି ଟ୍ରାଜେଡ଼ି ଅଛି, ଶାଶୁବୋହୂ କଳିରେ, ଦି ସଉତୁଣୀ କଳିରେ ତାର ବିଶ୍ଳେଷଣ ଉପରେ କରୁଣ ନାଟକ ବଢ଼ିି ପାରିବ । ଶାଶୁ ବୋହୂଙ୍କର କଳି, ସ୍ୱାର୍ଥ ସ୍ୱାର୍ଥ, କର୍ତ୍ତବ୍ୟ କର୍ତ୍ତବ୍ୟ ଭିତରେ ଲଢ଼ାଲଢ଼ି । ଶାଶୁ—କେଉଁ ଦୂର ଅତୀତର କଥା, ଘୋଡ଼ାଚଢ଼ା ବାପ ରହିଲା ନାହିଁ, ଘାସକଟା ମା' ରହିଲା । ଝଡ଼ତୋଫାନ ଭିତରେ ଦୋହଲାଇ ଦୋହଲାଇ ଚାଲିଯାଏ, ଜ୍ୱେଷ୍ଠ ପିଲା ଅନ୍ଧାର କୁକୁରକାନ୍ଦର ମା' କଡକ ଲାଗିଯାଏ, ଚାଲରୁ ଝଡ଼େ ବରକୋଳିଆ ପାଣିଟୋପା । ଖୁଦ ଫୁଟାଇ ପେଜ ପାଣିରେ ଛୁଆପାଳିବା—ସେ କି କଷ୍ଟ ! ବୋହୂ—ଦି' ଦିନର କଥା ଲାଗେ ଯେପରି କେଉଁ ଯୁଗର ! ବାପଘରୁ ଗୋଡ଼ କାଢ଼ିଲା ଦିନୁଁ ସବୁ ତ ତାର ଏଇ, ମାନ ଅଭିମାନ, ସାତ ପାଞ୍ଚ କାହା ପାଖରେ ? ଦିନଯାକର ଖଟଣୀ କାହା ଲାଗି ? ଅବୁଝା ଶାଶୁ ବୁଝେ ନାହିଁ, ଦେଢ଼ିଲା ଛୋଟ ବଡ଼ ହେଲାଣି,

ଅବୁଝା ବୋହ୍ମ୍ବୁ ବୁଝେ ନାହିଁ, ଏଇ ଝାଉଁଆ ବନକୁ ଦେଇ ଗଛ ହଟାଣଛୁ । ଶେଷରେ ସବୁ ଉଜୁଡ଼ । ଦୋଝଣାରେ ପଡ଼ ପୁରୁଷ ଯାଏ ଛିଣ୍ଡି, କାହାର ହବ ସେ ? ଢୋଲପିଟା ମାର୍ କାଟ୍ ଟ୍ରାଜେଡ଼ିଠାରୁ କେତେ ବାଟ ?

ପର୍ଦ୍ଦା ଉଠିଲା, କ୍ଷୀଣ କରୁଣ ସଙ୍ଗୀତ ଆଳାପ । ଅନ୍ଧାର ଅନ୍ଧାର ଝାପ୍ସା ଆଲୁଅରେ ଦଶୁଛି ପିଞ୍ଜରା ଭିତରେ ହାତଗୋଡ଼ବନ୍ଧା ସ୍ତ୍ରୀଲୋକ, ଉଦାସୀ ଆଖି ହତାଶ ମୁର୍ଚ୍ଛାଣିଆ ମୁହଁ । ପିଞ୍ଜରା ଏପାଖରୁ ସେପାଖ ଗ୍ଭଲିଗଲା । ଅନ୍ଧାର ଭିତରେ ବଡ଼ ବଡ଼ ପାହୁଣ୍ଡ ପକାଇ ଗ୍ଭଲିଗଲା ଗୁଡ଼ାଏ ଛାଇ ଏକର ସେକର । ସବୁ ଶୁନ୍ଶାନ୍, କେବଳ କ୍ଷୀଣ କରୁଣ ସଙ୍ଗୀତ ଆଳାପ ଛଡ଼ା ।

କଥା କଣ ? ଛାଇ ଗୁଡ଼ାଏ କଣ ? ଅନ୍ଧାର, ଛାଇ, ଦୁଃଖ, କରୁଣ, କ୍ଷୀଣ ସଙ୍ଗୀତ, କରୁଣ ରସର ସୂଚନା । ପିଞ୍ଜରା ଭିତରେ ବନ୍ଧାବନ୍ଧ ସ୍ତ୍ରୀଜାତିର କ ନୀରବ ଅଭିଯାନ । ସେକ୍ସପିଅରଙ୍କ ଯୁଗଠାରୁ ନାଟ୍ୟକଳା ବହୁତ ଉନ୍ନତ କରିଛି, ବିଜ୍ଞାନ ଫଳରୁ, ନୂଆ ଉଦ୍ଭାବନ ଫଳରୁ । ତଥାପି ସେକ୍ସପିଅର ସେ କାଳରେ ଦିନର ଆଲୁଅ ଥାଇ ଥିଏଟର ଦେଖାଇ ଭାଷାରେ ଧାରଣା ଦେଉଥିଲେ, ସୂଚନା ଦେଉଥିଲେ, ପ୍ରତ୍ୟେକ ନାଟକର ପ୍ରଥମ ଅଙ୍କରେ ନାଟକର ସାଧାରଣ ଉପର ଛାଇ ଦେଖଣାହାରୀଙ୍କ ଉପରେ ପକାଉଥିଲା । ଅନ୍ଧାର ରାତି, ଭୂତ ଭୟ, ଯୁଦ୍ଧର କଥା, ଅଜଣା ଆଶଙ୍କା, ଏଥିରେ ଆରମ୍ଭ ହ୍ୟାମ୍ଲେଟ ନାଟକ । ଅନ୍ଧାର ଭିତରେ ଗଡ଼ର ଧାସ ବଣିଯାଉଛି ପ୍ରେତପୁରୀ ପରି । ହଠାତ୍ ବନ୍ଧୁକ ଫୁଟିଲା ପରି ଶୁଭିଲା ପହରୀର "ହୁକୁମଦାର" । ସାରା ନାଟକ ଭିତରେ ଟ୍ରାଜେଡ଼ିର ଗୋଟାଏ "ବାୟୁମଣ୍ଡଳ" ରଖିଲେ ଧାରଣା ହୁଏ ବେଶି ଘନ । ଗଳ୍ପ ଦୃଶ୍ୟ ସଙ୍ଗେ ନୂଆ ଦୃଶ୍ୟର ବିସଦୃଶ ତୁଳନା ଗଳ୍ପ-ଜୀବନର ସୂକ୍ଷ୍ମ ମଧ୍ୟ ଟ୍ରାଜେଡ଼ିରେ ବ୍ୟବହାର କରାଯାଏ । ପ୍ରଥମ ଅଙ୍କରେ ଉଷା ଖେଳି ବୁଲୁଥିଲା ସାଙ୍ଗ ଝିଅଙ୍କ ସାଥିରେ । ଦ୍ୱିତୀୟ ଅଙ୍କରେ ଉଷା ଜ୍ଞାନ ପାଇଛି । ସେଇ କଥାବୁଦାସେରା କାର୍ତ୍ତିକ ମାଳତୀର ଅରମା ଭିତରେ ଖେଳ; କିନ୍ତୁ ଉଷା ନାହିଁ । ସାଙ୍ଗପିଲା କହୁଛନ୍ତି, "ଏଇ କାର୍ତ୍ତିକ ସେଥିପାଇଁ ଉଷା ପାଉଥିଲା, ଛେଚରୁ ପଡ଼ ଏଇ ନେଳି କାଚରେ ଉଷା ଗୋଡ଼ କାଟିଥିଲା ।" ଏ ବିସଦୃଶ ଗୁଣ ଉଷା ପ୍ରତି ସହାନୁଭୂତି ଆଣିପାରେ, ଉଷାର ବର୍ତ୍ତମାନ ଅବସ୍ଥା ଉପରକୁ କରୁଣାର ଛାଇ ପକାଇପାରେ । ପୁଣି ଶେଷ ଅଙ୍କରେ, ଘର ଧାଉଡ଼ିକୁ ଲଗି ମେଲା ଅଗଣା, ଶୂନ୍ୟ, ଖାଲି ଗୋଟାଏ ଗଛରେ ଲଗିଛନ୍ତି ପଚିଲେ କୁଳୁକୁଳୁ ପୋକ । ଏକୁଟିଆ ଉଷା, ସଂସାରର ଏତେ ଉପଦ୍ରବ ବିରୁଦ୍ଧରେ ଲଢ଼ି ଲଢ଼ି କ୍ଳାନ୍ତ । ବିଦାୟ ନେଇ ଗ୍ଭଲିଯିବା ବେଳେ ସେତେବେଳେ ସେ କହୁଛି, "ମାଳତୀ ଫୁଲ ଝଡ଼ୁଥିବ, କାର୍ତ୍ତିକ ଦୋହଲୁଥିବ" ସେତେବେଳେ

ସ୍ତୃତଗୁଣା ଧାରଣା ଗୁଳିଯାଏ ପାଖକୁ ପାଖ ଲଗାଲଗି କରି ରଖିବାକୁ । ଖେଳ, ଆନନ୍ଦରେ ନାଚିତ ମାଳତୀ ପାଖେ ପ୍ରଥମ ଅଙ୍କର ହସ, ଆଉ ଜୀବନ-ସଞ୍ଚାର ଏ ହସ । "କୋଣାର୍କ"ର ବିଶୁ ଧରମାର ମୃତ୍ୟୁର କାରଣ କୋଣାର୍କ ମନ୍ଦିରକୁ ଭାଙ୍ଗିବାକୁ ହାତ ଟେକୁଛି; ଆଉ ପ୍ରତି ପଥରଚେକାରେ ଦେଖୁଛି ଧରମାର ହସ ହସ ଢଳ ଢଳ ମୁହଁଟି । ହାତ ଥରି ଥରି ଖସି ପଡ଼ୁଛି, ଶେଷରେ ମନ୍ଦିରର ପଥର ଦେହରେ ବୁକୁ ଚିପି ବିଶୁ ଡାକିଲା, "ଧରମା !" ବୁଝିଲା, ସେହି ତାର ମୃତ୍ୟୁ ।

ଉପାୟ ଯାହା ହେଉ, ଅସଲ ହେଉଛି ଧାରଣା । ଭାଷାକୁ ଏ ପାଖ ସେ ପାଖ ମୋଡ଼ୁଛନ୍ତି, ଅଭିନୟ ଉପରେ ବେଶି ଆଖି ରଖୁଛନ୍ତି, ଅବାସ୍ତବ କଥା କହୁଛି, ଧାରଣା ଦେବା ଲାଗି କେତେ କଣ ଉପାୟ ଷ୍ଟେଜ ଉପରେ ବ୍ୟବହାର କରାହେଉଛି । ହତାଶା ଦୁଃଖ, ଦେଖାଇବାକୁ ସୁବିଧା ଦେଖି । ଘର୍ଘର, ଘର୍ଘର (ଚକ ଫେଟିଲା ପରି ନୋହିଲେ ରେଲ ଚାଲିଲା ପରି) ଶବ୍ଦ କଲେ ମନ ଭିତରେ ହୁଏତ ଧାରଣା ହେବ ଯେପରି ସବୁ ମଡ଼ି ଚୂରି ଗୁଣ୍ଡା ହୋଇଯାଉଛି । ହୁଏତ ଷ୍ଟେଜ ପଛରେ ଦିଶୁଛି back ground ହିସାବରେ ଗୋଟାଏ ଭଙ୍ଗା ଘର, ଧୀରେ ଧୀରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଛି । ଏ ସବୁ ଥିଏଟର କାଇଦା, ମୋଟ ଉପରେ ଆଲୁଅ, ଶବ୍ଦ, ଢଆଣ, ସାଜ ଏସବୁ ଉପରେ ବୈଜ୍ଞାନିକ ଉପାୟରେ ନଜର ପଡ଼ୁଛି, ତା ପରେ ଭାଷା ତ ଅଛି । ଅଳ୍ପ ସମୟ ଭିତରେ ବହୁତ ଅନୁଭୂତି, ବହୁତ ଘଟଣା ଦେବାକୁ ହେବ; ତେଣୁ କଥାବାର୍ତ୍ତା ଦେବାକୁ ହେବ ବାଛି ବାଛି, ଯେପରି ଅଳ୍ପ କଥାରେ ଇଙ୍ଗିତ ରଖି ଜୀବନ ଗୋଟାଯାକ ହାଲୋଳ-ମୟ ହୋଇପାରିବ, ଯେପରି ଷ୍ଟେଜ୍‌ର ସାଜ ଆଉ ଭାଷାର ଅର୍ଥ ଉଭୟ ମିଶି ଧାରଣାକୁ ବହଳ କରିବେ ।

ସଂସ୍କୃତ ନାଟକ ଭିତରେ କରୁଣ ରସ ପ୍ରଚୁର ଅଛି; କିନ୍ତୁ କୌଣସି ନାଟକ କରୁଣ ରସରେ ଶେଷ ନୁହେଁ । ଏହାର ଦୁଇଟି କାରଣ ଥାଇପାରେ । ହୁଏତ ସେମାନଙ୍କର ମନ ଦୁର୍ବଳ ଥିଲା । ସେମାନେ କରୁଣ ନାଟକ ସହିପାରୁ ନ ଥିଲେ, ନୋହିଲେ ଅନ୍ୟ କିଛି କଥା ଥିଲା । ପ୍ରଥମ କାରଣ ଶୁଣି ହସ ମାଡ଼େ । ସଂସ୍କୃତ ସାହିତ୍ୟରେ କରୁଣ ରସର ଝରି ପଡ଼ୁଛି । ଅର୍ଥସମ୍ପତ୍ତି, ଇଙ୍ଗିତ, ବ୍ୟଙ୍ଗ, ଉପାୟ, ସବୁଥିରେ ସେମାନେ ସିଦ୍ଧହସ୍ତ । ଏତେ ବିଶ୍ଳେଷଣ କରି ରସକୁ ଯେଉଁ-ମାନେ ଦେଖୁଥିଲେ, ସଂଯମ ଥିଲା ଯେଉଁମାନଙ୍କର ପେଷା, କରୁଣ-ନାଟକଠାରୁ ସେମାନେ ଶଙ୍କୁଥିଲେ ! ନାଟକ ଭିତରଯାକ କରୁଣର ଅନ୍ଧାର ରଖି ଶେଷରେ ଆଲୁଅ ଦେଖାଇବା ସପକ୍ଷରେ ସେମାନଙ୍କର ନିଶ୍ଚୟ କୌଣସି ତଥ୍ୟ-ମୂଳକ ନୀତି

ଥିଲା । ଯେଉଁମାନେ ଜୀବନର ଟ୍ରାଜେଡ଼ିକୁ ଏତେ ସୁନ୍ଦର ଅନୁଭବ କରିଥିଲେ, ବୋଧହୁଏ ବୋଝ ଉପରେ ନଳିତାବିଡ଼ା ଲଦି ମୁହଁ ପୋଛି ପୋଛି "ହା ! ଆହା" କରି ଘରକୁ ପଠାଇବାକୁ ସେମାନେ ପସନ୍ଦ କରୁ ନ ଥିଲେ । ନିମ୍ନ ହିସାବରେ କରୁଣକୁ ବିଶ୍ଳେଷଣ କରିଯାଉ; କିନ୍ତୁ ଜୀବନର ନୀତି ଯେପରି ତାହା ନ ହେଉ, ବୋଧହୁଏ ଏହି ଥିଲା ତାଙ୍କର ନୀତି । ଯେତେ ଦୁଃଖ ଆସିଲେ ବି ଅମୃତର ସନ୍ତାନମାନଙ୍କର ଚରମ ହେଉଛି ଆନନ୍ଦ । କି ଆଶାସ୍ଥୀ ବିଶ୍ୱାସ ! କିନ୍ତୁ ଏ ଯୁଗର ଧାରଣା, କରୁଣ-ନାଟକ ଆଜି ଅତି ଉଚ୍ଚ ସାହିତ୍ୟ । ଆନନ୍ଦକୁ ଆମେ ଖୋଜିବୁଁ, କର୍କଶ, କଠୋର, ଗଦ୍ୟମୟ ବାସ୍ତବତା ଭିତରେ । ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ଉଚ୍ଚ ଟ୍ରାଜେଡ଼ି ଲେଖା ହୋଇନାହିଁ । ଏ ଦେଶର ପ୍ରତି ଧୂଳିକଣାରେ କାରୁଣୀ, ଆକାଶନଈରେ କରୁଣର ସ୍ଥାଇ । ଦୁର୍ଭିକ୍ଷ, ମଡ଼କ, ବଢ଼ିମରୁଡ଼ିର ଦେଶରେ କାରୁଣୀ ନାହିଁ ?

ଏ ଜାତିଟା ଯେ ନିଜେ ଗୋଟାଏ ଟ୍ରାଜେଡ଼ି; କେବଳ ବର୍ତ୍ତମାନର ନୁହେଁ, ଅତୀତର । ଖାରବେଳର ! ମୁକୁନ୍ଦର !



# ବନ୍ଧା ଖୋଲା

ଅସନା ଜଙ୍ଗଲିଆ ବାଉଘର; ଅଗଣାରେ ଅସନା ଅପୋଷ୍ଟ ଗୁଣ ପାଖୋଟି ଛୁଆ କଲିଗୋଳ କରୁଛନ୍ତି । ନୁଆଁଣିଆ ପିଣ୍ଡାରେ ଚୌକିଆ-ପୋଷାକ-ପିନ୍ଧା ପାଞ୍ଚହାତିଆ ମରଦ, ପାଖରେ ମୋଟା ଗଣ୍ଠି ଗଣ୍ଠିଆ ପାଚିଲା ବାଡ଼ି, ମୁହଁରେ ଲମ୍ବା ପିକା । ବାଡ଼ି କହୁଛି ପିକା ଧୂଆଁରୁ ବାହାରି ଯେଉଁ ଠିଆକାନିଆ କୁକୁରଟି ଧକାଉଛି, ପିଠିରେ ଯାର ସ୍ଥାନେ ସ୍ଥାନେ ଘୁଲା ଘୁଲା ଲୋମ, ସେ ଉପେଇ ମଲିକର କୁକୁର । ଗାଁର ଯେ କେହି ଶପଥ କରି କହିପାରିବ, ଏ ଘରଟି ତାର—ଏ ଲୋକଟି ସେ ନିଜେ । ବାଉରେ ଯେଉଁ ଗାଈଗୋଟି ଦରମରା କଖାରୁନଡା ଚୋବାଉଛି କରୁଛି, ସେ ଉପେଇର ନିଜ ଉପାର୍ଜିତ ଗାଈ । ଏ ସ୍ଥାନକୁ ଆସିଲେ ଗୁଣଆଡ଼େ ଯେମିତ ଉପେଇ ମଲିକର ଅଧିକାର ପରିଷ୍କାର ଦିଶେ, ଏ ସ୍ଥାନର ପବନ ଯେପରି ବାସି ଉଠେ—ଉପେଇ ମଲିକ ! ଉପେଇ ମଲିକ ! ଚୌକିଆ ଶ୍ରୀ ଉପେଇ ମଲିକ ! ଆଉପାଖେ ଆହୁରି ଗୋଟିଏ ଚିତ୍ର—ତଳେ ମାଟି ଉପରେ ନେଳି ଆକାଶ; ମଝିରେ ଗୋଟିଏ ଜନ୍ତୁ—ମଣିଷ; ତାର ନାଁ ନାହିଁ, ଗାଁ ନାହିଁ, ଜାତି ନାହିଁ, ଗୋତ୍ର ନାହିଁ, ପୋଷାକ ନାହିଁ, ଖାଲି ମଣିଷ ।

ଉପେଇ ମଲିକ ରହିବ ଉପେଇ ମଲିକ, ମଣିଷ ରହିବ ମଣିଷ । ଉପେଇକୁ ବିଲାତର ଲୋକେ କେବେବେ ନାହିଁ ନିଜର ବୋଲି, ଖୋଲା ଆକାଶତଳର ମଣିଷକୁ ହୁଏତ କହିପାରନ୍ତି । ଏ ମଣିଷର ଜାତି ଗୋତ୍ର ପୃଥିବୀର ଯେ କୌଣସି ସ୍ଥାନର ଲୋକେ ନିଜର କହିପାରନ୍ତି । ଉପେଇ ମଲିକ ରହିବ ଉପେଇ ମଲିକ, ଜାତି ମଲିକ, ପେଷା ଚୌକିଦାରୀ, ନିବାସ ଗ୍ରାମ ମଚ୍ଛିପୁର ଇତ୍ୟାଦି ଇତ୍ୟାଦି ।

ଦୁଇଜଣ ମଣିଷ; କିନ୍ତୁ ଜଣେ ଘରର, ଜଣେ ବାହାରର । ଜଣେ କୌଣସି ଗୋଟିଏ ସ୍ଥାନର (local), ଆଉ ଜଣେ ସାରା ବିଶ୍ବର (universal) । କିନ୍ତୁ ଦୁହେଁଯାକ ମଣିଷ ! ଏ ଫରକ କାହିଁକି ? କେବଳ background (ତଳିରଙ୍ଗ) ଲାଗି ତ ! ଉପେଇ ମଲିକକୁ ନିଜ ଘରୁ ନେଇ ଯାଇ ପୋଷାକ ଖୋଲି ଅଚିହ୍ନା, ବିଦେଶ ଜାଗାରେ ଛାଡ଼ିଦେଲେ କିଏ କହିବ ଏ ଉପେଇ ମଲିକ ବୋଲି ? ସାହିତ୍ୟରେ ବର୍ଣ୍ଣନା ବା ବିଷୟବସ୍ତୁ ଭିତରେ ଦୁଇଟି (type) ପ୍ରକାର ଦେଖିବାକୁ ମିଳେ—ଗୋଟିଏ କୌଣସି ବିଶିଷ୍ଟ ଅଧିକାରର ପରିଚୟ ଦିଏ

(local), ଆଉ ଗୋଟିଏ ସାର୍ ବଣ୍ଟର, ଯହିଁରେ ତାହାର ବଶିଷ୍ଟ ଅଧିକାର ନାହିଁ; କିନ୍ତୁ ଯାର୍ ମଣିଷ ଜାତି ନିଜର ବୋଲି ଦାବୀ କରିପାରିବ । ବିଶ୍ୱସାହିତ୍ୟ କହିଲେ ସେମା ସେର୍ଙ୍କ, ହାଇନ୍‌ଟମାନ୍ କିମ୍ବା ରବିଠାକୁର ବୁଝାଏ ନାହିଁ, ବିଶ୍ୱ ସାହିତ୍ୟ କହିଲେ ବୁଝାଏ, ଯେଉଁ ସାହିତ୍ୟ ବିଶ୍ୱର, ଯେଉଁଥିରେ ସାର୍ ମଣିଷ-ଜାତିର ଅଧିକାର । ଛହିଁରେ ଅଖି ପଡ଼େ ନାହିଁ ପଖାଳ କଂସା କିମ୍ବା ଖ୍ଚ ଟେବୁଲ ଉପରେ, ପୋଷାକର ପାର୍ଥକ୍ୟ ବା ସଂସ୍କାରର ପାର୍ଥକ୍ୟ ଉପରେ । ଆଖିପଡ଼େ ମଣିଷର ମଣିଷ ହିସାବରେ । ଆକାଶ ତଳର ପ୍ରାଣୀ ମଣିଷ ବୋଲି ଜାତି—ନର-ନାରୀ । ତାର ସୁଖଦୁଃଖ ସବୁ ମଣିଷର; ତାର ମଣିଷ ହିସାବରେ ବନ୍ଧନ । ସବୁ ମଣିଷର; ତାର ଜୀବନ ମଣିଷର ।

ଏପରି ଅବସ୍ଥା ଆସେ କେତେବେଳେ ? ଯେତେବେଳେ background ରହେ ଏପରି, ଯାହା ହୁନଆସାର୍ ସବୁଠି ସମାନ, ଯାହା ଚିରଯୁଗ ରହିଛି, ଚିରଯୁଗ ରହିଥିବ, ଗୋଟାଏ ବିରାଟ ଶୂନ୍ୟତା, ଅସୀମର ପରିକଳ୍ପନା କେବଳ ମଣିଷକୁ ମଣିଷ ସଙ୍ଗେ ଛିଡବାକୁ ।

କିନ୍ତୁ ମଣିଷ ଅସୀମର background ଆଗରେ ସମତାର ବିଶ୍ୱ ଗୁଣ ଧରି ବସି ରହେ ନାହିଁ । ତାର ରଙ୍ଗ ଆସେ, ଗୁଣ ଆସେ, ଅଚରଣ ଆସେ, ମନ-ଗଢ଼ା, ସମାଜଗଢ଼ା ସଂସ୍କାର ଆସେ । ପରିସ୍ଥିତିର ସେ ରଙ୍ଗ, ନିଜହିର ସେ ସଂସ୍କାର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନରେ ଫରକ ହୁଏ; ତେଣୁ ଜାତି, ଗୋଷ୍ଠୀ, ବଶିଷ୍ଟତା, ଅଧିକାର, କେତେ କଣ ବାଡ଼ରେ ସେ ଆପଣାକୁ ଘେରାଇ ରଖେ ବିରାଟ ଅସୀମ, ବିରାଟ ଶୂନ୍ୟତା ଭିତରେ ନିଜକୁ ସସୀମ, ସ୍ଥୂଳ କରି । ସାହିତ୍ୟରେ ଏ ସଂସ୍କାରର ବାସନା ପାଇଁ, ଏ ଗୁଣର ଠନ୍‌ଠାନ୍ ଆବାଜ ଶୁଣୁ; ତେଣୁ ସାହିତ୍ୟ ମଝିରେ ବାଡ଼ ଦେବାର ସୁବିଧା ହୁଏ । ବିରାଟ ଫାଙ୍କି, ସବୁଥିରେ "ଅସୀମର ଗ୍ରନ୍ଥ", "ଅରୂପର ରୂପ" ଏପରି ଓଲଟା କଥା; ସବୁଥିରେ ଅତି ଚପଳ-ଭାବ-ପ୍ରବଣ, ବିଦେଶୀ ନକଲର ପୁନର୍ନକଲ ! ବିଷୟବସ୍ତୁରେ କାଶୀବାସଠାରୁ ଓଡ଼ିଆ ମାଇ, ପଶ୍ଚିମା ଦରବାନ, ଅକାରଣ ପ୍ରେମ, ପୁଣି ଉଚ୍ଛୃଙ୍ଖଳତା, ଉତ୍ସାହ, ଲଳିତ ପଦରେ ଭାବ, ଉନ୍ନତ କରିବାକୁ ଚେଷ୍ଟା ଏ ଆବାଜ ଯେପରି ଆସେ ଏ କାଳର "ଶସ୍ତା" ସାଧାରଣ ବଙ୍ଗଳା ସାହିତ୍ୟରୁ, ଚପଳତା, ସଂସ୍କୃତିର ଟଳମଟଳ ଅବସ୍ଥା, ଭାବର ଅସ୍ୱାଭାବିକତା, ବଙ୍ଗଳାରୁ ଅନୁକରଣ, ଉନ୍ନତ କରିବାକୁ ଚେଷ୍ଟା, ଏକାଦନକେ ବଡ଼ ହେବାର ଇଚ୍ଛା, ଏ ଆବାଜ ଆସେ ଆଜକାଲିକା ଓଡ଼ିଆ ସାହିତ୍ୟରୁ । ଅଭ୍ୟାସ ପଡ଼ିଲେ ଧରି ପଡ଼ିଯାଏ କେଉଁଟା କିପରି ସାହିତ୍ୟ—କେବଳ ଏ ସାଧାରଣ ଗୁଣରୁ ।

ମଣିଷର ଏ ସ୍ୱତନ୍ତ୍ରତାର ବାଡ଼ କଣ ଭୁଲ୍ଛା ଅନର୍ଥ ? ତା ନୁହେଁ ? ସବୁ ତ ଅସୀମ; ଏ ଅସୀମ ଭିତରେ ସସୀମର ସୃଷ୍ଟି କପରି ହେଲା ? ଅରୂପରେ ରୂପ ଲାଗି, ଶୂନ୍ୟତା ଭିତରେ ରଙ୍ଗ, ଆକାର ଆସି । ଶୁଣ୍ଠରୁ ରଙ୍ଗ, ଯେଉଁଠି କିଛି ନଥିଲା ସେଠି ଏ ଅକଳ୍ପିତ ଅବତାର ଆପେ ଗୋଟାଏ ବଡ଼ ବନ୍ଧ । ସ୍ୱାର୍ଥର ମୋହ ତୁଟିଲେ ସ୍ୱତନ୍ତ୍ରତାର ବାଡ଼ ଭାଙ୍ଗିଲେ ସୃଷ୍ଟି ସରଲା । "ମୁଁ" ଲୋପ ହେଲେ ସବୁ ଶେଷ, ମଣିଷ ମଣିଷ ନୁହେଁ, କିଛି ନୁହେଁ !

ସ୍ୱତନ୍ତ୍ରତାର ବନ୍ଧନ ବେଳେ ବେଳେ ଭାଙ୍ଗେ । ସେତେବେଳେ ସାହିତ୍ୟ ଛୁଏଁ ସବୁ ଦେଶର ସବୁ ମଣିଷଙ୍କ ପ୍ରାଣକୁ । ସବୁ ଖୋଲା, ପବନ ପରି ଖୋଲା, ଆକାଶ ପରି ମେଲା । ସ୍ୱାର୍ଥର ବନ୍ଧନ ଭାଙ୍ଗି ଦୀପ ଜଳିଆସେ । ସେତେବେଳେ ଦେଶ ଜାତିର ବ୍ୟବଧାନ ଆଉ ରହେ ନାହିଁ; ସବୁ ହୁଏ ଗୋଟାଏ ଜାତି— ମଣିଷ । ସୁଂ-ଗୁଂ ମରେ ସ୍ୱାସିଂ ନଈ କୂଲରେ, ଅପଲ୍ଗ୍ରେ ପଡ଼େ । ତାର ଦୁଃଖ ବାଜେ ଦୂର ଓଡ଼ିଶାର ପଲ୍ଲୀରେ । ଏତେ ଲୋକ ଯୁଦ୍ଧରେ ମରନ୍ତି, ଟାଇଫୁନ ଝଡ଼ରେ ମରନ୍ତି, ଭୂମିକମ୍ପରେ ମରନ୍ତି, ସାରା ମଣିଷ ଜାତି ବୁଝେ, ସାରା ମଣିଷ ଜାତି କାନ୍ଦେ । ମରଣ ସ୍ୱାର୍ଥର ଅତି ବଡ଼ ଶତ୍ରୁ; କିନ୍ତୁ ସମତାର ଅମୃତ ସେ ଆଣେ । କଳା ଆକାଶରେ ବଜ୍ରପାତ, ତୋଫାନ, ଧ୍ୱଂସ, ପ୍ରଳୟ, ମହାବିପ୍ଳବର ଅମାନିଶା ତଳେ ମଣିଷ ଶିଶୁ ପରସ୍ପରକୁ ଖୋଜେ, ଯାପ୍ଟି ଧରେ, ସ୍ୱତନ୍ତ୍ରତାର ସବୁ ବନ୍ଧନ ଭାଙ୍ଗେ । ସେତେବେଳେ ରହେ ଗୋଟାଏ ଜାତି—ମଣିଷ, ଦୁଃଖୀ ମଣିଷ !

ନରନାରୀଙ୍କ ଆକର୍ଷଣ ଗୋଟିଏ ବିଶ୍ୱଗୁଣ । ମାଂସ ଲାଗି ମାଂସ କାନ୍ଦେ କଷ୍ଟ ପାଏ, ଉଲ୍ଲାସରେ ଥରେ—ସବୁଠିଁ, ସୃଷ୍ଟିର ଚଳନ୍ତ ଲାଗି । ଏ ଗୁଣ କାହାର ଏକା ନୁହେଁ, ମଣିଷ ଜାତିର । ରୂପର ମୋହ, ସ୍ପର୍ଶର ମୋହ, ତାର ଉପରେ କଳ୍ପନାର ସ୍ୱପ୍ନ । ଆଖି ଚଳ ହେଉ କି ନାଲି ହେଉ, ଚମ୍ପନ ତଳର କେଶ ସୁନେଲି ହେଉ କି କଳା ହେଉ, ବାସନା ହେଉ ନୋହିଲେ ଫୁରଫୁରିଆ ଉକୁଣି-ମିଶା ହେଉ, ଦେହ ଦୁଇଟି, ଦୁଇଟି ମନର ଚୁମ୍ବକ ଆକର୍ଷଣ ଭିତରେ ଏ ଆବରଣ ଆଖିରେ ପଡ଼େ ନାହିଁ । ଏ ଦେଶରେ ସୁଅଙ୍ଗ ଡାକ, ବୋହୂ ବାହୁନା, ସେ ଦେଶକୁ ଲାଗିବ ଶିକ୍ଷାର ଅଭାବ ବୋଲି; ସେ ଦେଶର ପ୍ରକାଶ୍ୟ ପ୍ରେମ ବିଭାଘରରେ ନୂଆ ବୋହୂର ଉତ୍ସାହ ମିଶା ଚୁମ୍ବନ, ଦଶ ଲୋକଙ୍କ ଆଗରେ, ଏ, ଦେଶକୁ ଦିଶିବ ବର୍ବର ଅସଭ୍ୟତା ବୋଲି; କିନ୍ତୁ ପଦ୍ଧତି ଆଗ୍ରହ ଭିନ୍ନ ହେଲେ ସୁଦ୍ଧା ମୂଳ ଆକର୍ଷଣ କେହି ଭୁଲିବେ ନାହିଁ । ପଡରସାଉଁଟି ଟୋକା ଗାଇଥିଲା ଟୋକୀକୁ କରଜର ଅଖିରେ ଗୁହେଁ, ଏ କଥା ହେମାନେ ଯେପରି ହୃଦକୁ ଯେନ

ପାରିବେ, ଗ୍ଲ' ଟ୍ରେଭ୍‌ଲ ତଳେ ଗୋଡ଼ ଗୋଡ଼ ଭିତରେ ହିନ୍ଦନମିଶା ଆକର୍ଷଣୀ କଥାବାର୍ତ୍ତା ଏ ଦେଶର ଆମେ ସେପରି ବୁଝିପାରିବା । ମୌଳିକ ଗୁଣ ଭିତରେ ସ୍ୱତନ୍ତ୍ରତାର ବାଡ଼ ଆସି ନ ପାରେ ।

ଜୀବନର ଆନନ୍ଦ ବା ଦୁଃଖ ଅନେକ ସମୟରେ ଲାଗେ ଗୋଟାଏ ବିଶ୍ୱଗୁଣ ପରି । ତା ଭିତରେ ଚରିତ୍ର ବା ବ୍ୟବହାରର ସ୍ୱତନ୍ତ୍ରତା ଅଛି; କିନ୍ତୁ ସେ ବ୍ୟବଧାନ ଏଡ଼ ଗୋଟାଏ ସାଲିସ୍‌ର ଅନୁଭୂତ ଆଖିରେ ପଡ଼େ । ତା ନୋହିଲେ ବିଲାତି ସାହିତ୍ୟର ନାୟିକ ଘରକରଣା ଏ ଦେଶଠୁ ଏତେ ଫରକ, ତଥାପି ତା ଭିତରେ ଆମେ ଆନନ୍ଦ କାହିଁକି ପାଉ ? ଆଫ୍ରିକାର ନିଗ୍ରୋ ଜାତିଙ୍କ ଘର-କରଣା, ଆମେରିକାର ଆକାଶୀ କୋଠାର ସହର ଭିତରେ ସାରା ମଣିଷଜାତିର ସମ ଗୁଣ ମିଳନ୍ତା କିପରି ? ଅବଶ୍ୟ ନୂଆ ଘଷୁ ଥିବା ଆଡ଼କୁ ମଣିଷର ସାଧାରଣ "ଅନୁସନ୍ଧିତ୍ସା" ଯୋଗୁଁ ସହାନୁଭୂତ ଆସିଥାଏ; କିନ୍ତୁ ବିଶ୍ୱଗୁଣର ସମତା ନଥିଲେ ସେ ଚମକ ଘୋଳି ହୋଇପଡ଼ନ୍ତା ।

ବର୍ଷର ଋତୁ ପରିବର୍ତ୍ତନ, ଦିନର ସକାଳ ସଞ୍ଜ ପରି ମଣିଷ-ଜୀବନର ଅବସ୍ଥା । ଶିଶୁ ସମସ୍ତଙ୍କର ଶିଶୁ—ବେଦୁଇନ୍ ହେଉ, ନିଗ୍ରୋ ହେଉ, ଓଡ଼ିଆ ହେଉ, ବଙ୍ଗାଳୀ ହେଉ । ବିଭୂତି ବନ୍ଦୋପାଧ୍ୟାୟଙ୍କ "ଅପୁ" ଏ ଦେଶର 'ଅପୁ', ସେ ଦେଶର 'ଅପୁ', ସବୁ ଦେଶର 'ଅପୁ' । ତାର ଢଙ୍ଗଢାଙ୍ଗ ବ୍ୟବହାର ଭିତରେ ସ୍ୱତନ୍ତ୍ରତା ରହିବ; କିନ୍ତୁ ତା ଭିତରେ ଯେଉଁ ସାଧାରଣ ଶିଶୁ-ଗୁଣ, ସେ ସମସ୍ତଙ୍କର । କାଳିଦାସ ଲେଖିଗଲେ—କିପରି ଟିକି ଟିକି ଦାନ୍ତରେ ଅକାରଣ ହସ, ଅନର୍ଗଳ ନିରର୍ଥକ କଥା, ଧୂଳିବୋଳା ଦେହରେ ଗୁହେଁ କୋଡ଼ରେ ଚଢ଼ିବାକୁ । ଧନ୍ୟ ସେମାନେ, ଯେଉଁମାନେ ସେ ଧୂଳିରେ ଧୂଳିଆ ହୁଅନ୍ତି । କି ସୁନ୍ଦର ! କବି ଗୟଟେ ବୁଝିଲେ, ଇଉରୋପ ବୁଝିଲା, ସମସ୍ତେ ବୁଝିଲେ । ସବୁ ସାହିତ୍ୟରେ ଜୀବନର ଭିନ୍ନ ଭିନ୍ନ ଅବସ୍ଥା ମଣିଷର ମନକୁ ସମାନ ଢଙ୍ଗର ଆଣିଥାଏ ।

ସ୍ୱପ୍ନପ୍ରିୟ ମଣିଷର ସ୍ୱପନ ମୋହ, ଆଦର୍ଶବାଦ, ସୁନ୍ଦର ପ୍ରତି ଆକର୍ଷଣ ଭିତରେ ବିଶ୍ୱ-ବାଦ ଅଛି । ସାରା ଜୀବନ ଜନ୍ମଠୁଁ ମରଣ ପର୍ଯ୍ୟନ୍ତ ମଣିଷ ଚାଲେ ଖାଲି ସ୍ୱପ୍ନ ମଝିରେ । ଯେଉଁ ପାଖଟି ତାର ଦେଖା ପରଖା, ସେ ଗୋଟାଏ ଘରବ ପରି । ସ୍ୱପ୍ନ ଅସୀମର ଶକ୍ତି । ଯାହାକୁ ଆଶ୍ରା କରି ମଣିଷ ଗଢ କରେ, ତାର ଭିତରେ ଆଶା, ଆକାଙ୍କ୍ଷା, କଳ୍ପନା, କବିତା; ଅନୁଭୂତି ଭିତରେ ଦୂର ଦୂର ମରେ କେଉଁ ଅପୂର୍ଣ୍ଣତା ଟିକିକ ଅଶ୍ରା କରି । ସାଧାରଣ ମଣିଷ ଜୀବନର ସ୍ୱତନ୍ତ୍ରତା ଭିତରେ କେବଳ ଏହି ବିଶ୍ୱଗୁଣ ହେତୁ ଗୋଟାଏ ଦେଶର ସାହିତ୍ୟ ଅନ୍ୟ ଦେଶର

ଲୋକ ଏତେ ସହଜରେ ବୁଝିପାରେ । ଦେଶକାଳପାତ୍ରର ସ୍ୱତନ୍ତ୍ରତାର ବ୍ୟବଧାନ ଏଡ଼ି ମନ ଚାଲିଯାଏ ସିଧା ଏଇ ସ୍ୱପ୍ନ ରାଜ୍ୟକୁ । ସେକ୍ସପିଅରଙ୍କ ନାଟକରେ କେତେ ଦେଶର କଥା ଅଛି—ଇଂଲଣ୍ଡ, ସ୍କଟଲଣ୍ଡ, ରୋମ, ଭେନସ୍, ଇଜିପ୍ଟ କେତେ ଦେଶର, ପୁଣି କେତେ ଯୁଗର । ସେ ଦେଶର ଧରଣ, ଚାଲିଚଳଣି କେତେ ପୃଥକ୍; କିନ୍ତୁ ତାଙ୍କ ନାଟକର ଆମ ମନରେ ଯେଉଁ ସ୍ମୃତି, ସେ ଏଇ ସ୍ୱପ୍ନ-ମିଶା ମଣିଷର, ସ୍ଥାନକାଳପାତ୍ରର ଜାତି-ବିଶେଷର ନୁହେଁ । ସିଜରଙ୍କ ପୋଷାକ, ଚେହେରା କହିଲେ ଭିନ୍ନ ଭିନ୍ନ ଲୋକଙ୍କ ମନରେ ଭିନ୍ନ ଭିନ୍ନ ଧାରଣା ଆସେ । ମ୍ୟାକ୍‌ବେଥ୍‌ଙ୍କ ଦୁର୍ଗ କହିଲେ ଝାପ୍‌ସା ଝାପ୍‌ସା ଦିଶେ ଗୋଟାଏ ଭୟଙ୍କର ଦୁର୍ଗ, କିଛି ପରିଷ୍କାର ନୁହେଁ; କିନ୍ତୁ ତା ଭିତରେ ଯେଉଁ ରୋମାନ୍ସ, ଯେଉଁ ବିଭୀଷିକା, ଚରିତ୍ରର ଯେଉଁ ଭୟଙ୍କର ରୂପ, ତାର ମୋଟାମୋଟି Impression ଗୋଟାଏ ରୂପ ଘେନି ସ୍ମୃତିପଥରେ ଉଦିତ ହୁଏ । ଏ ଦେଶର ଅଧିକାଂଶ ଲୋକ ନରୱେ ଦେଶର ଗ୍ରାଇ ମାଡ଼ି ନାହାନ୍ତି, ରୁଷ୍ ଦେଶର ନଦୀ ପଶି ନାହାନ୍ତି; ତଥାପି ସେ ଦେଶର ସାହିତ୍ୟରେ ସମସ୍ତେ ଏତେ ମସ୍‌ଗୁଲ୍ କାହିଁକି ? କାରଣ ରୁଚି ଛବିର ମୋହ, ବୁଲିବା ନିଶାରେ ସେ ଦେଶକୁ ଆମେ ଗ୍ରହୁଁ ନାହିଁ । ସାହିତ୍ୟ ଭିତରେ ଗୋଟାଏ ପ୍ରାଣର ସ୍ପନ୍ଦନ ଆମେ ପାଉଁ, ଯାହା ଆମ ଭିତରେ କିଛି ତଫାତ୍ ରଖେ ନାହିଁ; ଗୋଟାଏ ସ୍ୱପ୍ନର ମୋହ ଆମେ ଦେଖୁଁ, ଯହିଁରେ ସେ ଦେଶର ସେମାନେ ଯେତିକି ଦାବୀ କରିବେ, ଏ ଦେଶର ଆମେ ସେତିକି ଦାବୀ କରିବା; କାରଣ ଆମେ ମଣିଷ । ଇବ୍‌ସେନ୍‌ଙ୍କ ନୋରା କପଟ ଧଡ଼୍ ଧାଡ଼୍ କବାଟ ପିଟି ରାସ୍ତାକୁ ଚାଲିଗଲା, ଏ ଦେଶର ସାହିତ୍ୟରେ ସମସ୍ତେ ତାର ଉଲ୍ଲେଖ କରିଥାନ୍ତି । ସେମାନଙ୍କ ଖାଦ୍ୟ ଅଲଗା, ପୋଷାକ ଅଲଗା । ଯଦି ସେମାନଙ୍କ ସଙ୍ଗେ ମୁହାଁମୁହିଁ ପରିଚୟ ବା ହୁଏ, ତେବେ ବୋଧହୁଏ ସେମାନଙ୍କ ଆଡ଼କୁ ପ୍ରାଣେ ପ୍ରାଣେ ଆମର ସହାନୁଭୂତି ଢଳିବ ନାହିଁ; ତଥାପି ସମସ୍ତେ ଜାଣନ୍ତି, ସମସ୍ତେ ଲେଖନ୍ତି । କବାଟର ଧଡ଼୍‌ଧାଡ଼୍ ଶୁଭିଲା ସାରା ପୃଥିବୀର ପ୍ରାଣ ଭିତରେ । ଫରାସୀ ବେଙ୍ଗ ଖାନ୍ତି, ଚିନା ଖାନ୍ତି ଚଢ଼େଇ ବସା, ସାହେବ ଘୁଷୁରି, ସାନ୍ତାଳ ଖାନ୍ତି ଝିଣ୍ଟିପୋକ । ଆହୁରି କେତେ ଅପରୂପ ଖାଦ୍ୟ ଅଛି, ଯେଉଁଥିରେ ଗୋଟାଏ ଜାତିର ରୁଚି ଅନ୍ୟ ଜାତିର ରୁଚି ସଙ୍ଗେ ସଂଘର୍ଷ ଲଗାଇବ; କିନ୍ତୁ ଏସବୁ ସ୍ୱତନ୍ତ୍ରତା ବିଶ୍ୱଗୁଣ ନୁହେଁ । ସ୍ୱପ୍ନର ମୋହରେ, ଆଦର୍ଶର ଚମକରେ ଏସବୁ ପ୍ରଭେଦ ଆମର ନଜର ପଡ଼େ ନାହିଁ । ପଡ଼ିଲେ ସୁଦ୍ଧା ରୁଚିର ସଂଘର୍ଷ ଆମେ ଧରି ବସୁନାହିଁ । ସୁନ୍ଦରୀ ମାନସୀ, ମନର ଆବେଗରେ ଗୁଞ୍ଜି ଉଠୁଛି ଘଡ଼ିକୁ । ସବୁ ସ୍ୱପ୍ନ, ସବୁ ଆଶା ନେଇ ଗୋଟାଏ impressionରେ । ଆମେ ଭୁଲିଯାଉଁ ତାର ଖାଦ୍ୟପେୟ, ତାର ଜାତିଗୋତ୍ର, ଖାଲି ମାନସୀ, ସ୍ୱପ୍ନର ଗୋଟାଏ ମୋହ । କବି କହିଲେ, ସୁନ୍ଦରର ମୋହ

ସବୁଦିନେ ନୂଆ; କିନ୍ତୁ ସେ କଣ ଗୋଟିଏ ସ୍ଥାନର ? ସବୁ ଦେଶ ଲାଗି । ଅବଶ୍ୟ ରୁଚିଭେଦରେ, ମନର ସ୍ୱତନ୍ତ୍ରତାଭେଦରେ ସୁନ୍ଦରର ପରିକଳ୍ପନା ପୃଥକ୍ ପୃଥକ୍ ହୋଇଥାଏ; ତେବେ ସ୍ୱତନ୍ତ୍ରତା ଭେଦ କର ଆଦର୍ଶର ସୁନ୍ଦର ପରିକଳ୍ପନାର ଆବେଗ ଆସିଥାଏ ସମସ୍ତଙ୍କ ମନରେ ।

ଚକ୍ ଚକ୍ ତରଙ୍ଗ ଉପରେ ଅସ୍ତେଯ ବୋଉଆଁଳସର ଶୋଭା, ପାହାଡ଼, ଜଙ୍ଗଲ; ଶାନ୍ତ ନୀଳ ଆକାଶରେ ଜହ୍ନ, କେଡ଼େ ସୁନ୍ଦର ! କେବେ ପୃଥିବୀ ସାରା ଭୁଲି ନାହୁଁ; ତଥାପି ଏଡ଼େ ସୁନ୍ଦର ଲାଗେ କାହିଁକି ? ପ୍ରକୃତିର ଆକର୍ଷଣ ଗୋଟିଏ ବିଶ୍ୱଗୁଣ । ମଣିଷ ଜାତିର ରକ୍ତରେ ଅଛି ଯେଉଁ ଦୂର ଅତୀତର ଆଦିମ କାଳର ପ୍ରକୃତିର ପରିଚୟ, କେବଳ ତାର ଲାଗି ନୁହେଁ । ପ୍ରକୃତି ଭିତରେ କେତେଗୁଡ଼ିଏ ବିଶ୍ୱଗୁଣର ସତ୍ତା ଅଛି । ବାହାରର ପ୍ରକୃତି, ଭିତରର ମଣିଷ ଭିତରେ ସମ୍ବନ୍ଧ, ପ୍ରକୃତିର ମଣିଷ ଉପରେ ପ୍ରଭାବ ! ଭିତରେ ଭଙ୍ଗା ଆଶାଭରସାର ଚିତା, ବାହାରେ ମରୁଭୂମି; ଭିତରେ ଦୁଃଖ, ବାହାରେ କଳା ମେଘ । ନୋହିଲେ ବିପରୀତ ଗୁଣରେ ଯେତେବେଳେ ମନ ଭିତରେ ହତାଶ, ବାହାରେ ହସ୍‌କୁରା ପ୍ରକୃତି । ଫୁଲ, ଫଳ, ପବନ ଭିତରେ ଲେଖି ଯାଉଛି କାରଣେ ଲହରୀ । ପ୍ରକୃତି ନିଜେ ପ୍ରାଣବନ୍ତ ବୋଲି ବର୍ଣ୍ଣନା କରାହେଲେ ସୁଦ୍ଧା ବିଶ୍ୱଗୁଣ ଅଯେ । କାରଣ ପ୍ରକୃତି ଯେତେବେଳେ ନିଜେ ମଣିଷ ପରି ଦିଶେ । ମଣିଷର ସୁଖ ଦୁଃଖ ସ୍ୱତନ୍ତ୍ରତାର ଆବରଣ ଭେଦ କରୁଦିନେ ମଣିଷର ସହାନୁଭୂତି ପାଇଥାଏ; କିନ୍ତୁ ସାରା ମଣିଷ ଜାତିର ଆଖିରେ ଲାଗି ବିଶ୍ୱଗୁଣର ପରିଚୟ ଦେବାକୁ ପ୍ରକୃତିର ସବୁ ପ୍ରକାର ବର୍ଣ୍ଣନା ଉପଯୁକ୍ତ ନୁହେଁ । ଯେଉଁଠି ସ୍ୱତନ୍ତ୍ରତା ବେଶି, ସ୍ଥାନ ବା ବିଶିଷ୍ଟ ଗୁଣ ପ୍ରତି ଉଲ୍ଲେଖ ଅଛି ବେଶି, ସେଠି ପ୍ରକୃତିର ଏ Appeal ମିଳେ ନାହିଁ । କବି Wordsworth (ଉଆଡ଼ସଉଆର୍ଥ) ଡେଜିଫୁଲ ଦେଖି ହଜିଥିଲେ; କିନ୍ତୁ ଡେଜି ଫୁଲର ଧାରଣା ଯାହାର ନ ଥିବ, ସେ କାହୁଁ ସେ ରସ ଚାଖିବ । ଗ୍ରେଟ ଗଛରେ ସଜନା ଫୁଲ ଫୁଟିଛି, ପିଢ଼ାରେ ଫୁଟିଛି କଖାରୁ ଫୁଲ । ସଜନା ଫୁଲର ବାସନା କେବଳ ସୁନ୍ଦର ଲାଗି ନୁହେଁ—ଗରିବ ଗୃହସ୍ଥର ଆଶା ତହିଁରେ ମେଣ୍ଟେ । ଜହ୍ନି-ଫୁଲ ଫୁଟି ଫୁଟି ଆସୁଛି— ବାଡ଼ରେ ପିଢ଼ାରେ, ଗୁହାଳଘର ବାଡ଼ରେ । ଟିକି ପିଲାଏ ବସ୍ତାନି ବାନ୍ଧି ସାରଲେଣି; ଏଥର ଛୁଟି । ଶିଶୁକଳରବମିଶା ଶାନ୍ତ ସନ୍ଧ୍ୟାର ଜହ୍ନିଫୁଲ ! ଓଡ଼ିଶାର ସମସ୍ତେ ବୁଝିବେ; ଯେ ଜାଣେ ସେ ବୁଝିବ ! କିନ୍ତୁ ସ୍ଥାନ, ଦେଶ ଆଗ୍ରର ସଙ୍ଗେ ଏ ଯେଉଁ ଘନିଷ୍ଠ ସମ୍ବନ୍ଧ, ତହିଁରେ ବିଶ୍ୱ-ଭାବ ଅପୂ ନାହିଁ; ସ୍ୱତନ୍ତ୍ରବାଦ ଅପୁଛି । ଜହ୍ନିଫୁଲ ନାଁରେ ଏ ଯେଉଁ ଉଲ୍ଲାସ, ଏ ବିଦେଶୀ ବୁଝିବେ ନାହିଁ—ଆମେ ଯେପରି ବୁଝୁ ନାହିଁ ସେମାନଙ୍କର ଡେଜି ଫୁଲ ।

ଯେଉଁଠି ଏପରି ସମ୍ବନ୍ଧ ବା ଇଙ୍ଗିତ ଅତି ଅଧିକ, ସେଠି ବସ୍ତୁବାଦ ମଝିରେ ଅସହ୍ୟ ବାଡ଼େ ।

ବସ୍ତୁଗୁଣର କେତୋଟି ବଡ଼ ଉପାଦାନ ମାତ୍ର ଆମ୍ଭେମାନେ ଏ ପର୍ଯ୍ୟନ୍ତ ଦେଖିଛୁଁ । ସବୁ ଗଡ଼େଇ ଆଣିଲେ ମୂଳରେ ମିଳେ ଗୋଟିଏ ସମାନ ଗୁଣ, ମଣିଷ । ତାର ମୌଳିକ ପ୍ରବୃତ୍ତି, ମୌଳିକ ପ୍ରବଣତାର ଏସବୁ ଅବତାର ବିଶେଷ । ମଣିଷ-ସାହିତ୍ୟରେ ମଣିଷର ବସ୍ତୁଗୁଣ ଲାଗି ଏତିକି ଛଡ଼ା ଆଉ କଣ ରହିପାରେ ? ଯେଉଁଠି ତାର ମୌଳିକ ପ୍ରବୃତ୍ତି ଆଉ ପ୍ରବଣତା, ଲେଖକ ବେଶି ଓଜନ ଦେଇଥାନ୍ତି ସେଠି । ଯେତେ ସ୍ୱତନ୍ତ୍ରବାଦ ଥିଲେ ସୁଦ୍ଧା ପୃଥିବୀସାରା ସମସ୍ତେ ସେ ସାହିତ୍ୟ ବୁଝନ୍ତି । ମଣିଷର ଆନନ୍ଦ, ମଣିଷର ଦୁଃଖ, ମଣିଷର ଚେଷ୍ଟା ମଣିଷ ବୁଝେ । ରକ୍ତର ତାତି, ସାହସ, ଭୀରୁତା, ଜୀବନର ଆବେଗ, ଦେହର ରୋଗ ସବୁ—ଏ ବର୍ଣ୍ଣନା ଉପରେ ଦୃଷ୍ଟି ଓଟାରଲେ ଉପେଇ ମଳିକ ହୁଏ ମଣିଷ, ଯେପରି ଅଣଷ୍ଟ, ଯେପରି ଜନ ନିସ୍ପନ୍ଦ । ଉପେଇ ମଳିକ କେଉଁ ଦେଶର ଲୋକ, କେଉଁଠି ତାର ଘରବାଡ଼ି—ସବୁ ଭୁଲିଯାଉଁ । କେବଳ ଆଖିରେ ପଡ଼େ ହତଶ୍ରୀ ଦୁଃଖୀ ମଣିଷ—ଦୁଃଖ ଭିତରେ ସୁଖର ପ୍ରୟାସ, ତାର ଅଳିଆ ଅକର୍ମା ପିଲାଗୁଡ଼ିକ, ତାର ଗଣ୍ଠି ଗଣ୍ଠିଆ ବାଡ଼ି ଖଣ୍ଡି, ତାର ରୋଗଣା କୁକୁରଟି, ତାର ଗାରଡ଼ିଟି, ନୂଆଣିଆଁ ଗୁଳ ତଳେ ତାର ପିକା ଖଣ୍ଡିକ । ସବୁ ସ୍ୱତନ୍ତ୍ରତା ଲିଭିଯାଇ ଦିଶେ ଖାଲି ଆକାଶ ତଳର ପ୍ରାଣୀ ମଣିଷ—ଏକା ହାଡ଼, ଏକା ରକ୍ତ, ଏକା ନାହି ଦିଖଣ୍ଡ । ଏଥିଲାଗି ଯେଉଁ ସାହିତ୍ୟରେ ସାରା ମଣିଷ ଜାତିର ସହାନୁଭୂତି ଆଣିବା ଲାଗି ଗୁଣ ଥାଏ । ସେ ଲାଗେ କିପରି ଆଜି ଆପଣାର ପରି—ତା ଭିତରେ ଆମ ମନ ଭିତରେ କୌଣସି ବ୍ୟବଧାନ ନ ଥାଏ ବୋଲି ।

ସେ କେବେ ପୁରୁଣା ହୁଏ ନାହିଁ କି ତାର କୌଣସି ପରିବର୍ତ୍ତନ ଆସେ ନାହିଁ । ସ୍ଥାନ କାଳର ପରିବର୍ତ୍ତନ ତାକୁ ବାଧେ ନାହିଁ । ଧର୍ମୁ ଅଜା ଅଭିଆଡ଼ା ଥିବାବେଳେ ଝିଅ ବେଶ ଧରି ଆଇଙ୍କୁ ଦେଖି ଗୁହିଁ ଆସିଥିଲେ । ବର୍ତ୍ତମାନ ସେମାନେ କଣ, କିଏ କହିବ ? ହୁଏ ତ ଯେଉଁ ଡିହ ଉପରେ ସେମାନଙ୍କର ଏତେ ଖେଳ, ଏତେ ଆନନ୍ଦ, ଏତେ ରୋମାନ୍ସ ହେଉଥିଲା, ସେଠି ଫୁଟିଛି ହୁଙ୍କାଛରୁ । ଆହୁରି ତନ୍ନ ପ୍ରରୁଷ ଉପରକୁ ପ୍ରଣୟୀ ତାର ବାଳକୁ ଗଣ୍ଠି କରି ବାନ୍ଧୁଛି ଫୁଲ । ପ୍ରଣୟିନୀ ଓଜନ ଓଜନ ଅଳଙ୍କାର ନାଇ ଝମର ଝମର କରି ପାଦ ପକାଇ ଆସୁଛି । ଚଉଁରୀ ଭୁଣ୍ଡି ଆଜି ବେଶି ଚକ୍ ଚକ୍, ଗୋଜିକାଠି ବେଶି ତୀକ୍ଷ୍ଣ । ସେମାନଙ୍କର ପ୍ରଣୟ ହେଲାଣି ପୁରୁଣା; କିନ୍ତୁ ମଣିଷ ମନକୁ ବାସି ନୁହେଁ । ଏ ସଂସ୍କୃତିର ମର୍ଯ୍ୟାଦା ଆମେ ବୁଝିବାକୁ ଖାତିର କରୁ ନାହୁଁ—ପାଉଛୁଁ କେବଳ ମୂଳ ଭାବ, ବୁଝୁଛୁଁ ଖାଲି ନିଦାନ ମଣିଷ-ରସ ।

ବସ୍ତୁ-ଭାବର ଗଭୀର ଦୃଢ଼ତା ସ୍ୱତନ୍ତ୍ରବାଦର ସାହିତ୍ୟ ତୁଳନାରେ ଅତି ଅଳ୍ପ, ବିଷୟ ଅଳ୍ପ, ପ୍ରକାର ବେଶୀ ନାହିଁ; କିନ୍ତୁ ସୁଗଭୀର କ୍ଳାନ୍ତି, ଅବସାଦ, ଜରା ତହିଁରେ ନ ଥାଏ । ମଣିଷର ମୌଳିକ ପ୍ରବୃତ୍ତିପ୍ରବଣତା ପାଇଛି ଚିର-ଯୌବନ—ଅଗାଧର କୁହୁଡ଼ି ଭେଦ ସ୍ଥାନର ଦୃଢ଼ତା ଏଡ଼ି । ତାହାର ଜରା ନାହିଁ, ମରଣ ନାହିଁ । ମୌଳିକ ଭାବ ମନ ଉପରେ ବେଶୀ ଜୋର ଗାର ଟାଣେ; ତେଣୁ ନଜର ଅଜାଣତରେ ଅଜଣାରେ ସୁଦ୍ଧା ଲେଖକ ତହିଁରେ ମାତିଥାନ୍ତି । ଶତକଡ଼ା ୯୯ ଗଳ୍ପ ଉପନ୍ୟାସର ବିଷୟ ସେଇ ପ୍ରେମ । ତହିଁରେ ନୂଆ କଥା କଣ ବା ଅଛି, କେତେ ସମାଲୋଚକ ଫର୍ମୁଲରେ ପକାଇ ସାରିଛନ୍ତି । ଉଲ୍ଲେଖବ ଯେପରି ପ୍ଲଟ୍ କରନ୍ତି—ପ୍ରଥମେ ଉଭୟ ପକ୍ଷର ବେଶ ବର୍ଣ୍ଣନା, ତା ପରେ ଛବି ଦେଖା; ତା ପରେ ଚିଠି ଲେଖା, ତା ପରେ ବାଧା, ବିରହ, ପୁଣି ମିଳନ ସେହିପରି ଏହିରୁ ଲେଖା ଲଗି ବନ୍ଧା ଛାପ କରାଯାଇ ପାରେ; କିନ୍ତୁ ଲକ୍ଷେ ଥର ଘୋରଡ଼େଇ ହେବା ପରେ ସୁଦ୍ଧା ବିଷୟବସ୍ତୁ ସେଇ ପ୍ରେମ, ସବୁ ଦେଶରେ । ଏଥିରୁ ପ୍ରମାଣ ମିଳୁଛି ମଣିଷର ମୌଳିକ ଭାବ, ପ୍ରବୃତ୍ତିର ପ୍ରବଣତା କେବେ ହେଲେ ପୁରୁଣା ହୁଏ ନାହିଁ; କାରଣ ନଜେ ମଣିଷ ଆଦିମ ଯୁଗରୁ ସେଇ କେତୋଟି ମୌଳିକ ଭାବ, ଗୁଣ, ପ୍ରବୃତ୍ତିର ପ୍ରବଣତାରେ ଢଳାଣ ।

ସାହିତ୍ୟରେ ଦୁଇଟି ଉପାଦାନ—ଗୋଟିଏ ବସ୍ତୁଭାବ, ଅନ୍ୟଟି ସ୍ୱତନ୍ତ୍ର-ଭାବ । ବସ୍ତୁଭାବ ଅତି ଉଚ୍ଚ, ମୌଳିକ, ତାର ଅତି ଆଦର; କିନ୍ତୁ ଏ ଦୁଇଟିରୁ ଖାଲି ଗୋଟିଏ ଉପାଦାନରେ ସାହିତ୍ୟ ଗଢ଼ି ପାରିବ ନାହିଁ । ମନର ଆବେଗ ଘୋଳ ହୁଏ ନାହିଁ ବୋଲି ସଂସ୍କୃତ କବିମାନେ ସେହି ଅଳ୍ପ ପରିସର ଭିତରେ ମୌଳିକତା ପ୍ରବୃତ୍ତିର ଚର୍ଚ୍ଚା କରୁଥିଲେ; କିନ୍ତୁ ପରିସର ତାର ଅଳ୍ପ—ସ୍ୱତନ୍ତ୍ର ଭାବର ପରିସର ବେଶୀ । ଏ ଦେଶ କଥା, ସେ ଦେଶ କଥା, ଏ ମଣିଷ କଥା, ସେ ମଣିଷ କଥା—ବିଷୟବସ୍ତୁ ଏଥିରେ ଅତି ବେଶି । ଅନ୍ୟ ଦେଶ ପ୍ରତି ସ୍ୱତନ୍ତ୍ରବାଦ ଦୁର୍ଗମବାଡ଼; କିନ୍ତୁ ଯେଉଁ ଦେଶର ଏ ବିଶିଷ୍ଟତା, ସେ ଦେଶରେ ଏହାର ଆଦର ବେଶି । ପ୍ରତି ଦେଶରେ ପରିସ୍ଥିତିର ଆବରଣ ଭିତରେ କେତେ-ଗୁଡ଼ିଏ experience (ଅନୁଭୂତି) ବଦ୍ଧାଗତ ହୋଇ ସାରିଲଣି । ବହୁଯୁଗର ଆଗ୍ରହ ବ୍ୟବହାର, ପାଣିପବନ ମିଶି ଏପରି ବଦ୍ଧାଗତ ଆଣିଛି । ଭାଷାରେ ଯେପରି ଅନେକ ଶବ୍ଦ ଅଛି, ମଣିଷର ଭାବ ସଙ୍ଗେ ଯାହାର ଏପରି ସମ୍ବନ୍ଧ ଯେ, ଖାଲି ସେହି ଶବ୍ଦ ମନେ ପଡ଼ିଲେ ଆଖି ଆଗରେ ନାଚେ ଗୋଟାଏ ଭାବର ପରିଷ୍କାର ଛବି, ସାହିତ୍ୟରେ ସେହିପରି । ଏ ଦେଶରେ "ଘଡ଼ଘଡ଼ି କବିତା" ସେହି ସୂକ୍ଷ୍ମ ସହଜ ଉପାୟରେ କାର୍ଯ୍ୟ ହାସଲ କରିଥାନ୍ତି । "ବଜ୍ର", "ପ୍ରଳୟ",

"ହୁଙ୍କାର", "ରୁଦ୍ର", "ତାଣ୍ଡବ", "ଝଞ୍ଜା", "ମୃତ୍ୟୁ", "ଚିତା", "ଧୂଧୂ", "ମରୁ" କେବଳ ଏହିପରି କେତୋଟି ଶବ୍ଦ ଏପାଖ ସେପାଖ କରି ବ୍ୟବହାର କଲେ ପ୍ରତ୍ୟେକ ଶବ୍ଦର ଯେଉଁ ଇଙ୍ଗିତ (?) (appeal) ତହିଁରେ ଗୋଟାଏ ଉଦ୍ଦାମ ଭାବ ଆସେ । ସାହିତ୍ୟରେ ସେହିପରି କେତେଗୁଡ଼ିଏ ଇଙ୍ଗିତ କଲେ ସ୍ୱତନ୍ତ୍ରବାଦର ସାହିତ୍ୟ ତିଆରି ହୁଏ, ଯାହା ସେହି ଦେଶର ଅତି ପ୍ରିୟ । "ଖୁଦୁରୁକୁଣୀ"ରେ ଝିଅମାନଙ୍କର ଉତ୍ସାହ, ଫୁଲର ସମ୍ଭାର, କଇଁଫୁଲ, ଷଲୁକୁଣୀ ଆକାଶଫଟା ହୁଳହୁଳି—କେତେ କଣ ମନେ ପଡ଼େ । "କୁଆଁର ପୁନେଇଁ"ରେ ମନରେ ଆସେ କଇଁଫୁଲିଆ ଜହ୍ନ ତଳେ ଉତ୍ସାହ, ଆନନ୍ଦ, ଗୀତ, ଖେଳ ଓ ସୁନ୍ଦରମାନ ଏକାଠି ଠୁଳ ହେବାର ମାଧୁରୀ । "ରଜର" ଖୁସିବାସି, ପୋଡ଼ପିଠା, ଚଷାପୁଅର ଛୁଟି, ବାଜା, ଡୁଡୁଖେଳ, ଗୁଆଖୋଳପା, ତାସଖେଳ, ହେଁସ, ପାନ, ପୁଣି ଚନ୍ଦନାପାଟି, ଅଳତା, ଦୋଳିଖେଳ । ସାହିତ୍ୟରେ ଏପରି ବର୍ଣ୍ଣନା ବା ଉପାଦାନ ପ୍ରତ୍ୟେକ ଓଡ଼ିଆର ଅତି ପ୍ରିୟ, ଅତି ଆଦରର ଧନ । ପୂରୁଷ ପୂରୁଷ ଏପରି ସଂସ୍କାରରେ ବଦ୍ଧ ଏଗୁଡ଼ିକ ଯେପରି ମଣିଷର ମୌଳିକ ପ୍ରବୃତ୍ତି ଓ ପ୍ରବଣତା ସଙ୍ଗେ ସମାନ ଆସନ ପାଇ ସାରିଲେଣି । ଓଡ଼ିଶାର ନୂଆଯୁଗର ସାହିତ୍ୟ ବର୍ତ୍ତମାନ ଶୁରୁଣ୍ଡୁଛି; ତେଣୁ ବର୍ତ୍ତମାନ ପର୍ଯ୍ୟନ୍ତ "ଜାତିର" ସାହିତ୍ୟ ଗଢ଼ା ହୋଇନାହିଁ । ତା ବୋଲି ଏ "ଜାତୀୟ ସ୍ୱତନ୍ତ୍ରତା"ର ଆଦର ସମସ୍ତେ ବୁଝିବେ, ଏ ସ୍ୱତନ୍ତ୍ରତା ଭିତରେ ବିଦେଶୀ ସ୍ୱାଦ ପାଇପାରିବେ ନାହିଁ— ବରଫ ଉପରେ ସ୍କି (Ski) ଚଢ଼ି ଖେଳିବାର ମଜା ଯେପରି ଆମ ମୁଣ୍ଡରେ ଗଳିବ ନାହିଁ । ଏ ସ୍ୱତନ୍ତ୍ରବାଦ ବରଂ ଭଲ, କଳା ହିସାବରେ ଉଚ୍ଚ ।

ଏପରି ସ୍ୱତନ୍ତ୍ରବାଦ ନୀଚ ନୁହେଁ । ଅନ୍ୟାନ୍ୟ ଦେଶରେ ଆଦର ନ ପାଇଲେ ମୁଦ୍ଧା ଗୋଟିଏ ଦେଶରେ ତାର ସବୁଦିନେ ଆଦର ଆଉ ପୂଜା । ଅନେକ ସମୟରେ ବେଳବେଳକାର ଘଟଣା ଉପରେ ସାହିତ୍ୟ ଲେଖା ହୁଏ । କାହାରି ଉପରେ ଗାଳି-ସାହିତ୍ୟ ଲେଖା ହେଉଛି । ତାର ଚରିତ୍ର ବା ଅନ୍ୟାନ୍ୟ ବିଶିଷ୍ଟତାକୁ ଘୃଣି କେତେ ଗାଳି ହୋଇଗଲା । ତା ଅନ୍ତେ କିମ୍ବା ତାର ସେ ବିଶିଷ୍ଟତା ନ ଜାଣିଥିବା ଲୋକ ପାଖରେ ସେ ଲେଖାର ମୂଲ୍ୟ ଅଳପ । ଜଣେ ଯଦି ତାର ଦୋଷ, ତାର ଆକୃତିର ଫାଟ, ତାର କୁକର୍ମ, ଏସବୁ ବିଷୟରେ ଜାଣେ, ତାହେଲେ ସେ ଇଙ୍ଗିତ ଧରିପାରିବ; ନୋହିଲେ ନୁହେଁ । ବିଶେଷ ସମୟର ଖବର, ଘଟଣା, ବିଶିଷ୍ଟତା—ଏହାରି ଉପରେ ଜୋର ଦେଇ ଲେଖିଲେ ସେହି ସମୟରେ ତାର ଆଦର ହୁଏ ବେଶୀ, ପରେ କେହି ପଚାରନ୍ତି ନାହିଁ । ଗଲା ମହାଯୁଦ୍ଧ ପରେ ଠିକ୍ ସେହି "ସମୟ"ର ବହି କେତେ ଖଣ୍ଡି ଏତେ ବିକି ହେଲା; ଆଜିକାଲି

ତାର ବଜାର ମାନ୍ଦା । ଏପରି ସାହିତ୍ୟ ବେଳକାଳର ମାହିତ୍ୟ, ଦୁଇ ଦିନ ବଞ୍ଚେ; କିନ୍ତୁ ସେହି ଦୁଇ ଦିନ ଭିତରେ ଗୃହଅଡ଼େ ଛିବ ଡବ ପଡ଼ିଯାଏ ।

ବିଶ୍ୱ-ଗୃହ ଭିତରେ ଚରିତର କେତୋଟି ବିଶ୍ଳେଷଣ ମିଳେ । ଜଣେ ଲୋକ ବାହାରେ ଖୁବ ଭଲ କଥା ଶୁଣିଲେ ଚନ୍ଦନ ପରି ଲାଗେ, ଅନ୍ଧାର ଘର ଆଲୁଅ କରେ; କିନ୍ତୁ ଭିତରେ ଗୁପ୍ତମାରୁ । ସବୁଠି ଜଣେ ଖାଲି ଛିଦ୍ର ଖୋଜିବାକୁ ବାହାରେ ଆସୁଡ଼େଇ ଭିତରେ ବିଷ ଢାଏ । ଅନ୍ୟ ଜଣେ ବାହାରିଲେ ସାଧୁ— ଏତେ ଆଦର୍ଶବାଣୀ, ଏତେ ସୁପୁରୁଷ କୋଟିକରେ ଗୋଟିଏ; ଭିତରେ ଖାଲି ଅସନ୍ତୁ, କଅଁଳେଇ କଅଁଳେଇ ସୁରୁରେଇ ସୁରୁରେଇ କେତେ ଘର ପୋଡ଼ୁଛି, ତାର କଳନା ନାହିଁ । ଅନ୍ୟ ଜଣେ ଖାଲି ଡମ୍ଫା—ସାହସ ନାହିଁ, ଗୁଣ ନାହିଁ, ଖାଲି ଫମ୍ପା । ଏପରି ଅନେକ ଭିତରେ 'ପ୍ରକାର' (Type) ଅଛନ୍ତି; ଯେ ବିଶିଷ୍ଟ ସ୍ୱତନ୍ତ୍ର ହେଲେ ସବୁ ଦେଶରେ ଥାନ୍ତି, ତେଣୁ ସମସ୍ତେ ବୁଝନ୍ତି । ମଣିଷ ମନର ସେପରି କେତେ ବିଶ୍ଳେଷଣ ପୃଥିବୀର ସବୁଲୋକ ଜାଣନ୍ତି । କଦାକାର ସତ କଥାକୁ ଘୋଡ଼ାଇବା ଲାଗି ପ୍ରିୟ ହସ, କୌତୁକ, ଆନନ୍ଦ ମିଛ, "ନୟନେ ଯେବେ ଚପଳା ଖେଳ, ଅନ୍ତରେ ତେବେ ବହିଦ ମେଳ" ଏହିପରି କେତେ କଥା ।

କିନ୍ତୁ ଆହୁରି ଅନେକ ବିଶ୍ଳେଷଣ ଅଛି—ଜଣେ ମଣିଷ ଅନ୍ୟ ସମସ୍ତଙ୍କ-ଠାରୁ ସ୍ୱତନ୍ତ୍ର—ଯେଉଁ ଅଂଶରେ ତାହାର ବିଶ୍ଳେଷଣ, ସହିରେ ବିଜ୍ଞାନ ଆନନ୍ଦ ପାଏ, ମଣିଷ ପାଏ ଔସୁକ୍ୟ । ପ୍ରତ୍ୟେକ ପଦାର୍ଥ, ପ୍ରତ୍ୟେକ ଘଟଣାକୁ ବିଶି ପରୀକ୍ଷା କରିବା ଆରମ୍ଭ କଲା ପ୍ରଥମେ ବିଜ୍ଞାନ । ତାପରେ ସାହିତ୍ୟରେ ଏପରି ସ୍ୱତନ୍ତ୍ରବାଦ ଦେଖାଗଲା । ଜଣେ ସାଧାରଣ ଗୁଣ ପରଖି ଦେଖେ, ଜଣେ ତାର ସବୁ ବୁଦ୍ଧି ଲଗାଏ ବିଶେଷ ଗୁଣ ପରଖିବାକୁ । ଜଣେ ଲୋକର ପ୍ରତ୍ୟେକ କାର୍ଯ୍ୟର ମୂଳ କାରଣ ମସ୍ତିଷ୍କର ପ୍ରତିକ୍ରିୟା । କେଉଁ କେଉଁ ଘଟଣା ବା ଶକ୍ତିର ପ୍ରଭାବରେ ସେ କେଉଁ କାର୍ଯ୍ୟ କଲା, ଏସବୁ ସାହିତ୍ୟରେ ଦେଖାଯାଏ । ମଣିଷର ମନ ଯେପରି ଗୋଟାଏ ପ୍ରକାଣ୍ଡ ପରୀକ୍ଷାଗାର—Laboratory । ଯେତେବେଳେ ଏପରି ସାହିତ୍ୟ ଅତି ଉନ୍ନତ ହୁଏ, ସେତେବେଳେ ଏ ସ୍ୱତନ୍ତ୍ରତା ସମସ୍ତଙ୍କଠାରୁ ସ୍ୱତନ୍ତ୍ର ହୁଏ—ଏ ଦେଶର ଲୋକଙ୍କୁ ଯେପରି ଚମକ ଦିଏ, ସେ ଦେଶର ଲୋକଙ୍କୁ ସେପରି ଚମକ ଦିଏ । ତେଣୁ ଆଜିକାଲି ବିଦେଶୀ ସାହିତ୍ୟରେ ମନସ୍ତତ୍ତ୍ୱର ଏ ବିଶ୍ଳେଷଣ ମଧ୍ୟ ଏ ଦେଶର ଆମେ ନେଇଥାଉଁ ।

ସ୍ୱତନ୍ତ୍ରବାଦ ଆଉ ବିଶ୍ୱବାଦର ଫରକ ଅନେକ ସମୟରେ ହୁଏ ସ୍ୱପ୍ନବାଦ ଆଉ ବାସ୍ତବବାଦର ଫରକ । ଗୋଟିକରେ ମଣିଷର ମୌଳିକ ପ୍ରବୃତ୍ତିପ୍ରବଣତା

ପରିସ୍ଥିତିକୁ ସ୍ପଷ୍ଟ କରିଥିବା ହୁଏ, ଅନ୍ୟଟିରେ ପରିସ୍ଥିତିର ବଶିଷ୍ଟତା ଭିତରେ ଚରିତ୍ରର ସ୍ୱତନ୍ତ୍ରତା ବେଶି ଆଖିରେ ପଡ଼େ । ଗୋଟିଏ ଦେଖେ ଉପେଇ ମଣିଷ ମଣିଷ- ତାର ଦୁଃଖ, ଆନନ୍ଦ, ସ୍ନେହ, ଘୃଣା ଇତ୍ୟାଦି; ଅନ୍ୟଟି ଦେଖେ ଉପେଇ ମଣିଷ ସ୍ୱତନ୍ତ୍ର ନାଁଧରି ସ୍ୱତନ୍ତ୍ର ଲୋକ; ତାର ବାଉଁଘର ଅନ୍ୟ ସମସ୍ତଙ୍କ ବାଉଁଘରଠାରୁ ଅଲଗା । ମନ ଭିତରେ ଭାବପ୍ରବଣତା Subjectiveକୁ ନ ପାଇ ବାହାରର ପରିସ୍ଥିତିର ବଶିଷ୍ଟତାର ରଙ୍ଗ, ସ୍ଥାନର ରଙ୍ଗ, ସେ local colour ପ୍ରକାଶିଥାଏ; Objective ସମ ଗୁଣକୁ ନ ଦେଖି ବରଂ ବସ୍ତୁଗୁଣ ଗୁଣ ସେ ପ୍ରକାଶିଥାଏ । ଏଇ ତାର ଗଣ୍ଡିଗଣ୍ଡିଆ ପାଚିଲା ବାଡ଼ି, ସଂସାରର ଅନ୍ୟ ସବୁ ବାଡ଼ିଠାରୁ ଅଲଗା । ଏଇ ତାର ଦରମରି କଥାରୁ ନଷ୍ଟ । ଉପେଇର ଚରିତ୍ରର ଏ ବଶିଷ୍ଟତା ନ ଥିଲେ ଏପରି ଦରମରି କଥାରୁ ନଷ୍ଟ କେହି ହୁଏ ତ ରଖନ୍ତା ନାହିଁ । ମନ ଉପରେ ପ୍ରଭାବ ହୁଏ ବସ୍ତୁଗୁଣ ଗୁଣରୁ । ଯେତେ ବାସ୍ତବବାଦର କଳା (Realistic art), ସବୁଠି ସ୍ୱତନ୍ତ୍ରତା ପ୍ରାପ୍ତ ମିଳିଥାଏ ।

କିନ୍ତୁ କଳା ସବୁ ଦେଶରେ କଳା । କଳା ହେବାଭଳି ଉଚ୍ଚ ହେଲେ ସ୍ୱତନ୍ତ୍ରବାଦ ବା ବସ୍ତୁବାଦ, ସ୍ୱପ୍ନବାଦ ବା ବାସ୍ତବବାଦ ସବୁ ଏକାକାର ହୋଇ ହୁଏ ସାମ୍ୟବାଦ । ସେଇ ଅସୀମର ଆଦର୍ଶ ଭିତରେ ଏସବୁ ଉପାୟ ଫଳ ପାଇବା ପରେ ଲୁଚିଯାଏ; ତେଣୁ ସମସ୍ତେ ବୃହତ୍; ସମସ୍ତେ ଶ୍ରେଷ୍ଠ ସ୍ୱତନ୍ତ୍ରତା ଯେତେ ଉଚ୍ଚ ହେଉ ପଛେ ତହିଁରେ ବ୍ୟବଧାନ ଆସେ । ଦେଶ ଦେଶ ଭିତରେ, ମଣିଷ ଭିତରେ । ସେ ବ୍ୟବଧାନ ନ ଆସି ବା ଯିବ କୁଆଡ଼େ ? ନିରାକାରରେ ଆକାର ଅଛି । ଶୂନ୍ୟ ଭିତରେ ସୃଷ୍ଟି ଯେତେବେଳେ ହେଲା, ଏ ସ୍ୱତନ୍ତ୍ରବାଦ ଯିବ କାହିଁ ? ସୁନ୍ଦର ପୃଥିବୀରେ କେତେ ଫୁଲ ଫୁଟେ; ତେଜ ଫୁଲ ବି ଫୁଟେ, କନ୍ଦଅର ଫୁଲ ବି ଫୁଟେ । ସବୁ ତ ସ୍ୱତନ୍ତ୍ର; କିନ୍ତୁ ଅସୀମର ଅଂଶ ସମସ୍ତେ । ତେଣୁ ତାଙ୍କ ଭିତରେ ତ ବଶିଷ୍ଟତାର ନିଗଡ଼ ଭାଙ୍ଗି ସମତା । ସମତା, ବସ୍ତୁଭାବ ଥାଏ ଭିତରେ, ସ୍ୱପ୍ନରେ, ଆଦର୍ଶରେ, ପ୍ରାଣରେ । ଆକାରରେ ଥାଏ ସ୍ୱତନ୍ତ୍ରତାର ବାସ୍ତବବାଦ । ସୃଷ୍ଟିର ପ୍ରକାଶ ସ୍ୱତନ୍ତ୍ରତାରେ, ସୃଷ୍ଟିର ଅନୁଭୂତ, ମୌଳିକ ଗୁଣ ସମତାର ବସ୍ତୁବାଦରେ । ଅନୁଭୂତ, ମୌଳିକ ପ୍ରବୃତ୍ତିମ୍ରବଣତା ନ ଥିଲେ ସୃଷ୍ଟି ନିର୍ଜୀବ ନିର୍ଜୀବ । ପ୍ରକାଶନ ପ୍ରକାଶ ନ ଥିଲେ ସୃଷ୍ଟି ଅସ୍ପଷ୍ଟ, ଅପ୍ରକାଶ୍ୟ, ଶୂନ୍ୟ; ତେଣୁ ଉଭୟେ ରହିବେ—ଫୁଲର ସୌରଭ, ଫୁଲର ମୂଳ ଗୁଣ—ଆଉ ଫୁଲର ଆକାର, ଫୁଲର ରଙ୍ଗ ।



# ଏ ପାରି ସେ ପାରି

କବି ଗାଇଗଲେ,

ସୁନ୍ଦର ପୃଥିବୀରେ ସୁନ୍ଦରତମାର କଚିତା । କାହିଁ ଦୂର ଅତୀତରେ ସୁନ୍ଦର ରାଜପୁତ୍ର, ସୁନେଲି ସ୍ୱପ୍ନ ମଝିରେ ରାଜମାଣିକର ଛବି । ସେ ଛବିର ଅଛି ଆତ୍ମା, ତାର ମେଘବର୍ଣ୍ଣ କେଶ, ଆଖିରେ ଲକ୍ଷ ଯୁଗର ଛାୟା ମୋହ, ମାୟା-କୁହୁକଠାରୁ ଅଦ୍ଭୁତ ସୁନ୍ଦର; ପ୍ରତି ଅଙ୍ଗ ନିକେ ଯେପରି ଗୋଟିଏ ଗୋଟିଏ ସ୍ତ୍ରୀ-ରୂପ, ଅଦ୍ଭୁତ ସୁନ୍ଦର, ଅଦ୍ଭୁତ ଆକର୍ଷଣୀ । ଛବିର ଆତ୍ମା । ବାହାରେ ବସନ୍ତର ପୁଲକ ବାଜେ କୋଇଲିର ଗୀତରେ । ସୁନ୍ଦରତମାର ପୂଜା ହୁଏ ସ୍ୱପ୍ନର ଆବେଶରେ । ନିଶବଦ ରାତ୍ରିମା ରାତିରେ ବାଜେ ବଇଁଶୀ, ରାଜାଝିଅ ନିରେଖି ନିରେଖି ଚାହେଁ, ସବୁ ପ୍ରାଣ ଠୁଳ କରି ଦୁଇଟି ଆଖିର ଅତୀତ ଭବିଷ୍ୟଭେଦୀ ଚାହାଣିରେ । କବି ଗାଇଲେ, ଆକାଶ ବଦଳିଲା ରଙ୍ଗ, ଘାସରୁ ଫୁଟିଲା ଫୁଲ, ପବନ ଭିତରେ ଅରି ଅରି ବାଜି ଉଠିଲା ଅଜଣାର ପରଶମିଶା ସଙ୍ଗୀତ । କରୁଣାର ସ୍ରୁଅ ବୋହିଗଲା । ପ୍ରେମର ପୁଲକ ଖେଳି ବୁଲିଲା ପ୍ରତି ଅନ୍ତରର ତନ୍ତ୍ରୀରେ ।

କବିର ଗୀତ । ଯୁଗେ ଯୁଗେ ଦୁଇଟି ପ୍ରାଣୀ, ନରନାରୀ । ଗୀତର ମୋହରେ ସବୁ ମିଶି ଏକାକାର, ଗୋଟାଏ ସ୍ପନ୍ଦନ । ସତ୍ୟ ଶିବ ସୁନ୍ଦର ସବୁ ମିଶିଛି ଗୋଟିଏ ଧାରଣାରେ । କବିତା ।

ଆଜିର ନୁହେଁ, ଅତି ପୁରୁଣା ଏ କବିତା । ସୁନ୍ଦର, ନୋହିଲେ ତାର ବିପରୀତ ଗୁଣ, ଅସୁନ୍ଦର । ଆନନ୍ଦ, ନୋହିଲେ ଦୁଃଖ, ଆନନ୍ଦର ଓଲଟା, ତେଣୁ ଓଲଟା ଉପାୟରେ ଆନନ୍ଦ । ଏଇ ଦୁଇଟି ହୁଏ ତାର ବସ୍ତୁ ପୁଣ । ଭାବର ମୂର୍ଚ୍ଛନା, ଛନ୍ଦର ଆବେଶ, ସ୍ୱପ୍ନ, କଳ୍ପନାର ମୋହ, ଏଇ ତାର ଉପାଦାନ । ଅତି ପୁରୁଣା ଏ କବିତାର ନିଜର ରୂପ ଅଛି, କଳା ଶକ୍ତିର ସ୍ୱୟଂପ୍ରକାଶ ।

କବି ଗାଇଲେ, "କବି ସେ ସତମିଛ କହି କବିତା ଚାତୁରୀରେ ମନ ମୋହନ୍ତି ।" କଏ ବୁଝୁଛି ସତ କି ମିଛ । କାଳସିଲଗା କଳାଶକ୍ତିର ପ୍ରକାଶ ଗୋଟାଏ ଧାରଣା; ମନ ପହୁଞ୍ଚୁଛି ଗୋଟାଏ ଅବସ୍ଥାରେ, ସେ କବିତାର ଅବସ୍ଥା (attitude) ।

କବିର ବୀଣା ବାଧା ପାଏ । ଦୁଇଦଳର ପ୍ରବଳ ବିତଣ୍ଡାରେ । ଭୁଲିମନ ଫେରିଆସେ ଅଧଭୁଲି ଅନୁଭୂତିର କୁହୁକମିଶା ପରିକଳ୍ପନାରୁ । ସଙ୍ଗୀତ ଭାଙ୍ଗେ, କବିତା ଯାଏ ଫେରି ।

"ବନ୍ଦ କର, ଆଉ !" ଗୋଟିଏ ଦଳର ଅଭିଯୋଗ, କବିତାରେ କିଛି ଲାଭ ନାହିଁ । ପେଟରେ ଓଦାକନା ଦେଇ କବିତା ଲେଖିଲେ କି ମିଳିବ ? କବିତା ଶିଖାଏ ନାହିଁ ଜୀବନ ଗଢ଼ିବାକୁ, କବିତା ଶିଖାଏ ନାହିଁ ବସ୍ତ୍ର ରହିବାକୁ । ହଳ କରିବ ଭୁସ୍ ଭୁସ୍, ଜମିରେ ଦେବ ସାର । କଣ୍ଟ ଖଣ୍ଡିକନେ ତେଣ୍ଡା ଲଗାଇ ଯାଇରୁ ବୋହିବ ପାଣି । କବିତା କଣ ଶିଖାଏ ? କଳକାରଖାନା, ବେପାର-ବଣିଜ, ଗଡ଼ଜାତର Natural resources ଆମର, ଆଖି ଆଗରେ ଗୋରୁ-ମହିଷାଣୀ ଟାଙ୍କା ଉଆରି କଲି । ଏ ଦେଶର ଘାସ ବାଉଁଶ ଗ୍ଭଲିଲି ବିଦେଶର କାଗଜ କାରଖାନାକୁ । ଭଞ୍ଜ କଣ ବାଟ ଓଗାଳିଲେ ? ସାମନ୍ତସିଂହାର କଣ ଦେଶକୁ କବିତାରେ ଦେଲେ କପାଳୁଷର ସୂନ୍ଦ ? କବିତା ଛାଡ଼, କବିତା ପୋଡ଼ ।

ସାଧାରଣ ବସ୍ତ୍ର ରହିବା ଲାଗି ଯେଉଁ ଲଢ଼େଇ, କବିତା ତହିଁରୁ ମନକୁ ଟାଣି ନିଏ । କବିତା ଆଦିମ ମାନବର ଲଢ଼େଇ ପରର ମଜଲିସ୍, ଶିକାର ଶେଷରେ ଲଢ଼େଇରୁ ଫେରି କ୍ଳାନ୍ତ ଦେହମନ ଯେବେ ଲୋଡ଼ୁଥିଲି ତୃପ୍ତି ଆନନ୍ଦ, କବିତା ସେତିକ ବେଳର ମଜଲିସ୍ । ଆଗେ ରଜା, ପରେ କବି । ମଦ, ସ୍ତ୍ରୀ, କବିତା ଏକା କାଟର । ଏ ଦେଶର ଲୋକାଏ ଯେବେ ସମସ୍ତେ ହେବେ କବି, ଜାତିର ଟାଣୁଆ ମଜ୍ଜ ହେବ ପାଣି, ଅତି ଭାବପ୍ରବଣ, ଅତି କଅଁଳ, ଅତି ନରମ ମନ, ଦୁର୍ବଳ, ଏଇ ହେବ ଦେଶର ରୂପ । କବିତା ଛାଡ଼, କବିତା ପୋଡ଼ !

ଅତି ବେଶୀରେ କବିତା ଗୋଟିଏ ନିଶା; ଜୀବନର ଦୁଃଖକଷ୍ଟ ଭୁଲିବାକୁ ଗୋଟିଏ ଔଷଧ । ମନ ସ୍ୱପ୍ନେ ବଳ, ବାସ୍ତବକ ଅଚ୍ଛ ବେଗ । ମନ ଗ୍ଭହୁଛି ବୀରତ୍ୱ, ସ୍ୱାଧୀନତା; ବାସ୍ତବକ ମିଳେ ଦାସତ୍ୱର ଶିକୁଳି । ବସନ୍ତ ପରିବର୍ତ୍ତେ ମିଳେ ବରଷାକାଳର କଣ୍ଟକ ରାସ୍ତା, କାଦୁଅ, ଅସନା, ଦୁର୍ଗନ୍ଧ, ନାଳିପାଣି, କୁତ୍ସିତ ! ସୁନ୍ଦର ପରିବର୍ତ୍ତେ ବାସ୍ତବକ ମିଳେ ଯାବତ୍ ଅସୁନ୍ଦର, ହାଡ଼ର ରୂପ, ଆବର୍ଜନାର 'ଲୁଡ଼ିଆ' । କବି ରାଧାନାଥ ଅତି ଉଲ୍ଲାସରେ ଗାଇଗଲେ—

ତୁଷାରର ଶ୍ରେଣୀ ଶୃଙ୍ଗେ ଯଥା ବସି
ସ୍ୱପ୍ନରେ କମଳିନୀ-ହରିତ-ସରସୀ ।

ଇତ୍ୟାଦି

ଚଳିବାର କବିତା ଯେପରି ଉପଯୋଗୀ, ଜୀବନର ଦୁର୍ଦ୍ଦିନରେ ଜୀବନ ବାସ୍ତବରେ ଆଲୁଅ ପକାଇବାକୁ କବିତାର କାର୍ଯ୍ୟ ଠିକ୍ ସେହିପରି । ତେଣୁ କବିତା ନିଶା ଆଣିବା ପାଇଁ ଦରକାର । ଏ ତଥ୍ୟକୁ ଭବିଷ୍ୟତରେ "ତୃଷାତୁର ଯୋଗୀ" ତଥ୍ୟ ବୁଝାଯାଇପାରେ । କବିତା ନିଶା, ବାସ୍ତବ ଉପରେ ଆଣେ ଅବାସ୍ତବ, ଅପ୍ରାକୃତ ସ୍ୱପ୍ନର ମୋହ । ତେଣୁ ଯେତେବେଳେ ନିଶା ଦରକାର, ସେତିକିବେଳେ କବିତା ଘାଣ୍ଟ । ଅନ୍ୟ ବେଳେ "ଥାଉ, ବନ୍ଦ କର ।"

ଏ ହେଲା ଦୁଇ ଚରମପନ୍ଥୀ ଦଳରୁ ଗୋଟିଏ ପକ୍ଷର ମତ ।

ଏମାନେ ଖାଲି ଯଦି କବିତାର ଆସନ ନୁଆଁଣିଆ କରୁଥାନ୍ତେ, ତାହେଲେ ଅଳ୍ପ ଦୁଃଖ ହୁଅନ୍ତା; କିନ୍ତୁ ଏମାନେ କବିତାର ଉପଯୋଗିତାକୁ ଖାଲି ଅସ୍ୱୀକାର କରନ୍ତି ନାହିଁ, କବିତାକୁ ଆସନ ଦିଅନ୍ତି ବେଶ୍ୟା, ମଦ ସହିତ । କବିତା ସ୍ୱାଧୀନତାର ଶତ୍ରୁ; ସମାଜର, ପ୍ରଗତିର, ଶିକ୍ଷାର ଏମାନଙ୍କର ଶତ୍ରୁ । ଏ ମତ ପୃଥିବୀ ଭିତରେ ଆଧ୍ୟାତ୍ମିକ ଭାରତବର୍ଷର ନୁହେଁ କବିତା ଯାହାର ଜୀବନ । ଏ ମତ ଭାରତ ଭିତରେ କବିତା ରସିକ ବୁନିଆଦି ଓଡ଼ିଆ ଜାତିର ନୁହେଁ, ଅବନତିର ଶେଷ ପାହାଚରେ ପଡ଼ି, ବର୍ଷ ବର୍ଷ ଓଦାକନାରେ ସେକ ମାରି ଯାହାର ସମ୍ପ୍ରଦାୟ ମର୍ଯ୍ୟାଦା ମିଳେ କବିତାମସ୍ତ ଧାରଣାରୁ । ଗରିବ ଓଡ଼ିଆ ଝିଅ, ନୁଖୁରାମୁଣ୍ଡୀ, ଖୋକଲା, ସାଧାରଣ ମୁଖର କେତେ ବା ସେ ପାଏ ତାର ସଙ୍ଗତି ମଝିରେ ! କିନ୍ତୁ ଚିତାକୁଟାରେ, ସୁଦ୍ଧମା ପୁନେଇଁ ରାତିର (Mystic) କବିତାରେ, ଫୁଲଫୁଲ-ଫଟା ଆକାଶ ତଳେ, ତାର ଖୁଦୁକୁଣୀ ଭାଲୁକୁଣୀ ଭିତରେ ସେ କରିଥାଏ କବିତାର ଉକୁଆଁ । କିନ୍ତୁ ଏ ମତ ବସ୍ତୁ-ବାଦୀ ପଶ୍ଚିମ ପୃଥିବୀର, ଯେଉଁଠି କଅଁଳ ମରମଭାବ ହୁଏ ଦୁର୍ବଳ ସେଣ୍ଟିମେଣ୍ଟାଲିଜ୍ମ, କବିତା ହୁଏ ଦୁର୍ବଳତା, ସଭ୍ୟତାର ଶତ୍ରୁ । ସେ ଦେଶରେ ଗୋଟିଏ ଦଳର ମତ ଏହିପରି ।

ଯେଉଁଠି କବିତା ଅକାମୀ ବୋଲାଏ, ସେଠି ଚେଷ୍ଟା ହୁଏ କବିତାକୁ କାମୀ କରିବାକୁ । ଉପାୟ—"ଧର କବି ତୁମର ବୀଣା । ଝଙ୍କାର ଦିଅ ନା ନିରୁଦ୍ଦେଶ୍ୟର ମୂର୍ଚ୍ଛନାରେ, ଅଜଣା ପ୍ରେରଣାରେ, ଅଦେଖା, ଅଚିହ୍ନାର ଅନୁଭୂତିରେ । ତୁମର ମୂଳ ମନ୍ତ୍ର ହେଉ ଉଚ୍ଚ ଉଦ୍ଦେଶ୍ୟ । ଦେଶକୁ ଶିଖାଅ, ଜାତିକୁ ଉଠାଅ । ତୁମର-ବୀଣା ହେଉ ପ୍ରଗତିର ପଲଟଣର ବ୍ୟାଣ୍ଡ୍ ବାଜା । ଯେତେ ଯେତେ ଭଲ ଗୁଣ ଅଛି, ସବୁ ତୁମେ ଦେଶକୁ ଶିଖାଅ, ଧର୍ମ, ନୀତି, ସବୁ । ବିନା ଉପଦେଶରେ କବିତା ମିଛ ।"

କବିତାର ଏପରି ଧାରଣା ଏ ଦେଶରେ ପୁରୁଣା ସାହିତ୍ୟରେ ସଚରାଚର ଦେଖାଯାଏ । ଏଥିରେ କବିତା ଦୁର୍ବଳତା ନୁହେଁ, ମଦ୍ୟ, ବେଶ୍ୟା ସହିତ ନୁହେଁ କବିତାର ଆସନ । ଏ ଧାରଣାରେ କବି ହେଲେ ଗୁରୁ, ଅନ୍ୟ କଥାରେ ଶିକ୍ଷକ, ମାଷ୍ଟର । ସମାଜ ବନ୍ଧାଗତର ସଂସ୍କାର ବିରୁଦ୍ଧରେ କବିଙ୍କର ପଦେ କଥା କହିବାର ଅଧିକାର ନାହିଁ । ବିନା ଉପଦେଶରେ ଗୋଟିଏ ଗାର ଲେଖିବା ଭୁଲ । ସାଧାରଣ ପ୍ରବୃତ୍ତିକୁ ଦମନ କରିବାକୁ ହେବ । ସୁନ୍ଦର, କୁତ୍ସିତ, ଉଚ୍ଚ, ନୀଚ, ସବୁ କଥା ଉପରେ ଗୋଟାଏ ପର୍ଦ୍ଦା ଟାଣି ମୋଟା, ଆଖିପୂରା, ସଂଯତ, ଆଦର୍ଶ ସୁନ୍ଦର, ଆଦର୍ଶ ଧର୍ମ, ଆଦର୍ଶ ନ୍ୟାୟ ଲେଖି ପ୍ରଚାର କରିବାକୁ ପଡ଼ିବ । ଗ୍ରୀକ୍ କଳାରେ ଏପରି ସ୍ଥିର ପରିଷ୍କାର ମିଳେ । ଶାନ୍ତ ଅଛି, କାରଣ ସନ୍ଦେହର ଗ୍ରାଇ ରହିବାକୁ ସ୍ଥାନ ନାହିଁ । କିନ୍ତୁ ମୂଳରେ ଗୋଟାଏ ନୀତି—କବି ମାଷ୍ଟର, ନୋହିଲେ ପ୍ରଚାରକ ।

କବିତାର ଡାଇଡାକ୍ଟିକ୍ ବା ଶିକ୍ଷାମୂଳକ ଧାରଣାର ବିରୋଧୀ ଆହୁରି ଗୋଟିଏ ଚରମପନ୍ଥୀ ଦଳ । ଏ ଦଳର ସଭ୍ୟସଂଖ୍ୟା ୧୯ଶ ଶତାବ୍ଦୀର ଶେଷ ଭାଗରେ ଇଉରୋପ ଆମେରିକାରେ ବଢ଼ି ବଢ଼ି ଚାଲିଥିଲା । ଏହାର ଅଛି-ଫଳସା ନୀତି, "କଳା ପାଇଁ କଳା, କବିତା ପାଇଁ କବିତା ।" କବିତାର ଗ୍ଭର୍ବାକ୍ ଉଠିପଡ଼ି କହିଲେ—"ଜୀବନ ! ପୃଥିବୀ ! କବିତାର ଏଥିସଙ୍ଗେ କି ସମ୍ବନ୍ଧ ? ପୃଥିବୀରେ ଅଛି କଣ୍ଟା, କବିତାରେ ଅଛି ଗୋଲାପ, ପୃଥିବୀରେ ଅଛି କୁତ୍ସିତ, ଅସୁନ୍ଦର; କବିତାରେ ଅଛି ସୁନ୍ଦରିମା । କବିତାର ସ୍ୱପ୍ନ ରାଇଜରେ ଫୁଲ ଫୁଟେ, ବାସ ଚହଟେ, ଆମ୍ବ ବଉଳେ, କୋଇଲି ଗାଏ, ସୁନ୍ଦର ଯୁବା ଯୁବତୀ ପ୍ରେମର ଲହଡ଼ି ଖେଳନ୍ତି, ରୂପ ସମୁଦ୍ର କୂଳେ କୂଳେ । ବାସ୍ତବ ଜୀବନରେ କଣ ଏପରି ହୁଏ ? କବିତା ରାଇଜରେ ବିସଦୃଶ୍ୟ ଗୁଣର ବ୍ୟାକ୍‌ଗ୍ରାଉଣ୍ଡ ଉପରେ ସୁନ୍ଦରିମାର ଆସନ । କୁତ୍ସିତର ପାହାଡ଼, ଅସୁର, ରାକ୍ଷସ । ଏ ପାଖେ ସୁନେଲି ପକ୍ଷୀଏ ଫୁଲରୁ ଆଣନ୍ତି ମହୁ, ଦାସର କାନରେ ଝୁଲନ୍ତି କାକରର ଅଳଙ୍କାର ଆଉ ସ୍ୱପ୍ନ ଦେଖନ୍ତି ପଦ୍ମ ପାଙ୍କୁଡ଼ାରେ ଶୋଇ ଶୋଇ । କାହିଁ ପୃଥିବୀରେ ଏପରି ତ କାହିଁ ନାହିଁ । ବାସ୍ତବ ଜୀବନରୁ ରସ ଟାଣେ କବିତା ! ମିଛ !"

ସମାଲୋଚକ ଉତ୍ପୀଡ଼ିତ କବି ଟାଣ କରି କୁହନ୍ତି, "ମୋର ଇଚ୍ଛା ମୁଁ ଯାହା ଲେଖିବି । ମୁଁ ପୃଥିବୀ ପାଇଁ କବିତା ଲେଖୁନାହିଁ । ମୁଁ ଲେଖୁଛି କବିତାର ନିଜର ଖିଆଲରେ କବିତା । ମୋର ଖୁସି ମୁଁ ଯାହା ଲେଖିଲି । ମୋର ମଣିଷ ଆକାଶରେ ଉଡ଼ିବେ, ଏକାଥରକେ ସମୁଦ୍ରକୀ ସମୁଦ୍ର ପାଣି ଶୋଷି ନେବେ । ଜୀବନ କବିତାକୁ ଅନୁସରି ଚାଲିବ । କବିତାରେ ବାସ୍ତବ ଜୀବନର କୌଣସି ସମ୍ବନ୍ଧ ନାହିଁ । କବିତାର ଉଦ୍ଦେଶ୍ୟ ତାର ନିଜର, କବିତାର ନିଜର ମୂଲ୍ୟ କବିତା ।

ପୃଥିବୀର ନୀତି ଅନୀତି, ଉଦ୍ଦେଶ୍ୟ, ଦର ଦାମ, ନ୍ୟାୟ ଅନ୍ୟାୟ କାହାର କୌଣସି ସମ୍ବନ୍ଧ କବିତାରେ ନାହିଁ; ତେଣୁ ଏସବୁ ସମ୍ବନ୍ଧରେ କବିତାକୁ ଯାଞ୍ଚିବା କ ବିଚାର କରିବା ବୃଥା ।"

ଆଉ କବିତାର ପ୍ରକାଶର ଉପାୟ ଅର୍ଥାତ୍ ରୀତିଗତ ସମ୍ବନ୍ଧେ "ଯେପରି ମୋର ଯାହା ଇଚ୍ଛା ମୁଁ ତାହା ଲେଖିବି, ସେହିପରି ମୋର ଯେପରି ଇଚ୍ଛା ମୁଁ ସେପରି ଲେଖିବି । ପ୍ରକାଶର ଉପାୟ ଲାଗି ମୁଁ ସାଧାରଣ ବନ୍ଧାଗତ ମାଡ଼ି ଚାଲିବାକୁ ରାଜି ନୁହେଁ । ମୁଁ ଯାହା ଲେଖିବି, ତା କବିତାର ପ୍ରେରଣାରେ, ତେଣୁ ମୋର କବିତା ପ୍ରକାଶର ଉପାୟ କବିତା । ମନେ ଯେପରି ଇଚ୍ଛା କରନ୍ତୁ ସେହିପରି । କଳା ସମ୍ବନ୍ଧେ ମଧ୍ୟ ସେହିପରି । ହୁଏତ କବି ଲେଖିଲେ ଗବିତା (ଅର୍ଥାତ୍ ଅକବିତା), କିନ୍ତୁ ଆମେ ଯଦି ତାକୁ ଅକବିତା ବା ଗବିତା କହୁଁ, ତେବେ ସେ ଆମର ବୁଝିବା ଭୁଲ । ହୁଏତ ଶିଳ୍ପୀ ଆଙ୍କିଲେ ମଗରମୁହାଁ ମଣିଷ; କିନ୍ତୁ ସେଥିକି କହିବା ପାଇଁ ସାହସ ଦରକାର । ବାସ୍ତବ ଜୀବନର ମଣିଷ ସଙ୍ଗେ ତାର କୌଣସି ସମ୍ବନ୍ଧ ନାହିଁ । ସେ 'ଶିଳ୍ପର ଶିଳ୍ପ ଉପାୟରେ ପ୍ରକାଶ', ହୁଏତ ସେ ମଗର-ମୁହଁର ଶିଳ୍ପୀଙ୍କ ମୁହଁରେ ଅର୍ଥ ହେବ—"ସୁନ୍ଦରମାର ବିକାଶ ପ୍ରେମ, ବିହ୍ୱଳ, 'ଅଜଣାର ଛନ୍ଦ'ର ଏକକ ସମାବେଶ ।"

ସଂକ୍ଷେପରେ କହିଲେ କବିତା ବିଷୟରେ ଚରମପନ୍ଥୀ ଧାରଣାର ଏହି ଦୁଇଟି ଦଳ । ଜଣେ କହେ, 'ରଖ କବିତା, ସାରା ଦୁନିଆର ଲୋକେ ଗଡ଼ି ମଲେ ଦୁଃଖକଷ୍ଟରେ, ତାର ଉପାୟ ଚିନ୍ତାକର, ନୋହିଲେ ଯଦି କବିତା ଲେଖିବାକୁ ଏତେ ଝୁଙ୍କ ଅଛି, ତେବେ ଲେଖ ମଣିଷର ବସ୍ତୁବାଦର କବିତା, ଉପାୟ ଦେଖାଇ, ଉପଦେଶ ଦେଇ । ତୁମର କବିତା ହେଉ ଡାକ୍ତରଖାନାର ଔଷଧ, ନୋହିଲେ ଧର୍ମ ନୀତିର ଲେକଚର୍ ।" ଅଉ ଜଣେ କହେ, "ରଖ ତୁମର ଜୀବନ, ତୁମର ଲାଭ କ୍ଷତି, ଦୁଃଖ କଷ୍ଟ, ଧର୍ମ ଅଧର୍ମ, ନୀତି ଅନୀତି । ଲେଖ କବିତାର କବିତା ଉଦ୍ଦେଶ୍ୟ—କବିତା । ଉପାୟ—କବିତା । ବିଧାନ କବିତା" । କବିତାର ରୂପ ପ୍ରକାଶ ବିଷୟରେ ଅଧିକାଂଶଙ୍କର ମତ ଏ ଦୁଇଟି ବାଦର ଏପାଖ ସେପାଖ ଅଳ୍ପ ବେଶୀ ମତାମତ ଦେଇ । ଜଣେ ଜୀବନର ସାଧାରଣ ସମ୍ବନ୍ଧ ଉପରେ ଆଉ କିଛି ସ୍ଥାନ ଦେବାକୁ ଚାହେଁ ନାହିଁ, ଅଉ ଜଣେ ଜୀବନ ସଙ୍ଗେ କୌଣସି ସମ୍ବନ୍ଧ ସ୍ୱୀକାର କରିବାକୁ ନାରାଜ ।

କିନ୍ତୁ ଏ ଦୁଇଟି ବିପକ୍ଷଦଳ ସମାଲୋଚକଙ୍କ ପକ୍ଷରୁ ବିଚାରବୁଦ୍ଧି ଦୃଷ୍ଟିରେ ପ୍ରକୃତ କବିତା ଯେତେବେଳେ ବାହାରେ, ସେ କାଣ ଅପେକ୍ଷା କରି ବସେ

ବସ୍ତୁରକ୍ଷିକୁ ? କଳା-ଶକ୍ତ କଣ କଳର ଉପାସ୍ୟ ଲଗି ଟାକ ବସେ, ଦୁଇ ଦଳର ବଚଣ୍ଡାର ଶେଷ ମୀମାଂସାକୁ ? ସର୍ଜନର ମୋହରେ କବ କଳକୁ ଭୁଲଯାଏ, ସେ ଜାଣେ ନାହିଁ ସେ କଳେ କଣ ଲେଖୁଛ । ସେ ହୁଏ ଗୋଟିଏ ଅଜଣା ଶକ୍ତର ମିଡ଼ିୟମ୍ । ସେ ପ୍ରକୋପ କଲେ କବ ଯେତେବେଳେ ଯାଏ ବୃଝିବସ୍ତୁର କବତା ଲେଖିବାକୁ, ସେତେବେଳେ ସବୁ ଥାଏ, କବତାର ଆତ୍ମା ନ ଥାଏ । ଧର୍ମ ଅଜା କବତା ଲେଖନ୍ତ ଉପଦେଶ ଦେଇ, "ପାପ ପୁଣ୍ୟର ଏତକ ବସ୍ତୁର ଦେବ, ବଷୟ ହେବ ସତୀତ୍ୱର ସଂରକ୍ଷଣ, ଅମୁକ ଅମୁକ ଦୋଷ ବରୁଦ୍ଧରେ ଅଭିଯାନ କରବ । ମାଷ୍ଟର ପର ଶିଖାଇବ ଏଇ ପାପ ଏଡ଼ି ଚଳିବାକୁ ।" ଓସ୍କାର ଓ୍ୱାଇଲ୍ଡ଼ ଆଙ୍କିଲେ "କଳା ଲଗି କଳା", ଗାଇଲେ "କବତା ଲଗି କବତା", "ଜୀବନର କୌଣସି ଛବର କୌଣସି ଗତର ହାତଚଳିଆ ଏ ହବ ନାହିଁ, ରହିବ ମୋର ଜଣାଶୁଣା ଖିଆଲ ।" ଆହା ! କବତା ନୁହେଁ ଗବତା । ସେମାନଙ୍କର କବତା ବାହାରିଛ, ଯେଉଁଠି ସେମାନେ କଳକୁ ଭୁଲିଥିଲେ, କଳର ଏ ମସାଚୃସା ଉଦ୍ଦେଶ୍ୟ ଅଭିସନ୍ଧି ପାସୋର ଥିଲେ । ଅନ୍ୟଠି କବ ଅତ ଚେଷ୍ଟାରେ କରବ ଚମତ୍କାର ଦେହ (Form) । ବାଛୁ ଦେବାକୁ କେହି ନାହିଁ; କନ୍ତୁ ଗୋଟିଏ ଅଭାବ—କଳାର ଆତ୍ମା । ✍

ପ୍ରକୃତ କବତା ବାସ୍ତବକ ଯେତେବେଳେ ବୃଝାଳି ପ୍ରାଣରେ ପ୍ରତଧ୍ୱନ ଆଣେ, ସେତେବେଳେ କବତାର ପ୍ରକୃତ ବୃଝାଳି ଏତେ କଥା ମନରେ ପାଶୁ କବତାକୁ ଖବ ଦେଖେ ନାହିଁ । ମନ ଭିତରୁ ସବୁ ସୋଫିଷ୍ଟି ବାଛୁ ସଫା କରବାକୁ ହେବ, କବତାର କଳର ଯେଉଁ ମାନସିକ ଆଉ ପାରପାର୍ଶ୍ୱିକ ଅବସ୍ଥା (ଆଟିଚ୍ୟୁଡ଼୍), ସେହି ଅବସ୍ଥାରେ ଥିବ ବୃଝାଳିର ମନ, ତା ହେଲେ କବତାର ସ୍ପଷ୍ଟ ପ୍ରତଧ୍ୱନ ମିଳିବ; ଯଦ ତହିଁରେ ଥାଏ ପ୍ରକୃତ କଳା-ଶକ୍ତ । କନ୍ତୁ ଏପର ହେବା ସହଜ ନୁହେଁ; ତେଣୁ ଯାବତୀୟ ଅଶାନ୍ତ ଭୁଲ ବୃଝିବା ଇତ୍ୟାଦ । କବତାର ଇତହାସରେ ବଶେଷତଃ ୟୁରୋପ ଦେଶରେ ସମାଲୋଚକ ଅଛ କଳାବତ୍ତ ଏମାନଙ୍କ ଭିତରେ କଳିଆ, କବମାନେ ଖବଥାନ୍ତ, ସମାଲୋଚକ ସବୁ ଅଶାନ୍ତ ସବୁ ଭୁଲ ବୃଝିବାର ହେରୁ । ଏହାର କାରଣ ସମାଲୋଚକମାନଙ୍କର ଅନେକ ସମୟରେ ଅନର୍ଥକ ଦାବୀ ଅନର୍ଥକ ଖିଆଲ, ଅକାରଣ ଜୋରଜବରଦସ୍ତି । ଗୋବସ୍ତ ଜେନା ଯେତକ ବୃଝେ ବୃଝେ, ହର ପଣ୍ଡିତେ ଯେତକ ଭଞ୍ଜ କବତା ବୃଝନ୍ତ ବୃଝନ୍ତ; କନ୍ତୁ ମୂଳ ମିଶେ ସମାଲୋଚକ ସେତକ ନ ବୃଝନ୍ତ, ସେତକ ବୃଝିବାକୁ ଉମ କରନ୍ତ । ଯେତକ ବୃଝିପାରନ୍ତ, ସେତକ ଭିତରେ ଅନ୍ୟ ଉପାସ୍ୟ, ଅନ୍ୟ ତଥ୍ୟ, ଅନ୍ୟ ଦେଶର ସେର ତରଜ୍ ପକାଇ ଭିନ୍ନ ଅର୍ଥ କରନ୍ତ, ଯାହା ଶେଷରେ ହୁଏ ଅନର୍ଥ ।

କବିତା ଏତେ ପ୍ରଭାବ ପକାଏ, କାରଣ ଏ ଗୋଟିଏ ଅଦେଖା ଆଦର୍ଶର ପ୍ରକାଶ । ସୁନେଲି ହେଉ, ରୂପେଲି ହେଉ, ମଣିଷ ମଣିଷର ଭିନ୍ନ ଭିନ୍ନ ମତ, ଧାରଣା, ସ୍ୱତନ୍ତ୍ରତାର ବାଡ଼ ତା ମଝିରେ ନ ଥାଏ ।

କବିତା ଏତେ ଲୋକଙ୍କୁ ଭୁଲାଏ; କାରଣ ପ୍ରତିଲୋକ ନିଜ ଭିତରେ ବାହାରର ଏ ଶକ୍ତି ସହିତ ସାମଞ୍ଜସ୍ୟ ଅନୁଭବ କରେ । ଜୀବନ ଭିତରେ କଳାଶକ୍ତିର ପ୍ରକାଶ । ମଣିଷ ନିଜକୁ ତା ଭିତରେ ଚହ୍ନେ, ଦୂର ସ୍ୱପନର ସୁନ୍ଦର ରାଜପୁଅର ନବରଙ୍ଗିଆ ରଜାପୁଅ ସେ ନିଜେ । ସେଇ ପ୍ରେମ ତାର ନିଜର, ସେଇ ଆଶା ଆଶଙ୍କାର ପଡ଼ିବା ଉଠିବା ତା ନିଜର, ଚିନ୍ତା ପ୍ରବୃତ୍ତିମାନ ତାର । ସବୁ ସେ ବୁଝୁଛି; ତଥାପି ସବୁ ତା ଆଖିକୁ ନୂଆ, ସବୁ ଯେପରି ନୂଆ ଜୀବନ ପାଇଛି । କଳା-ଶକ୍ତିର ପ୍ରଭାବରେ ଦିଶୁଛି କେମିତି କେମିତି, ଅତି ସୁନ୍ଦର, ଅତି ମନଭୁଲାଣି । ଘାସରେ ପଡ଼ିଛି ନୂଆ ଅ଼ାଲୁଅ, ସେଇ ଘାସ ଯାହା ସେ ସବୁଦିନେ ଦେଖିଛି; କିନ୍ତୁ କେବେ ଚିହ୍ନି ନାହିଁ । ସେଇ ଫୁଲ ତା ଆଖିକୁ ନୂଆ, ସେଇ ଆକାଶ, ସେଇ ପୃଥିବୀ । ଜୀବନ ଅଉ ଆଦର୍ଶର ଅପରୂପ ମିଳନ !

ତେବେ ଏ ଦୁଇଟି ଚରମପନ୍ଥୀ ଦଳର ସାର୍ଥକତା କେଉଁଠି ?

କବିତାର ସାର୍ଥକତା ବିଷୟରେ ତର୍କ କରିବା ବୃଥା । ତେବେ ଯେ ପର୍ଯ୍ୟନ୍ତ ମଣିଷ ମଣିଷ ରହିଛି, ଫୁଲ ଦେଖିଲେ ଖୁସି ହୁଏ, ଅସନା ଦେଖିଲେ ନାକ ଟେକେ, ଜହ୍ନ ଅ଼ାଲୁଅ ଥିଲେ ଝରକା ଖୋଲେ, ଭାବେ ନଈ କୂଳରେ ଅନ୍ତତଃ ପଦାରେ ଟିକିଏ ବୁଲି ଆସେଁ, ବରଷାର ଅନ୍ଧାର ରାତିରେ ଘରେ ବସେ, ହସେ, କାନ୍ଦେ, ସ୍ତ୍ରୀ ପୁରୁଷ ଭିତରେ ଆକର୍ଷଣ ଅନୁଭବ କରେ, ସେ ପର୍ଯ୍ୟନ୍ତ କବିତା ରହିବ । ମୁହୂର୍ତ୍ତିକ ପାଇଁ ସୁଦ୍ଧା କଳାର ଅନୁଭୂତ ହେଲେ କବିତା ସଞ୍ଚାର ହୁଏ । ପ୍ରକାଶ ପାଇଲେ ଦଶଲୋକ ସାଇତି ରଖନ୍ତି, ନୋହିଲେ ପାସୋରିଯାଏ । ଲଢ଼େଇ ଶେଷରେ କବିତାର ଉପକାର କେବଳ ମଜଲିସ ପାଇଁ ନୁହେଁ, ଜୀବନ ଆଣିବା ପାଇଁ ଲଢ଼େଇ, ଧ୍ୱଂସ, ଅପ୍ରାକୃତ, ଯେଉଁ ପରିମାଣରେ ସୃଷ୍ଟିର ସୂଚକ, ସେତିକି ପରିମାଣରେ ପ୍ରାକୃତିକ । କବିତା ଆଦର୍ଶ ଭିତରେ ପ୍ରାକୃତିକ ଉପାୟରେ ବାସ୍ତବକୁ ଜୀବନ ଦେଇଥାଏ ।

କବିତା ଔଷଧ ନୁହେଁ, ଜୀବନ । ଯେଉଁ କବିତା ଔଷଧ, ଯେଉଁ କବିତା ସଂସାରର ଦୁଃଖକଷ୍ଟ ଭୁଲିବା ପାଇଁ ଗୋଟିଏ ନିଶା, ସେ କବିତା, ଅକବିତା । ଜଣେ କବି ସତ କହନ୍ତି—

"ମୋର କବିତାରେ ନାହିଁ ଖୁସିବାସିଆ ରଜାପୁଅ, ମଜଲିସରେ ବ୍ୟସ୍ତ, ମୋଟା ପୁରୋହିତ, ଖାଇ ପିଇ ଗୋଲଗାଲ, ପୋଷାକ ପିନ୍ଧି ରଥରେ ଚଢ଼ି ଚାଲନ୍ତି ଯେଉଁମାନେ ଦୃଶ୍ୟ ଦେଖି ।

"ମୋର କବିତାରେ ନାହାନ୍ତି ମେଡ଼ାଲ—(ସମ୍ମାନର ପଦକ) ମଖା ସେନାପତି, ଦାମୀ ଘୋଡ଼ାରେ ଚଢ଼ି ଚାଲନ୍ତି ଯେ ପ୍ୟାରେଡ୍ ଦେଖି ।

"ମୁଁ ଚାହେଁ ସେଇ ଲୋକଙ୍କୁ, ଲଢ଼ି ଲଢ଼ି ମୁହଁ ଝାଳରେ ମିଶିଛି ଯାହାଙ୍କର ମୁଣ୍ଡର ରକ୍ତ । ଆଜି ମଲେ କାଲି କେହି ନାହିଁ ପଚାରିବାକୁ ।

"ଅନ୍ୟମାନେ ଗାଆନ୍ତୁ ପଛେ ଗୋଲାପ କଥା, ନଗର କଥା, ମଜଲିସ୍ କଥା । ଥାଉ ତାଙ୍କର ରଙ୍ଗ, ତାଙ୍କର ବଡ଼ ବଡ଼ ନାଁ, ତାଙ୍କର ବଡ଼ତି, ତାଙ୍କର ସୁନେଲି ଅଳସ ତାଙ୍କର ବାସନା । ମୋର କବିତାର ଆଉ ଖାଲି ମୁଠାଏ ପାଉଁଶ, ଖାଲି କଲେ ଫିମ୍ପି ମଶ ଦୁର୍ଗନ୍ଧ, ଯାହା ଦଶ ଲୋକେ ଫୋପାଡ଼ ଦିଅନ୍ତି ରାସ୍ତାକୁ, କୁକୁର ଶୁଙ୍ଘା ଛୁଏଁ ନାହିଁ—ଯାବତୀୟ ଅସନା, ଯାବତୀୟ ଅସୁନ୍ଦର, ଯାବତ ଛୋଟଲୋକ, ଯାବତ ଦୁଃଖକଷ୍ଟ ।

"ଖାଲି ହାତମୁଠାରେ ମୁଠାଏ ପାଉଁଶ, ପାଟିରେ କଲେ ଫିମ୍ପି ।"

ସେ ଧରିଲେ ଗୋଟାଏ ନୂଆ ରାସ୍ତା । ଜୀବନର ବହୁ ରୂପ, କବିତାର କେବଳ ମଜଲିସ୍ ରୂପ ନୁହେଁ, ଆହୁରି ଅନେକ ରୂପ । କବି ଯେ ସୁନ୍ଦର ମାରେ ମାତନ୍ତି, ସେ କେବଳ କଳାଶକ୍ତିର ଗୋଟିଏ ବିକାଶ, ପ୍ରକାଶର ଗୋଟିଏ ଉପାୟ । ପ୍ରଭୁସମ୍ମିତ, କାନ୍ତା-ସମ୍ମିତ, ମିତ୍ର-ସମ୍ମିତ ପ୍ରଭୃତି ଉପକାରୀ ଉଦ୍ଦେଶ୍ୟ-ମିଶା ବ୍ୟବହାର ଉପରେ ଆହୁରି ଗୋଟିଏ ବଡ଼ ଉପାୟ, ଆଦର୍ଶର, ଯାହା ସବୁ ଉଦ୍ଦେଶ୍ୟର ଉପରେ । "ତୃଷାରୁ ବେଗୀ" ତଥ୍ୟର ପ୍ରଚାର କବିତାର ଆଦର୍ଶ ତୁଳନାରେ ଅତି ସଙ୍କୀର୍ଣ୍ଣ । ଜୀବନକୁ ନୂଆ ରୂପରେ ଅନୁଭବ କରି ସାଧାରଣ ବାସ୍ତବ ପୃଥିବୀରେ ଅସାଧାରଣ ଆଦର୍ଶକୁ ଯେ ସହଜରେ ମନକୁ ନିଏ, ସେ ନିଶ୍ଚୟ ଔଷଧ ବା ନିଶାଠାରୁ ଅଲଗା ।

ଏପରି ଯେଉଁ କବିତା, କୌଣସି ଉଦ୍ଦେଶ୍ୟ ରଖି ଲେକଚର୍ ପ୍ରଣାଳୀରେ ତାକୁ ବାନ୍ଧି ରଖିବା କଣ ହସର କଥା ନୁହେଁ ? ଏକେ ତ ପ୍ରକୃତ କଳା ସବୁଦିନେ ଗୋଟିଏ ଅଜଣା ଉଚ୍ଛ୍ୱାସ । ତା ଉପରେ ବାନ୍ଧି ରଖିବାର ପ୍ରଣାଳୀ ଆଦର୍ଶକୁ ବାସ୍ତବରେ ବାନ୍ଧି ରଖିବାକୁ ବୃଥା ଚେଷ୍ଟା । ଆମର ଧର୍ମ ଗ୍ରନ୍ଥ ଦେଶର

ଲୋକଙ୍କ ପ୍ରାଣରେ ପ୍ରତିଧ୍ୱନି ଅଣେ, ଏଥିପାଇଁ ନୁହେଁ ଯେ, ସେ କବିତାର ମୂଳ ହେଉଛି ଉପଦେଶ । ଦୂରହୂର ମୋହ, ସ୍ୱପ୍ନମସ୍ତ କଳ୍ପନାର ଦଣ୍ଡକାରଣ୍ୟରେ ରାମ ଲକ୍ଷ୍ମଣ, ଅଶୋକ ବନରେ ରାକ୍ଷସ (ବ୍ୟାକ୍ ଗ୍ରାଉଣ୍ଡ୍), ଆଗରେ ସୀତା, ମନର ଭାବ-ପ୍ରବୃତ୍ତିର ସହଜ ଚଳାଚଳ ଭିତରେ ବାଲ୍ମୀକିଙ୍କର କଳାପ୍ରକାଶ, ଚମତ୍କାରୀ ଗୁଣ, ଏଥି ସକାଶେ ସେ କବିତା ଏ ଯୁଗର ପ୍ରାଣରେ ସ୍ପନ୍ଦନ ଆଣେ । ସମୟ ଅନୁସାରେ ଧର୍ମ ବଦଳେ । ନୀତି ନିର୍ଭର କରେ ସମାଜର ପରିସ୍ଥିତି ଉପରେ; ତେଣୁ କାଳକ୍ରମେ ପୁରୁଣା ହୋଇଯାଏ । ନୂଆ ନୀତି, ନୂଆ ଧର୍ମ ଆସେ; କିନ୍ତୁ କବିତା ସବୁଦିନେ ପୁରୁଣା, ସବୁଦିନେ ନୂଆ । ତେବେ ବଦଳେ ଯେଉଁ ନୀତି ଉପଦେଶ, କବିତା ତା'ଠାରୁ ଉପରେ ।

ବଦଳେ କବିତାର ପ୍ରକାଶର ଉପାୟ । ଭାଷା ବଦଳେ, ରୁଚି ବଦଳେ; ତେଣୁ ପ୍ରକାଶର ଉପାୟ ବଦଳେ । ଭକ୍ତଯୁଗର ଭାଷା ଏ ଯୁଗରେ ପୁରୁଣା । ଭାଷା ବଦଳେ, ନଈର ଗତି ଯେପରି ବଦଳେ ସେହିପରି । ସାଧାରଣ ଶବ୍ଦ, କବିତାର ଭାବ ପ୍ରକାଶ କରିବା ଲାଗି ଭାଷା ଗୋଟାଏ ଯୁଗକୁ ନୂଆ ଲାଗେ । ତାର କିଛି ବିଶିଷ୍ଟତା ଥାଏ । ଅନ୍ୟ ଯୁଗରେ ସେ ହୁଏ ନିରର୍ଥକ, ତାର ବିଶିଷ୍ଟତା ଉଭେଇ ଯାଇ ସାଧାରଣ ହୋଇଯାଏ, ନଈର ପୁରୁଣା ଗର୍ଭର ବାଲିରେ ପଡ଼ି ପଡ଼ିଲା ପରି । ତାପରେ ପ୍ରକାଶ ଲାଗି ନୂତନ ଉପାୟ । କିନ୍ତୁ କବିତାର ସାର ବଦଳେ ନାହିଁ ।

ତାପରେ ଆଉ ଦଳ, "କବିତା ଲାଗି କବିତା, କଳା ଲାଗି କଳା ।" ଏମାନେ ଭାବନ୍ତି, କବିତାର ନିଜର ରୂପ, ନିଜର ରାଇଜ, ନିଜର ସବୁ । କବିତା ଜୀବନକୁ ଅନୁସରି ଚାଲିବ ନାହିଁ । କବିତାର ଜୀବନ ସଙ୍ଗେ ସମ୍ବନ୍ଧ ନାହିଁ । ଜଣେ ଜଣକର ବନ୍ଧୁ ନ ହୋଇପାରେ; କିନ୍ତୁ ବନ୍ଧୁ ନ ହେଲେ ଶତ୍ରୁ ହେବାକୁ ପଡ଼ିବ, ଏ ଧାରଣା କେତେ ସଙ୍ଗତ ? କବିତା ଧର୍ମ ଅଧର୍ମ, ନୀତି ଅନୀତି ପ୍ରଚାର କରିବ ନାହିଁ ବୋଲି ଯେ ପୃଥିବୀଠାରୁ ପୃଥକ୍, କବିତା ମୂଳରେ କୌଣସି ସ୍ଥିର ଉଦ୍ଦେଶ୍ୟ ପ୍ରଚାର ନ କରିବ ବୋଲି ତାର ଦୁନିଆ ନିଆରା, ଏ କଥା କିଏ କହିଲା ?

କବି ରଚିଲେ ପଦ୍ୟ, ରାକ୍ଷସ, ସୁନ୍ଦରମାର ସମାବେଶ, କୁତ୍ସିତର ପାହାଡ଼ । ଭଲ କଥା; କିନ୍ତୁ ସୁନ୍ଦରମାର ସମାବେଶ ବା କୁତ୍ସିତର ବୋଝ କରିବା ପାଇଁ ସେ ନିଜର ସୃଷ୍ଟିକୁ ଗଢ଼ିବେ କିପରି ? ହୁଏ ତ ପଙ୍କିଳ ସୁନ୍ଦର ସ୍ତ୍ରୀ ମୂର୍ତ୍ତି, ନେହ ବାସ୍ନା, ସ୍ୱର ବୀଣାର ଶବ୍ଦ ପରି, ପକ୍ଷ ମଣିମୁକ୍ତାର । ପଦ୍ମ ଉଡ଼ିପାରେ, ଫୁଲ

ପାଟେ଼ଲାରେ ଶୋଇପାରେ; କିନ୍ତୁ ପକ୍ଷୀର ପ୍ରତ୍ୟେକ ଅଙ୍ଗ, ପ୍ରତ୍ୟେକ ଲକ୍ଷଣ କବି ପୃଥିବୀରୁ ଯେଉଁ ଏକାଠି କରିଛନ୍ତି । ସ୍ତ୍ରୀ ଉଡ଼ିପାରେ ନାହିଁ, ହଂସର ପକ୍ଷ ମଣି-ମୁକ୍ତାର ନୁହେଁ । ନ ହେଉ; କିନ୍ତୁ ପୃଥିବୀରେ ଉଡ଼ିବାର ଉଦାହରଣ ମଧ୍ୟ ମିଳେ, ମଣିମୁକ୍ତାର ଧାରଣା ମଧ୍ୟ ମିଳେ, ବୀଣା ସ୍ୱରର ଧାରଣା ମଧ୍ୟ ମିଳେ । ଏଠି କବିଙ୍କର ବାହାଦୁରି ସଜାଇବାରେ, ସର୍ଜନ କରିବାରେ ନୁହେଁ । ସଂସ୍କୃତ ଅଳଙ୍କାର ଏ ଧାରଣାକୁ ଆହୁରି ସହଜ କରି ଥୋଇଛନ୍ତି ଅଳ୍ପ ଆଡ଼ମ୍ବରରେ । ହରିଣ ଆଖି ପରି ଆଖି, କୁନ୍ଦ ଫୁଲରେ ଭଅଁର ବସିଥିଲା ପରି ଆଖି, ଆଙ୍ଗୁଠି ଅଶୋକ କଢ଼ିପରି, ରଙ୍ଗ କେତକୀ ପରି, ନୋହିଲେ ଚମ୍ପା ପରି । ସେହିପରି ଓଡ଼ିଆରେ—"ଲଜକୁଳୀ ନଟା ପରି ନୂଆ ବୋହୂଟି, ପାନ ପତର ପରି ମୁହଁ, ରଙ୍ଗ କଞ୍ଚା ହଳଦୀ ପରି, ଚାଲେ ଯେମିତି ଗୃଣ୍ଠୁଣୀ ହାତୀ ।" ନୋହିଲେ ମୁହଁ ଚୁଲୁଣୀ ପରି, ନାକ ଗଜମଣ୍ଡା, ଆଖି ଶଗଡ଼ ଚକ ପରି, କୁମ୍ଭାଟୁଆ ଆଖିର ରଙ୍ଗ, ଦାନ୍ତ ମୂଳା ପରି, ଚାଲେ ଦୁମ୍ ଦୁମ୍, ହସେ ଘୋଡ଼ା ପରି ।" କବି ସଜାଇଲେ । କଳା-ଶକ୍ତିର ପ୍ରେରଣାରେ ତାଙ୍କୁ ଗୋଟାଏ ପ୍ରକାର ସାଜ ଭଲ ଲାଗିଲା; କିନ୍ତୁ ପ୍ରତ୍ୟେକ ଅଂଶ ସେ ଯେଉଁଲେ ଜୀବନରୁ, ପୃଥିବୀରୁ ।

କବିତାର ନିଜର ଗୋଟିଏ ରୂପ ଅଛି, ଗୋଟିଏ ଆତ୍ମା ଅଛି, ଯାହା ଦେଖା-ପରଖା ପୃଥିବୀର ନୁହେଁ; କିନ୍ତୁ ସେ ନିଜକୁ ପ୍ରକାଶ କରିଥାଏ ଜୀବନ ଭିତରେ । "କନକଲତା", କବି ପ୍ରେୟସୀ କଳା-କଳ୍ପରୂଢ଼ୀର ନାଁ, ଗୋଟାସୁଦ୍ଧା କବି କଳ୍ପନାର; କିନ୍ତୁ ଧାରଣା ଆସିଲା ଏ ପୃଥିବୀର 'କନକ'ରୁ, ପ୍ରକୃତିର "ଲତା"ଠାରୁ ।

ଯଦି ଧରିଯାଏ କବି ନିଜକୁ ପ୍ରକାଶ କଲେ ନିଜର ଖିଆଲି ସୃଷ୍ଟି ଭିତରେ, ଯାହାର ଜୀବନ ସହିତ ଆଦୌ ସମ୍ବନ୍ଧ ନାହିଁ, ତା ହେଲେ ସାଧାରଣ ପୃଥିବୀର କବିତାର ଧାରଣା ବଦଳାଇବାକୁ ପଡ଼ିବ । ସମସ୍ତେ ବୁଝିବା ସକାଶେ କେତେ-ଗୁଡ଼ିଏ ବନ୍ଧାଗତ ଅଛି, ଯେପରି—ଭାଷା । ନିଜର ମନୋଭାବ ଚନ୍ଦ୍ରରେ ସ୍ପଷ୍ଟ ପରିଷ୍କାର ଅନୁବାଦ କରିବା ଯେତେ କଷ୍ଟ ହେଉ ପଛକେ, ତାକୁ ଛାଡ଼ି ଅନ୍ୟ ଉପାୟ ନାହିଁ । କବି ଦେଖିଲେ, "କାବାସ" 'କ' ଆକାର 'ବ' ଆକାର ଦନ୍ତ୍ୟ 'ସ' । କହିଲେ, "ଏ ହେଉଛି କବାଟ ।" ମୋର କବି ଶକ୍ତିର ସ୍ୱୟଂ ପ୍ରକାଶ ଏହି ଉପାୟରେ ହେଲା ।" କବି ଭାଷାର ବନ୍ଧାଗତ ଭାଙ୍ଗିଲେ; ତେଣୁ କେହି ବୁଝି ପାରିବ ନାହିଁ, ସ୍ୱୀକାର କରିବା ତ ଦୂରର କଥା, ଯେଉଁ ମୁହୂର୍ତ୍ତରେ ଏ ଖିଆଲ ବାସ୍ତବିକ କଳା ଶକ୍ତିର ତାଡ଼ନାରେ ମୁଣ୍ଡରେ ପଶିଲା, ତା ପର ମୁହୂର୍ତ୍ତରେ

ହୁଏତ କବି ନିଜେ ବୁଝି ପାରିବେ ନାହିଁ । କବି ଲେଖିବେ କବିତା, କହିବେ
"ସେ ହେଲା ଅତି ଉଚ୍ଚ କବିତା, ଅତି ମିଷ୍ଟିକ୍, ଅତି ଆଦର୍ଶ ।" କବି ଟାଣିବେ
ଗାର, ସାଧାରଣ ଲୋକ ଦେଖିବ ଖଣ୍ଡିତ ମାନବଶରୀରର ଲକ୍ଷ, ଟେଙ୍କିର ଅଣ୍ଟା, ବଗର
ପକ୍ଷୀ, ସାପର ମୁଣ୍ଡ । କବି କହିବେ, "ଏ ହେଉଛି ଅତି ଉପାଦେୟ ଚିତ୍ର, ଜୀବନ
ସଙ୍ଗେ କୌଣସି ସମ୍ବନ୍ଧ ନାହିଁ; କିନ୍ତୁ ବିରହୀ ଯକ୍ଷର ନିଜ ରୂପ । ହେଇ ଦେଖ,
ଆଶା ଉଚ୍ଛ୍ୱାସର ଶମଗିର, (ଦକ୍ଷିଣ ଗୋଟାଏ ଦୁଇଟା ଆଖି ଭାଗାର) ହେଇ ଦେଖ
ବିରହୀ ଯକ୍ଷ ଅର୍ଥାତ୍ ଭାରତର ଲକ୍ଷ ଟେଙ୍କିର ଅଣ୍ଟା ଓଗେର । ତାର ପ୍ରତ୍ୟେକ ଭାବ
ଅସମାପିକା ଛନ୍ଦରେ ମୁଁ ଫୁଟେଇଛି ।" ବୁଝାଳି ଶୁଣିବେ, କବିଙ୍କର ନୋହିଲେ
କବିଙ୍କ ଭକ୍ତମାନଙ୍କର ବକ୍ତୃତା; ଫେରିବେ ମୁଣ୍ଡ ଆଉଁଷି । କିଏ କହିବ ତଲଖ
କବି ନିଜର ଅକ୍ଷମତାକୁ ଘୋଡ଼ାଇବାକୁ ନ ଯାଉଛନ୍ତି, ବିହ୍ୱଳ ତର୍କରେ ? କିଏ
କହିବ ଏ ନୁହେଁ ଦିନ ଦିପ୍ରହରରେ ଡକାୟତି ?

ନ ହୋଇପାରେ । ହୁଏତ ତହିଁରେ ସାର ଅଛି; କିନ୍ତୁ ସେ ସାର ଯିବ
ଥାଏ, କବିଙ୍କର ନିଜର । କଟକ ସହରର କେତେ କାନ୍ଥରେ ରହିଛି ଚିତ୍ର ।
ସାଧାରଣ ଲୋକେ ଭାବିବେ, ଅପଟୁ ମହାରଣାର କାରସାଜି । ଜୀବଜନ୍ତୁ ଦେଖିଲେ
ମନେ ପଡ଼ିବ ପ୍ରାଗୈତିହାସିକ ଯୁଗର କଥା; କିନ୍ତୁ କିଏ ଜାଣେ ? ହୁଏତ ଶିଳ୍ପୀ
ପ୍ରାଣ 'ଅସୀମର ଛନ୍ଦ'ରେ ମାତି ଉଠିଥିଲା, ହୁଏତ ଯାହା ଦିଶୁଛି ତାହା ନୁହେଁ,
ହାତୀ ଗୋଡ଼ଠାରୁ ମୋଟା ହାତୀ ଶୁଣ୍ଢରେ ରହିଛି ଅତି ଅପୂର୍ବ ଇଙ୍ଗିତ-କଳା;
ବୁଝାଇବାକୁ ଶିଳ୍ପୀର ଶକ୍ତି ନାହିଁ ।

ଏପରି ଶିଳ୍ପ, ଯହିଁରେ ସାଧାରଣ ଜୀବନକୁ ଏଡ଼ି ରହିଛି ଶିଳ୍ପୀର ନିଜର
ମନ କଥା, ଏପରି କବିତା, ଯହିଁରେ ସାଧାରଣ ଜୀବନର ଅନୁଭୂତି ବଦଳରେ
ଅଛି କବିଙ୍କର ନିଜ ସର୍ଜନର ଅନୁଭୂତି । ଏସବୁ ପୃଥିବୀର କଳା ବା କବିତା
ମହଲରେ ସ୍ଥାନ ରଖିବାକୁ ଉପଯୁକ୍ତ ନୁହେଁ । ପ୍ରକାଶର ଉପାୟ ଯେତେ ଜଞ୍ଜ
ହେଉ ପଛେ, ଏ ଅତି ବ୍ୟକ୍ତିଗତ, ଏଥିରେ ଦେଶର ଦଶଲୋକେ ଭାଗ ନେଇ
ପାରିବେ ନାହିଁ । ଉଦୁଉଦିଆ ଝୋଲମିଶା ଦ ପହରେ ଗାଈଜଗା ଟୋକା ଦପି-
ପଡ଼େ ମୁହୂର୍ତ୍ତେ । ସ୍ଥିର ପ୍ରକୃତି ମଝିରେ କ'ଣ ସେ ପାଏ, ସେ ଜାଣେ ନାହିଁ ।
ବିନା ଚେଷ୍ଟାରେ ଗୁଣୁ ଗୁଣୁ କରି ସେ ଗୀତ ଗାଏ । ମୁହୂର୍ତ୍ତକ ଲାଗି କଳା-ଶକ୍ତି
ତା ଉପରେ ଉଭା ହୋଇ ତା ପରେ ଲୁଚିଯାଏ । ସେ ଗୁଣୁ ଗୁଣୁ ଆପେ ନିଜର
ପ୍ରକାଶ, ହୁଏତ ସେ ଯେଉଁ ଅନୁଭୂତି ପାଇଛି, କିପରିବାପି ତା'ର ସାମଞ୍ଜସ୍ୟରେ ସେ
ଶବ୍ଦ ପ୍ରକାଶ ପାଏ ! କିନ୍ତୁ ପୃଥିବୀର ବନ୍ଧାଗତ ହୋଇଛି ଯେଉଁ ଆଦାନ ପ୍ରଦାନର

ସାଧାରଣ ଧାରଣା, ଯେଉଁ ଭାଷା, ସେହି ଉପାୟରେ ପ୍ରକାଶ ନ ପାଇବାରୁ କେହି ବୁଝେ ନାହିଁ । କଳା-ଶକ୍ତି ଥିଲା; କିନ୍ତୁ ମିଶ୍ରିତ ଜୀବନ ଅପୂର୍ଣ୍ଣ, ଅନୁପଯୁକ୍ତ; ଅତଏବ ତାକୁ କବିତା ବୋଲି ଲେଖିବା ଆଇନ ନୁହେଁ । ଠିକ୍ ସେହିପରି "କଳା' ଲାଗି କଳା, କବିତା ଲାଗି କବିତା" ଭଣ୍ଡାମି ନ ହୋଇ ସାର ହେଲେ ସେ ବ୍ୟକ୍ତିଗତ ସମ୍ପତ୍ତି, "କବିତା" ବୋଲାଯାଇ ନ ପାରେ, ସେ ଗଦ୍ୟ ।

କବିତାର ବ୍ୟର୍ଥତା ପ୍ରମାଣ କରିବା କିମ୍ବା କବିତାକୁ କୌଣସି ମତ ବା ଉଦ୍ଦେଶ୍ୟର ସାପେକ୍ଷ କରିବା ଭୁଲ । ଏ ଠିକ୍ ଜୋକ୍ କବିତା ବା ପଣିକିଆ ବୋଲି ପରି ।

କବିତାକୁ ଜୀବନଠାରୁ ଅଲଗା କରିବା ବା ନିଜର ବନ୍ଧା ସଙ୍କେତରେ ପ୍ରକାଶିବା ଅତି ବେଶୀରେ ହେବ ସଙ୍କେତ ସାହିତ୍ୟ । ପୂର୍ବକାଳରେ ଠଗମାନେ ଯାତ୍ରି ଦଳକୁ ଭଣ୍ଡାଇ ନେଇ ଖୁସିବାସିରେ ଆଳାପ କରିବା ଛଳରେ ଜଣକା ପିଛା ଜଣେ ଗାଡ ମାଡ଼ି ବସିଲା ପରେ ସର୍ଦ୍ଦାର ହାଙ୍କୁଥିଲା, "ପାନ ଲାଓ" ନୋହିଲେ, "ହୁକା ଲାଓ" ! ଯାହାର ଅର୍ଥ ଯାତ୍ରୀମାନଙ୍କୁ ସଂହାର ପରି ଜଣାପଡ଼ିଲେ ସୁଦ୍ଧା ଠଗର ଦଳକୁ ଅର୍ଥ "ତଣ୍ଟିରେ ଫାଶୀ ମାର ।"

କବିତା ଏହି ଜୀବନକୁ ରସ ଟାଣି ବଞ୍ଚେ । ମଣିଷର ସୁଖ ଦୁଃଖ, ଘର ପାଖର ପୃଥିବୀ, ସବୁ ପ୍ରବୃତ୍ତି, ଆଦର୍ଶ, କବିତାର ବସ୍ତୁ । ଜୀବନଠାରୁ କବିତାକୁ ଅଲଗା କରି ଦେଖିବା କଥା ଉଠି ନ ପାରେ । କବିତା ମଣିଷ ଜାତିକୁ ଏକାଠି ବାନ୍ଧେ କାରଣ ମଣିଷକୁ ସେ ଦେଖେ ମୂଳ ମଣିଷ ପରି । କଳ୍ପନାର କୁହୁକରେ ପୃଥିବୀକୁ ଟାଣି ଓଟାରି ଯେମିତି ଗୁଳେ ସଭ୍ୟତା ଅଙ୍କୁରୁ । କଳା-ଶକ୍ତିର ଆବରଣ-ଭେଦୀ ଦୃଷ୍ଟିରେ ପ୍ରତ୍ୟେକ ପଦାର୍ଥକୁ ବୁଝାଏ । ଯେଉଁ ସ୍ୱରୂପ ବାହାର ଆଖିରେ ଧରାପଡ଼େ ନାହିଁ, ତାକୁ ରଖେ ସାମ୍ନାକୁ ।

କିନ୍ତୁ କବିତା ସ୍ୱାଧୀନ କଳାର ପ୍ରକାଶ, କାହାର ହୁକୁମ ମାନେ ନାହିଁ । ଯେପରି ମୁହୂର୍ତ୍ତିକେ ସାଧାରଣ ଦୃଶ୍ୟ ମନ ଉପରେ ଯେଉଁ ଗମ୍ଭୀର ଗାର ଟାଣେ, ତା ପ୍ରସ୍ତରକର ପଦ୍ଧତିରେ ନୁହେଁ, କି ଗୁରୁଙ୍କ ଅନୁଜ୍ଞାରେ ନୁହେଁ ।

କବିତା କିଛି ନୁହେଁ, କବିତା କବିତା, ଶରବଣ ଭିତରେ ପବନର ଲୁଚକାଲି ଖେଳ ।

ଫୁଲ ଫୁଟେ, ଫୁଲ ଝଡ଼େ, ଫୁଲ ସୁନ୍ଦର ଦିଶେ । ଏ ଫୁଲଟି ଡଲ୍ଲପଡ଼େ ନିଜର ଘରରେ । ସେ ଫୁଲଟି ଥିବ ଥିବ ଥରେ ଉଦାସୀ ପବନରେ । କଉଁ ଫୁଲ୍ଲଆ ଜନ୍ମ ରଚେ ସ୍ୱପ୍ନର ମାୟାପୁରୀ, ଆକାଶର ବଉଦ ପକାଏ ଚଳନ୍ତି ଛାଇ । କାରଣ ନାହିଁ । ମଣିଷର ହୁକୁମ ଉପଦେଶ ମାନେ ନାହିଁ । ଏଇ ପୃଥିବୀରେ ଏ ଜୀବନ ସମ୍ଭାର ମଝିରେ । ସ୍ୱାଧୀନ ଜୀବ ଗାଏ, ଜୀବତାର ମାଧୁରୀରେ ଖେଳେ ରୂପ ଭିତରେ ଅପରୂପ ମୂର୍ଚ୍ଛନା ।



# ଶାରଦୀୟା

ନେଳି ଆକାଶ ତଳେ ସବୁଜ କ୍ଷେତ, ସେପାଖେ ବାଲୁର ନଈଟି ଯାଉଛି ବନ୍ଧ, ଝୁସି ଝୁସି ସ୍ୱପ୍ନର ସେ ପାରିକୁ । ଏଠି ସେଠି ଦୁଇ ଚାରିଟା ବୁଦା, ଲାଲ, ଧଳା, କଳା ମିଚ୍ ମିଚ୍—ସେପାରିରେ କେଉଁଏ କେଉଁଏ ସୁନେଲି ତରୀ । କାଶ ଫୁଲର ଗାର ସେପାଖେ ନେଳି ପାହାଡ଼ର ବାଡ଼ ଚାଲିଛି ।

ସଞ୍ଜର ମଳିନ ଛାଇ ଓହ୍ଲାଇ ଆସେ । ପଥୂଲି ବାଡ଼ିଟି ପୋତେ ନଈ କୂଳରେ, ବୁଜୁଳି ଟାଙ୍ଗି ଦେଇ ଆଁ କରି ଚାହେଁ ସେ ପାରିକୁ । ସଞ୍ଜର ମଳିନ ଛାଇ ତଳେ ଧୀରେ ଧୀରେ ସବୁ ଲିଭିଆସେ; ଖାଲି ରହେ ନଈଟା । ଚାଲିଛି, ଆଉ ଆକାଶରେ ଉଡ଼ନ୍ତା ଚଢ଼େଇ । ଆଜି ଏତିକି ।

ଭାଲି ସକାଳେ ଆହୁରି ବାଟ ସିଧା । ନଈ ସେପାଖେ କାଶ ଫୁଲ; ସେ ପାଖେ କେତେ ବଲ ଜଙ୍ଗଲ, ଗା ଗଣ୍ଡା । ଆହୁରି ଆଗକୁ ବଡ଼ ସଡ଼କର ନାଲିଆ ଗାର । କାଲି ସେତିକି । ପୁଣି ସଞ୍ଜର ଛାଇ ।

ଯୁଗ ଯୁଗ ଧରି ମଣିଷ ଚାଲିଛି । କୁଆଡ଼େ ? କେତେ ବାଟ ?

ସନ୍ଦେହ ହୁଏ । ହୁଏ ବା ମୋଟେ ଚାଲିନାହିଁ । ନଜେ ଚାଲୁ ନ ଥିଲି ! ଆଖି ଦିଟା ଘୂରୁଛି । ବିଶ୍ୱାସ ଘୂରୁଚ । ଅନୁଭୂତି ଚହଲୁଛି । କେତେ ବାଟ ?

ସେ ଦିନର ଦୁର୍ଗାପୂଜା, ଖଣ୍ଡାଏତ ଧରିଲା ଖଣ୍ଡା, ଜାଠ ଧରିଲା ଶତ୍ରୁ । ଶତ୍ରୁର ରକ୍ତରେ ଭୂଇଁ ହେଲା ଲାଲେଲାଲ ! ଛାତି ଫୁଲାଇ ଓଡ଼ିଆ ବୀର ଚାଲିଲା ଖଣ୍ଡା ଟେକି, ଶତ୍ରୁର ହେଲା ପୂଜା—କାସ୍ତିକ । "ବାଇଦ ବାଜିଲା, ପାଇକ ସାଜିଲା" ସଇନା ଚାଲିଲେ, ପ୍ୟାରେଡ଼ ହେଲା, ହତିଆର ହେଲା ପୂଜା । ରୁମ ଟାଙ୍କର ଉଠେ, ନୀରସ ହାଡ଼ୁଆ ଛାତିରେ ଆସେ ବଳ, ଶୁଖିଲା ହାତରେ ଯାବ ପଡ଼େ, ଜାଠ ଚହଲେ । ତା ପରେ କେତେ କାଳ ଯାଇଛି, ଆଜିକାର ମୁରୁଚାଖିଆ ଖଣ୍ଡା ଖାଉଛି କଦଳୀ ଗଛ, ଗଡ଼-ଗଡ଼ଢଆ ପାଇକେ ଚାଲିଛନ୍ତି କସିନ୍ଧ୍ୟା କଟକର ଦରବାନ ଦଳ ପରି । ସେଇ ବାଇଦ ବାଜୁଛି,—ବେସୁରା, ଢୋଲ ଫଟା ! ଜାଠ କାନ୍ଦେ, କାହିଁକି ?

ଯୁଗ ବଦଳିଛି; ଭଲ କି ଖରାପ, କିଏ କହିବ ? ସେ ଦିନ ଦୁର୍ଗା ହାତରେ ଥିଲା ଖଣ୍ଡା, ତା ପରେ କାପାଳିକ ଦେଖିଲା ଖଣ୍ଡାଖର୍ପରଧାରୀ ଦୁର୍ଗା ପରିବର୍ତ୍ତେ ବଂଶୀଫୁଙ୍କା ବାଙ୍କଚୂଳିଆ ଗଉଡ଼ ଟୋକା; ତାପରେ ଜାତି ଦିନେ ଦେଖିବ, ପାନଖିଲିପକା ଚରୁଣୀଆରଶିଧାରୀ ଦେବତା କିଏ କହିବ ?

କିନ୍ତୁ ଠାକୁର ଠିକ୍ ରହିଛନ୍ତି । ଯାହା ହେଉ, ଗୋଟାଏ ଠାକୁର ଦରକାର । ସ୍ୱାଧୀନ ମଣିଷ ଜାତି, ଏଇ ଦୁନିଆର ଜନ୍ତୁ, ଜନ୍ତୁ ପରି ଉନ୍ମତ୍ତ ଜନ୍ତୁ ପରି ପରାଧୀନତା ପ୍ରତି ଅସହିଷ୍ଣୁ । ସେ ଦିନେ ଜାଣି ଶୁଣି ଗୋଟାଏ ଠାକୁର ପୂଜିଲା କାହିଁକି ? ବଡ଼ ଜଟିଳ ପ୍ରଶ୍ନ ! ସଭ୍ୟତାର ଆଲୁଅରେ ଯେପରି ଦାନ୍ତନଖ ପରିବର୍ତ୍ତେ ହେଲା ବାଡ଼ି ବାଡ଼ିର ଲଢ଼େଇ, ଖଣ୍ଡାର ଝଣ୍ଡାର, କଲମର କଲମର, ଇଚ୍ଛାର ଇଚ୍ଛାର । ବାଘ ହେଲା ସର୍କସର ପୋଷା ଜନ୍ତୁ, କୁକୁର ଚାଟିଲା ଗୋଡ଼ । ମଣିଷ ହୁଏତ କାଳକ୍ରମେ ଜଣକୁ ଆଦରିଲା । ଆଦରିଲା କାହିଁକି ?

ପୁରାତନ ଠାକୁର ଦେବତା ମଣିଷକୁ ଡରେଇ ହରେଇ ଆସିଲେ କହିଲେ ତ ସବୁ ହେଲା ନାହିଁ । ଡଗର ଦଉଡ଼ ଜନ୍ତୁବୁଦ୍ଧିରେ ବହୁତ ବାଟ; କିନ୍ତୁ ସଭ୍ୟ ମଣିଷ କଥାରେ ବେଶୀ ନୁହେଁ । ଥରେ ମଣିଷ ଯେଦିନ ଛୁଛୁ ବରଷାରେ କମ୍ପୁଥିଲା, ତା କୋରଡ଼ରେ ପଶୁଥିଲା ପାଣି । ଅତି ବିକଳରେ "କୋପେ ବର" ଗୀତରେ ଦେବତାକୁ ଦେଉଥିଲା ସେ ପୂଜା । ପବନରେ ଗଛ ଯେତେବେଳେ ମଡ଼ମଡ଼, ମଣିଷ ଭାବିଲା, ପବନ ଦେବତାଙ୍କୁ ଖୁସି କଲେ ସେ ବଞ୍ଚିବ । କାହିଁ ସେଦିନ ତ ଏତେ ବଡ଼ ତୋଫାନ ଓଡ଼ିଶା ଗାଁରେ ଏତେ ଗଛବଗୁଲୁବାଙ୍କ ମୁଣ୍ଡପାତ କରି ଚାଲିଗଲା, କେହି ତ କୁକୁଡ଼ା ବଳି ଯାଚିଲେ ନାହିଁ !

କିନ୍ତୁ ଭୟ ନିଶ୍ଚୟ ଗୋଟାଏ କାରଣ ଠାକୁର ପୂଜାର । ନ କଲେ ଅମୁକ ହେବ, ଏତେ ଅଡ଼ୁଆରେ କିଏ ପଶେ ? ପୂଜାଟି କରିଦେଲେ କାମ ସରିଲା । ପଶୁ ମନରେ ଭୟର ପ୍ରଭାବ ବଡ଼ ବେଶି । କାଳକ୍ରମେ ଦେବତା ଉପରେ ସବୁ ଟାଳି ଦେଇ ଭାରତ ଘୁଙ୍ଗୁଡ଼ି ମାରିଲା । ଦେବତାଙ୍କ ଲାଗି ଫୁଲକିଆରି ଫୁଲ ଉଜୁଡ଼ିଲା । ଅକାଳରେ କଦଳୀ ବାରିରୁ ନିପାତ ହେଲା କଦଳୀ । ଅସମୟରେ ଗରିବ ଲୋକ ପୂଜାବିଧିରେ ସବୁ ସାରିଲା । ପଥର ଢଙ୍କିଲା ସିନ୍ଦୂରରେ ଚକ୍ଚକ୍ । କାଠ ନାଇଲା ଚନ୍ଦନ, କୁଙ୍କୁମ, ତା ପରେ ଦେବତା ବି ଘୁଙ୍ଗୁଡ଼ି ମାରିଲେ । ଭାରତ ଗଡ଼ିମଲା ।

ବହୁରୂପୀ ଦେବତାର ଏ ମୋଟେ ଗୋଟାଏ ରୂପ, ପଶୁଭାବର ।

ତଥାପି ଏତକ ପରାଧୀନତାରୁ ମିଳୁଛି ସ୍ୱାଧୀନତାର ସ୍ୱାଦ । ମଣିଷ ମାଡ଼ ଖାଇ ବୁଝିଲା, ମେଘ ତୋଫାନ, ଝଡ଼ ବରଷା, ପର୍ବତ ଜଙ୍ଗଲ ତାଠାରୁ ବଡ଼ । ବୁଝିଲା, ଆହୁରି ବୁଝିଲା—ଚାରିପାଖର ପ୍ରକୃତି ଭିତରେ ଅଛି ଜୀବନ । ପାଣି ପାଣି ନୁହେଁ, ସୂର୍ଯ୍ୟ ସୂର୍ଯ୍ୟ ନୁହେଁ, ସେମାନେ ବି ଗୋଟିଏ ଗୋଟିଏ ଜନ୍ତୁ । ତାଠୁଁ ବେଶୀ ବଳୁଆ; କିନ୍ତୁ ପ୍ରାଣବନ୍ତ ।

ସେ ପ୍ରାଣ କିଅଣ ଖାଲି ପ୍ରକାଶ ପାଏ ଡର ଭୟ ଭିତରେ ?

ମଣିଷ ଯେଉଁ ଧନ ବୁଝିଲା, ପବନ କଥା କହୁଛି, ବରଷା ମାଗୁଛି ବଳି, ସୂର୍ଯ୍ୟ ଖୋଜୁଛି ମନ୍ଦିର, କି ଧନ ସେ ନ ହୋଇଥିବ ! ମଣିଷର ଅନୁଭୂତି-ରାଇଜରେ ସେ ଯେ ଗୋଟାଏ ବିରାଟ ଆବିଷ୍କାର ! ଉତ୍ତର ମେରୁ ଆବିଷ୍କାର ତା ପାଖରେ ପିଲାଖେଳ ପରି । ହେଡ଼ାଗିଆ ଜାହାଜ ଆବିଷ୍କାର ତା ପାଖରେ ଅତି ତୁଚ୍ଛ । ଆମେରିକା ଆବିଷ୍କାର ଅପାଙ୍‌କ୍ତେୟ । ସେ ଗୋଟାଏ ଧନ !

ତା ପରେ ମଣିଷ ବାଡ଼ ପକେଇ ଚାଲିଛି, ଗୋଟାକ ପରେ ଗୋଟାଏ । ସେ ପିଲାଳିଆ ଉଲ୍ଲାସ ଗଲାଣି ଉଭେଇ, କେବେ କେବେ ଯାହା ଉଙ୍କିମାରେ ।

କେଡ଼େ ସୁନ୍ଦର ! ମଣିଷଠୁ ବଳି ସୁନ୍ଦର, ଯୁବତୀର ଯରମ ମିଶା ଅଧଓଢ଼ଣା ରଙ୍ଗା ମୁହଁଠୁ ସୁନ୍ଦର ସକାଳର ରଜୋସୂର୍ଯ୍ୟର ମନମତାଣିଆ ଚାହାଣି; ପ୍ରେୟସୀର କଳାବେଣୀଠୁ ସୁନ୍ଦର ବକ-ସାରସ-ବନ୍ଦୁମିଶା ଦୂର ଯମୁନାର କଳବେଣୀ ! ବନ୍ଧା ବାଡ଼କୁ ଡେଇଁ ମଣିଷ ଚାଲିଗଲା । ଚେତନା ଉପରେ ଆସିଲା ଯେପରି ଗୋଟାଏ Super consciousness । ପୁଅଟି ନାଁ ରଖିଲା ସୂର୍ଯ୍ୟ, ଝିଅ ନାଁଟି ଦେଲା ଯମୁନା । ମଣିଷ ଆଁ କରି ଦେଖିଲା, ନଈକୂଳର ପଥିକଟି ପରି ଆଁ କରି । ମଣିଷର ସେ ଉଲ୍ଲାସ ଦେଖିବାକୁ ମନ ହୁଏ । କିଅ[illegible] ସେ କଲା । ତାପରେ ସୁନ୍ଦରର ପୂଜା । ଶିଳ୍ପୀ ମନ ଖୋଜିଲା ସାକାର [illegible] ନିରାକାରକୁ ପୂଜିବାକୁ । ଦେବତାକୁ ଡର ବୁଦ୍ଧି ଦେଲା ବଳି । ଦେବତା[illegible] ଭଲ ପାଇ ତରୁଣୀ ରଚିଲା ହାର—ଡରହର ନୁହେଁ; ଭଲ ପାଇ । ସୁନ୍ଦର, ସବୁ ସୁନ୍ଦର, ଆଉ ସୁନ୍ଦରର ଠୂଳ ଦେବତା ସବୁ ସୁନ୍ଦରମା ଉପରେ । ଉଜାଡ଼ି ଦିଅ ସଉକ ଫୁଲ ବଗିଚାର ଫୁଲ, କଦଳୀ ବାଗର କଦଳୀ, ହାତଗଢ଼ା ସବୁ ଫୁଲ ଫଳ । ଶଙ୍ଖ ଫୁଙ୍କ, ଦେବତାଙ୍କ ପୂଜା ହେଉ ।

ଖାଲି ଡର ଆଉ ସ୍ନେହ ମିଶା ଦେବତା ହେଲେ ନଷ୍ଟ ହୁଏ ଯିବ; ଏତେ ଜଟିଳ ହେବନାହିଁ । ପଥିକ ଆଜ ଦେଖୁଛି—ସେ ପାରରେ ନେଳୀ ପାହାଡ଼;

ନାଲି ଦେଖିବ, ସେ ପାଖରେ ନାଲି ସଡ଼କ । ଯାହା କିଛି ରହିଲା ଅଛନ୍ଦା ଅମଡ଼ା, ତାର ଉପରେ ମଣିଷର ଦେବତା । ଥରେ ହାତମୁଠାରେ ପାଇଲେ ମୋହ ତୁଟିଯାଏ । ଯେ ପର୍ଯ୍ୟନ୍ତ ପାଖେ ପାଖେ ଥାଇ ଦୂରକୁ ଦୂରକୁ ଘୁଞ୍ଚି ଯାଉଥାଏ, ସେତେ ଦିନ ଦେବତା, ସେତେଦିନ ପୂଜିବାକୁ ମନ ବଳୁଥାଏ । ତେଣୁ ଠାକୁର ସବୁଦିନେ ଅଛୁଣ୍ଡା ।

ଯେତେ ଦିନ ପର୍ଯ୍ୟନ୍ତ ଜଣାଥିଲା, ଭିନ୍ନ ଭିନ୍ନ ରୋଗ ଗୋଟିଏ ଗୋଟିଏ ଶତ୍ରୁ, ଲୋକେ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ପଣା ଢାଳୁଥିଲେ । ରୋଗର ଔଷଧ ହେଲା, ବାଡ଼ ଠାକୁରାଣୀଙ୍କର ପଣା ମାଟି ହେଲା । ମେଘଠୁଁ ରକ୍ଷା ମିଳିଲା କୋଠାଘର ତଳେ, ଛତା ତଳେ, ବର୍ଷାତି ତଳେ । ନାଳର ଆଶ୍ରୟରେ ମେଘର ପୂଜା ଡରିହର ନ ହୋଇ ଯେ ଇଚ୍ଛା କଲେ ଖୁସିରେ ଭଲ ପାଇ କଲେ ।

କିନ୍ତୁ ଦେବତା ତୁଟିଲେ ନାହିଁ । ଆହୁରି ଅନେକ ବାକି । ଶେଷ ବାକି ମରଣ । ମରଣକୁ ଜିଣିଲେ ପ୍ରକୃତ ଠାକୁର ପୂଜା ହେବ, କାରଣ ପୂଜାରୁ ଆଦିମ ପଶୁ ପ୍ରବୃତ୍ତିର ଯେଉଁ "ଭୟ" ଭାବ ରହି ଆସିଛି, ସେ ଉଭେଇ ଯିବ । ମଣିଷ ଖୁସି ହେଲେ ପୂଜା କରିବ, ନ ହେଲେ ନାହିଁ । ଖାଲି ମରଣ ମଧ୍ୟ ନୁହେଁ; ମଣିଷ ଯେଉଁଦିନ ଯାହା ଇଚ୍ଛା କରିବ, ତା କରିପାରିବ । ସେଦିନ ଡରର ଠାକୁର ବୁଜୁଲି ବାନ୍ଧି ଖସିବେ; ସ୍ନେହର ଠାକୁର, ହୃଦୟର ଠାକୁର ଆସିବେ; ମଣିଷ ଠାକୁରକୁ ନିଜର ଦରକାର ଲାଗି ପୂଜିବ ନାହିଁ, ପୂଜିବ ମନ ଖୁସିରେ, ପୂଜିବ ଭଲ ପାଇ ।

ମଣିଷକୁ ଗଢ଼ିଲା ବେଳେ ଭଗବାନ ଦେଲେ ତାକୁ ଅଛୁଣ୍ଡାର ଗୋଟାଏ ଗୁଣ । ହୁଏତ ଏଇ ଗୁଣ ପାଇଁ ମଣିଷ ଭଗବାନଙ୍କର ଏତେ ନିକଟ । ଆଶାର ସୀମା ନାହିଁ, ଚେଷ୍ଟାର ଯତି ନାହିଁ, କାହିଁକି ? ବାବାଜି କହିବେ, 'ତୃଷ୍ଣା'— ତୃଷ୍ଣିକା ତରୁଣାୟତେ' ଅତି ଖରାପ ! ମଣିଷର କଳଙ୍କ ! ଷାଠିଏ ବର୍ଷର ବୁଢ଼ା, ଗୋଟାଏ ଗୋଡ଼ ସେ ପାରିରେ; ତଥାପି ଲୋଭ ତାର ତୁଟି ନାହିଁ, ନଇଁପଡ଼ି କଣ୍ଡି ଆରୁ ସୋରିଷ ତୋଳୁଛି ।

କିନ୍ତୁ ଏଇ ତୃଷ୍ଣା ମଣିଷ ଜାତିକୁ ଜୀଅନ୍ତା କରି ରଖିଛି । ମାୟା ତୁଟିଲେ ସବୁ ସରିଲା, ତୃଷ୍ଣା ନିଭିଲେ ଆଲୁଅ ନିଭିଲା । ପରିଶ୍ରମ, ଉଦ୍ଦେଶ୍ୟ ପାଇଁ ଅଣ୍ଟାଭିଡ଼ା, ଏଇ ତ ବାହାଦୁରି । ଯେଉଁ ବୁଢ଼ା ଆଖି ବୁଜିଲା ବେଳକୁ ହିସାବପତ୍ରର ସନ୍ଧାନ ନିଏ, ଘର ବୁଝେ, ରୋଜଗାରର ଉପାୟ ଚିନ୍ତା କରେ, ସନ୍ୟାସୀ ହେଲେ ବି ସେଇ ବାସ୍ତବିକ ବଞ୍ଚିଛି । ହାତରୁ କଲମ ଖସି ନାହିଁ, ଶିଳ୍ପୀ ମରି ସ୍ରଷ୍ଟା ବଞ୍ଚିଛି ।

ସେ ପାଣ୍ତର ଧରଣୀରେ ହୁଏତ କଲମ ହାତରେ ଧରି ଶିଳ୍ପୀ ବସିଛ । ବିଶ୍ରାମ ଅର୍ଥ ମରଣ । ଆଗ ମାଡ଼ି ଚାଲିବାକୁ ହବ, ଝଡ଼ତୋଫାନ ପଛ୍ରେ, ନଈ ପରି । କାମ ନିଜେ ହିଁ ଶାନ୍ତି ।

ଏ କଥା ସେ ବୁଝେ, ତେଣୁ ଆଗ ମାଡ଼ି ଚାଲେ । ବୁଝି ନ ବୁଝିବାକୁ ଉପାୟ ନାହିଁ । ସେଇ ଗୋଟାଏ ଭୁହାଟ ସେ ଶୁଣେ—

"ଚେ-ଏ-ଏ-ତ !"

ତେଣୁ ଆଜିକାର ପଖାଳ କାଲିକୁ ଲାଗେ ବାସି; ଆଜିକାର ଘର କାଲି ଲାଗେ ଗୋଟିଏ ଖୁଣ୍ଟି । ମାଟି ବଢ଼େ, ବଢ଼େ । ଜଙ୍ଗଲ ହୁଏ ସହର; ପୁଣି ସହର ଭଙ୍ଗା ହୁଏ । ଭଙ୍ଗାଗଢ଼ା ଉଭୟ ନ ରହିଲେ ମଜା କେଉଁଠି ?

ସେହି କାରଣରୁ ଦିନୁ ଦିନ ଠାକୁର ବଦଳୁଛି । ସବୁ ତ ଚକର ଭଉଁରି ଖେଳ । ଠିଆ ହେବାକୁ, ବସି ରହିବାକୁ, କୌଣସି ଜିନିଷକୁ ସୀମା ବୋଲି ମାନି ନେବାକୁ ଆଦୌ ଛୁଟିନାହିଁ । ନୂଆ ଆଦର୍ଶ ଆସେ, ଶିଳ୍ପୀ ଗଢ଼ି ଚାଲେ ।

ମଣିଷ ଦେବତାକୁ ପାଇଲା ଅଛୁଆଁ ଆଦର୍ଶର ସେ ପାଖରେ । ଯେତେ ବୋଝ ମାଟି ସେ ମୁଣ୍ଡେଇଛି, ଯେତକ ବୋଝକୁ ତାର ଯୁ ପାଇବ, ତା'ଠୁ ଆହୁରି ବେଶୀ ତାର ଇଚ୍ଛା । ସେ ବଳୁଆ ହବ, ପାହାଡ଼ ଉପାଡ଼ିବ, ସେଇ ଆଡ଼କୁ ସେ ଝୁଙ୍କି ଚାଲେ । ବଳ—ଆଦର୍ଶର ଦେବତା ଗଢ଼େ—"ରାମ", "ହନୁମାନ", "ବଳଦେବ" । ସେଇ ବଳରେ ସେ କୀଚକକୁ ମାରିବ, ଗନ୍ଧମାଦନ ପାହାଡ଼ ଆଣି ଉଡ଼ିବ, ପୃଥିବୀକୁ ଟେକିବ ଲଙ୍ଗଳ ଆଗରେ । ରୂପର ଦେବତା ତାର କନ୍ଦର୍ପ, ବିଦ୍ୟାର ଦେବତା ସରସ୍ୱତୀ, ଶକ୍ତିର ଦେବତା ଦୁର୍ଗା ।

ସେ କଅଣ କୌଣସି ଠାକୁରକୁ ଭଜି ପାରିଛି ? ଯେଉଁଦିନ ଭଜିବ, ସେ ଦିନ ସେ ଠାକୁରକୁ ଫିଙ୍ଗିବ ଖିଙ୍କିଶାଳରେ, ଆହୁରି ଗୋଟିଏ ଠାକୁର ରଖିବ ଅସ୍ଥାନରେ—ଯେ ତା'ଠୁ ଆହୁରି ଚୌଦପା ଉଞ୍ଚ । ନଈ ସେ ପାଖର ନେଳି ପାହାଡ଼ର ରେଖା ଉଭେଇ ଗଲା; ତା ପରେ ସେ...ନାଲି ସଡ଼କ ।

ଠାକୁର କଳ୍ପନାରେ ତିଆରି, ଏ କଥା ଖୁବ୍ ସତ; କିନ୍ତୁ ଯେ କହେ ଠାକୁର ମିଛ, କାହିଁକି ନା କଳ୍ପନାର absolute ନାହିଁ, ଅତଏବ ଠାକୁରର ପ୍ରତି ଅଣୁ, ପ୍ରତି ପରମାଣୁ ଖାଲି ମିଛ, ଉଚ୍ଛା ମିଛ, ସେ ମୂର୍ଖ । କାରଣ ସେ ନିଜେ ନିଜକୁ ଅସ୍ୱୀକାର କରୁଛି, ନିଜେ ନିଜର ଗୋଡ଼ରେ କୁରାଢ଼ି ମାରୁଛି । କଳ୍ପନା

କେବେ ମିଛ ହୋଇପାରେ ? କଳ୍ପନା ଅନ୍ଧାରରେ ଆଲୁଅ, ନଈ ସେ ପାଣିର ଉଦ୍‌ବଳସ୍ୱ । କଳ୍ପନା ଆଦର୍ଶ ଗଢ଼େ, ଯାହାର ଆଡ଼କୁ ପ୍ରତି ମଣିଷ ପ୍ରତି ମୁହୂର୍ତ୍ତରେ ଆଗେଇ ଚାଲିଛି । କଳ୍ପନା ମଣିଷର ମନଗଢ଼ା, ଏ କଥା ସୁଦ୍ଧା ମିଛ । କଳ୍ପନା ଶୁଭ ମୁହୂର୍ତ୍ତରେ ଗୋଟିଏ ଦିବ୍ୟ ଦୃଷ୍ଟି (revelation) । ଗୋଟାଏ ଦୁଆର ଖୋଲେ, କବାଟ ସେ ପାଖେ ଦିଅ ( latent possibilities ) । ଏମିତି ଲକ୍ଷ ଲକ୍ଷ କୋଟି କୋଟି ପଡ଼ିଛି, ଗୋଟାଏ ତହିଁରୁ ଦିଶିଲା ।

ମିଛ ସତର ପ୍ରମାଦ ଏଥିରେ ନାହିଁ । କିଛି ମିଛ ନୁହେଁ, କିଛି ସତ ନୁହେଁ । ଦେଖିବା ଉପାୟ, ଦେଖିବା ଧରଣ ଉପରେ ସବୁ ନିର୍ଭର କରିଥାଏ । ତେଣୁ କଳ୍ପନା ସତ । ନଈ କଣ୍ଠିଆରେ ଅନ୍ଧାର ରାତିରେ ଚର୍ଗୁଣୀ ଆଲୁଅ ସତ; ଏକୁଟିଆ ପଥିକ ଆଗରେ ଦୂରର ଆଲୁଅଟି ସତ । ଜଣେ ଲୋକଠୁଁ ଆଉ ଜଣେ ଲୋକର consciousness ବଦଳି ଥାଏ, ଏତିକି ଯାହା । କାହାର ଅନୁଭୂତି ଆଉ କେହି ବୁଝି ନ ପାରେ; କିନ୍ତୁ ମିଛ ବୋଲି କହିବା ମୂର୍ଖତା ।

ସେଇ ଆଦର୍ଶ ଲାଗି ମଣିଷ ନିଜକୁ ନିଜେ ପୂଜା କରେ; ତାଠୁ ବଳି ପୁଣ୍ୟ ଆଉ କଅଣ ଅଛି ? ଚଳନ୍ତି ଶଗଡ଼ ନିଜକୁ ନିଜେ ପୂଜା କରେ, କୈଁକଟର କରି ମନ୍ତ୍ର ପଢ଼େ । କହେ—"ହାଁ ଭାଇ—ଆଗକୁ—ହେଇଁଓ—ହାଁ ଆଗକୁ ।" ଚାଲିଥାଉ ।

କିନ୍ତୁ ସେଥିପାଇଁ ତାର ପୂଜା ଏତେ ଶ୍ରେଷ୍ଠ ନୁହେଁ । ଶଗଡ଼ ଯେ ଟାଣୁଛି, ତାକୁ ଆମର ଦେଖିବା ଦରକାର ନାହିଁ, ତାର ବେଗ ନିଜ ଭିତରେ ନିଜେ ବୁଝିପାରିବା ସୁଦ୍ଧା ଅସମ୍ଭବ ନ ହେଲେ ବି କଷ୍ଟ । ଖାଲି—"ମାଡ଼ି ଚାଲୁ ।" ଚାଲିବା ହିଁ ସଭ୍ୟତା, ଚାଲିବା ହିଁ ସୁଖ ଜୀବନର ଧର୍ମ ।

ନିଜର ଆଦର୍ଶ ନିଜେ ପୂଜିବ । ସେଥିରେ ବିଚିତ୍ରତା କଅଣ ଅଛି ? ନିଜର ଘର ନିଜେ ଓଳାଇବ, ନିଜର ପାଠ ନିଜେ ପଢ଼ିବ, ନିଜର ଇଚ୍ଛା ନିଜେ ଠିକ୍ କରି ସେ ଉଦ୍ଦେଶ୍ୟକୁ ଧରି ଆଗକୁ ଗଡ଼ି ଚାଲିବ । ସବୁ ଅଭିପ୍ରାୟର ଅସୀମ ଆଡ଼କୁ; ମରୁ ବା ବଞ୍ଚୁ; ସେଥିରେ କ୍ଷତି ନାହିଁ । ସେଇ ତ ଅସଲ ପୂଜା । ମଣିଷ ନିଜ ଛଡ଼ା ଆଉ କାହାକୁ ଏ ସଂସାରରେ ଦେଖେ ? ନିଜର ଆଖି, ନିଜର Sense, ନିଜର ମନ; ସେଇ ତ ତାର ସରଞ୍ଜାମ । ସାରା ଜୀବନ ମଣିଷ ନିଜ ସାଙ୍ଗେ ଲୁଚକାଳି ଖେଳେ, ନିଜ ସାଙ୍ଗେ କଥା କହେ, ଏ ନିଜ ବାହାରକୁ ଚାଲିଗଲେ ତାର ସଂସାର ସରିଲା । ହସକାନ୍ଦର ସବୁ "ମୁଁ", ତେଣୁ ଏ ପୂଜା

ସାର୍ଥକ । ଏପରି (Pagan) ଆଦର୍ଶ ସମସ୍ତେ ମାନନ୍ତି ନାହିଁ କହିଲେ ଠିକ୍ ହେବ ନାହିଁ । କାହା ମନ 'ଆହୁରି-ଆହୁରି—' ଲାଗି ହାଲିଆ ନ ହୁଏ ? କେହି ଆଦର୍ଶକୁ ସାକାର ରୂପେ ପାଇବାକୁ ଭଲ ପାଏ, କିଏ ବା ଖାଲି ଆକାଶକୁ ଅନାଏ । ପୂଜାଟା ତ ହେଲା ଠାକୁରଙ୍କ ଅସୀମ ସ୍ୱରୂପ ଲାଗି । ସେଇଟାକୁ ସବୁବେଳେ ମନ ଆଗରେ ରଖିବାକୁ ମୂର୍ତ୍ତି ହେଉ, ସେ ତ ବରଂ ଭଲ । ଏଣେତେଣେ ନ ଘୂରି ଏତେ ଅସୀମ ଠାକୁରଙ୍କ ଭିତରେ ଗୋଳମାଳ ଗୋଳଘାଣ୍ଟ କରି ସୀମାଦିଆ ସାକାର ଠାକୁରଙ୍କୁ ସଙ୍କେତ ପରି ରଖିଲେ ଖୁବ୍ ଭଲ ତ । ଆମର ମୂର୍ତ୍ତି ଖାଲି ସ୍ମାରକ ନୁହନ୍ତି, ଆମର ମୂର୍ତ୍ତି ବୈଜ୍ଞାନିକର ସୂତ୍ର (Formula) ।

ବଙ୍କିମବାବୁ ଠିକ୍ କହୁଛନ୍ତି, "ହରିସ୍ମାର ବାବା, ସେ ଲୋକକୁ, ଯାହାର ଠାକୁର ଥାଆନ୍ତି ଶୂନ୍ୟରେ !" ଠାକୁର ତ ଆମରି ଭିତରେ । ଯାହା ଠାକୁର ଶୂନ୍ୟରେ, ତାର କିଛି ଠିକ୍ ନାହିଁ, ତାର କୌଣସି ଗତି ନାହିଁ, ମିଞ୍ଜାସ ବିଗିଡ଼ା ।

ବରଂ Pagan classisin ଭିତରେ ଗୋଟାଏ ଚୁନିଆଁ ଢଙ୍ଗ ମିଳେ, ଯାହା ଅନ୍ୟଠି ନ ଥାଏ । ତାର ହଟଚମକ, ତାର Sublimity ନଥାଏ ।

ସାକାର ପ୍ରତିମା ଲାଗେ ଯେପରି ଅତି ପରିଚିତ ନିଜ ମଣିଷଟି ପରି । ମଣିଷ ଭୁଲ କରେ, କରୁ; ଭୁଲ ବୁଝେ ବୁଝୁ; ପ୍ରତିମାକୁ ଲୁଗା ପିନ୍ଧାଏ, ଚନ୍ଦନ ମଖାଏ, ସଙ୍କେତଟି, ସୂତ୍ରଟି ଛୁଟ ଧରି ବସେ ଗାଡ଼ି ଅଗରେ; ସଂସାର ଗଡ଼ି ଚାଲେ । ନିଜକୁ ନିଜେ ଏକାଠି ଠୁଳ କରିଛୁ, ନିଜକୁ ଚହ୍ନିବାକୁ ଭୁଲ ଭିତରେ ଭୁଲକୁ ଧରା ଦେଇ ସତକୁ ଆଦରିଛୁ । ଖୁସିବାସିଆ ଲୋକ ପାଇଁ ଏଇ ଖୁବ୍ ଭଲ ।

ପ୍ରତିମା ହସେ, ପ୍ରତିମା ଗୋଳ କରେ—ଭକ୍ତ ସବୁ ଦେଖେ । ଭକ୍ତ ପୂଜା କରେ, ପ୍ରତିମା ପୂଜା ଘେନେ । ଠାକୁର Evolutionର ଏ ଦ୍ୱିତୀୟ ସ୍ତର । ଯେଉଁ ବଶିଷ୍ଟ ସଙ୍କେତ ଏ ଠାକୁରଠି ଥିଲା, ଭକ୍ତ ତାକୁ ପାସୋରିଛୁ । ସେ ବିଶେଷ ଗୁଣ, ବିଶେଷ ଆଦର୍ଶ ପରିବର୍ତ୍ତିରେ ଭକ୍ତ ଦେଖୁଛୁ, ସବୁ ଗୁଣମିଶା ଗୋଟିଏ ଠାକୁର, ଠିକ୍ ମଣିଷ ପରି । ପୂଜା ହେଲାଣି ଶ୍ରେଷ୍ଠ, ସ୍ନେହ ସମ୍ମାନମିଶା ମାୟା ହେଲାଣି ଅସଲ, ବୃଦ୍ଧ ମୂର୍ତ୍ତି ପାଲଟିଲାଣି ଦୁର୍ଗା ମୂର୍ତ୍ତି, ଅହିଂସା ପରିବର୍ତ୍ତିରେ ନିର୍ଦ୍ଦୋଷ ପଶୁ ରକ୍ତରେ ସ୍ନାନ କଲାଣି । କେହି ପଚାରେ ନାହିଁ, 'ଦୁର୍ଗା'ର ସଙ୍କେତ

କଣ, ହନୁମାନ ଙ୍କ ଆଦର୍ଶର ଠୁଲ ବଡ଼ଛ ? ପରୀକ୍ଷା ଦିନ ପାଖ ହେଲେ ଛାତ୍ରଛାତ୍ରୀ ହନୁମାନଙ୍କ ସିନ୍ଦୁର ଲଗାନ୍ତି, ଭକ୍ତର ଆତ୍ମଶରଣ୍ୟରେ ଖେଳ ସମସ୍ତ କଣ୍ଟାନ୍ତ ପୂଜା ଅର୍ଚ୍ଚନାରେ । ପୁଣି ମାମଲାବାଜ ମାନସିକ କରେ, ମକଦ୍ଦମାରେ କେମିତି ଜିତିବ । ଠିକ୍ ମାନସିକ କରେ, "ଏ ଠକେଇ ମାଲ ଗୁଡ଼ାକ କେମିତି ସୁରୁଖୁରୁରେ କଟିଗଲେ—"

ଏ ପ୍ରକାର ଠାକୁରଙ୍କର ଉଦ୍ଦେଶ୍ୟ ବଦଳିଲାଣି । ଠାକୁର ଆଦର୍ଶରୁ ପାଲଟିଲେଣି ଆଶ୍ରୟକୁ । ଏଠି ମଣିଷ ନିଜକୁ ପୂଜୁ ନାହିଁ—ନିଜର ଇଚ୍ଛାକୁ ଆଦର ପୂଜୁଛି ଉଡ଼ା ଆକାଶକୁ, ପୂଜୁଛି ଗୋଟାଏ ଆଶ୍ରୟକୁ ।

ଆଶ୍ରୟର ପୂଜା ପୂଜା ଏତେ ହେଉ ନୁହେଁ । ଯେପର୍ଯ୍ୟନ୍ତ ପାରେ ସେପର୍ଯ୍ୟନ୍ତ ଲୋକ ଲଢ଼େ, ତାପରେ ଖୋଜେ ଗୋଟାଏ ଆଶ୍ରୟ । ଏ ଆଶ୍ରୟ ଆଦରବା ଭିତରେ ଲୁଚି ଅଛି ଆଦର୍ଶର ପୂଜା । ରୋଗରେ ମଣିଷ ଭଗବାନଙ୍କୁ ସ୍ମରଣ କରେ । କାହିଁକି ନା, ସୁସ୍ଥ ଥିବାଯାକେ ଆଶ୍ରୟ ସେ ଲୋଡ଼େ ନାହିଁ ।

ରୋଗରେ, ଦୁଃଖରେ ସେ ଜଣକର ସାହାଯ୍ୟ ଲୋଡ଼େ । କାହାରିକୁ ନ ପାଇ ସେ ଭାବେ—"ତେବେ କଅଣ କେହି ନାହିଁ ? କାଲେ କିଏ ଥିବ, ମୋର ଅଜଣା ଅଶୁଣା, କାଲେ ମୋତେ ଉଧାରିବାକୁ ଆସିବ କାହାର ଅଦେଖା ହାତ, କାଲେ— ।" 'ଏଇ କାଲେ—' ଉପରେ ତାର ଆଶ୍ରୟର ପରିକଳ୍ପନା, ଆଶା ଉଚ୍ଛ୍ୱାସରେ ଗଢ଼ିଆରି ତାର ଏ ଭଗବାନ, ଶିଳ୍ପୀ ମନର କଳ୍ପନାରେ । ଅଯାଚିତରୁ କବିତା ବାହାରେ, ସ୍ୱପ୍ନର ରାଇଜ ରଚି ବୁଲେ, ତାରି ଭିତରେ ଦେବତା ।

ମଣିଷର ଆଶା ଉଚ୍ଛ୍ୱାସ, ଆଦର୍ଶ ସ୍ୱପ୍ନଗୁଡ଼ା ଅସମାପିକାର ମାଳାରେ; ତେଣୁ ଭଗବାନ ଚିରଦିନ ରହିବେ, ଖୋଲ ନାଁ ବଦଳୁଥିବ । ଆଦର୍ଶ ତ ଯୁଗକୁ ଯୁଗ ଚହଲେ । ଆଶ୍ରୟ ସେ ସବୁଦିନେ ଖୋଜୁଥିବ, ସବୁଦିନେ ଗଢ଼ୁଥିବ, ଏ ମୁଣ୍ଡବୁଲା ଚକ ଉପରୁ ଖସି ଗୋଟିଏ କେଉଁଠି ସ୍ଥିର ହୋଇ ବସି ଘଡ଼ିଏ ଦମ୍ ନେବାକୁ; ତେଣୁ ଭଗବାନ ରହିଥିବେ ।

"ନୀଳାଚଳେ ଜଗନ୍ନାଥ
ଯୁଗେ ଯୁଗେ ବିରାଜିତ ।"

ଠିକ୍ କଥା ! ଯେତେଦିନ ଯାକେ ଦରକାର ଥିବ, ଖାଲି ଧାରଣା ପୃଥକ୍ । ଦୁର୍ଗା ପରିବର୍ତ୍ତିରେ ଶିବ, ରାମ ପରିବର୍ତ୍ତିରେ କୃଷ୍ଣ, ନୋହିଲେ ନିରାକାର ପରିବର୍ତ୍ତିରେ ସାକାର, ଛବି ପରିବର୍ତ୍ତିରେ ମୂର୍ତ୍ତି, ନୋହିଲେ କାଠର ଠାକୁର

ପରବର୍ତ୍ତିରେ ମଣିଷର ଠାକୁର; କିନ୍ତୁ ଏ ଶେଷ କଥାଟି ସତ ନ ହୋଇ ପାରେ, କାରଣ ଠାକୁର ଯେ ହେବ, ସେ ସବୁ ସୀମାର ସେପାଖର; ଅତଏବ ମଣିଷ ପରବର୍ତ୍ତିରେ ରୂପ ଦେଶରେ ଯେପରି, ସେହିପରି 'ମାନବ-ଧାରଣା' ଠାକୁର ଗାଦିରେ ବସିପାରେ ।

ଯୁଗ ଦେଖୁଛି, ଆଦର୍ଶ ଆଦର୍ଶ ଭିତରେ କଳିଆ ଲାଗି କେତେ ନାଆ ବୁଡୁଛି, କେତେ ଦେଶ ଖତମ ହେଉଛି । ଭଙ୍ଗାଗଢ଼ା, ସେଠିକି ତ ବଞ୍ଚିବାର ମଜା । ଭଗ୍‌ବଲସ୍ତ ତଳେ କେତେ ସୀମା—ଘୁଞ୍ଚୁଛି; ଆଗକୁ ପଛକୁ । ଏ ଯୁଗ ଦେଖିଲି ସେ ପାଖେ ଗୋଟାଏ ନେଲିଆ ଗାର, ସେ ଯୁଗ ହୁଏତ ଦେଖିବ ନାଲିଗାର ।

ଦୁର୍ଗା ପୂଜା, ସେଦିନର ସଇନା ସେଦିନର ହତିଆର ପୂଜା—ଆଜିକାର ମୂର୍ତ୍ତି ପୂଜା । ଏଇ ମାଟିର ମୂର୍ତ୍ତି କେତେଟା ଦିନରେ ବା ପାଣିରେ ଭସା ହେବେ, ତାର ଭିତରେ ଏତେ ଚହଲ । ଗୋଟାଏ ମୂର୍ତ୍ତିରେ କେତେ ଆଦର୍ଶର ଧାରଣା । କିଏ ଖୋଜୁଛି ଶକ୍ତି, କିଏ ମନାସୁଛି ମିଠାଇ, କିଏ ଗୁହାରୁଛି ଗ୍ରହକଷ୍ଟ, କିଏ ଖୋଜୁଛି ସନ୍ତାନ ।

ଶିଳ୍ପୀ କିଛି ଖୋଜେ ନାହିଁ, ଶିଳ୍ପୀ ଖାଲି ହସେ । ଏଇ ମାଟିର ମୂର୍ତ୍ତି ତ ତାର ମନଗଢ଼ା, ତାର ମନ ଉପରେ ସେଦିନର ଅଜାଣତରେ କିଏ ଭସା ହେଲା, ତାର ସ୍ୱପ୍ନ ଭିତରେ ଅପେ ଅପେ କିଏ ବଳେ କଲା । ଶିଳ୍ପୀ ଗୁହିଁ ଦେଖିଲା— "ଦୁର୍ଗା" । ସବୁ ଦୁଆର ଖୋଲା, ଥର ଥର ବାଜି ଉଠିଲା କାହାର ଆଗମନୀ ।

ଆଉ ଆଜିକାର ସମ୍ଭାର ଭିତରେ କେତେ ସୁନ୍ଦରମା ସେ ଦେଖେ । କେତେ ମୁହଁ, ଛୋଟ, ବଡ଼, କଅଁଳ, କାଠ, ଗୋରା, କଳା, କୁଞ୍ଚୁକୁଞ୍ଚ ବାଳ, ଚନ୍ଦା ମୁଣ୍ଡ ।

ଦେଖା ଆଗରେ ସମସ୍ତେ ସୁନ୍ଦର, ଅଜଣାର ଉଲ୍ଲାସ ପଡ଼ୁଛି ମୁହଁରେ । ଆଦର୍ଶର ଅସମାପିକା ଛନ୍ଦ ବାଜୁଛି, ହୃଦୟର ଗୋପନ ତନ୍ତ୍ରୀରେ, ତେଣୁ ସୁନ୍ଦର । ସତେ କି ସେପାରର ଚେନାଏ ଛବି ଖସିଛି ଏତେ ଲୋକଙ୍କ ମୁହଁରେ, ରଙ୍ଗମିଶା ନେଳି ଆକାଶର ବକସାରସ ମିଶା ବାଙ୍କୁଲି ନଈର ସେ-ପାରର କାଶ-ପଠାର ।

ସବୁ ମୁଣ୍ଡ ନଇଁ ଆସେ, ହେଉ ପଛେ ଆଦର୍ଶ ଅଲଗା, 'ମାନସିକ' ଅଲଗା; ଆଦର୍ଶ ତ ଅଛି । ସବୁ ତ ଅଲଗା, ଦେଶକେ ଫାଙ୍କ ନଇକେ ବାଙ୍କ ।

ସେଥିରେ ଥାଏ କଣ ? ଯାହାଇଁ କାନ୍ଦେ, ଶିଳ୍ପୀ ମନର ପ୍ରତୀକ ପଣ, ଶିଳ୍ପୀ ନଇଁ-ଯାଏ, ଫୁଲର ଆସ୍ତରଣ ଫାଟି ପଡ଼େ । "ନିଜକୁ ପୂଜିବ, ଅସମାପିକା ଭୁଲରେ ।" ଉଜାଡ଼ ହଅ, ଉଜାଡ଼ ହଅ, ସଉକୀ ଫୁଲ ବଗିଚ୍ଚ ଉଜାଡ଼ ହଅ, ଜୀବନର ସମ୍ଭାର, ଦେବୀର ପୂଜା ହେଉ ।

ଶିଳ୍ପୀ ଆଖି ବୁଜେ ।

ଉଜ୍ଜ୍ୱଳ ଚକ୍ ଚକ୍ ଆଲୁଅରେ ଦେବୀର ନାଲି ଓଠ ଜୀବନ ପାଏ, ଦେବୀ ଗଳାରୁ ଖସେ ଫୁଲ ।



# ଛାଇ

ଛାଇ, ଛାଇ, ଦୁନିଆ ଗୋଟାଯାକ ଯେମିତି ଖାଲି ଛାଇ ! ନିସ୍ତାର ନାହିଁ ପଛେ କି କେଉଁଠି ! ପାହାନ୍ତ ପହରର ପକ୍ଷି ମେଲି ଯେବେ ଓହ୍ଲାଇ ଆସେ, ଶିଳ୍ପୀ ଦୁନିଆ ଆଖିରେ ଦେଖେ—କେତେ ଆଲୁଅର ଢଙ୍ଗ ବଦଳି । ସକାଳର କୁହୁଡ଼ି ପକାଏ ଛାଇ, ସବୁ ଢାଙ୍କି ରଖେ । କଅଁଳା ସୂର୍ଯ୍ୟ ଦେବଦାରୁ ବାଡ଼ ଉହାଡ଼େ ଉଙ୍କି-ମାରେ । ପୋଖରୀର ଥଳଥଳ ଥଳଥଳ ପାଣି ଉପରେ ପଡ଼େ ଲମ୍ବା ଲମ୍ବା ଛାଇ । ସେଠି ଆଲୁଅ ନାହିଁ, ଅନ୍ଧାର । ସେଠି ଜୀବନ ନାହିଁ, ଅଛି ପ୍ରତିକୃତି । ସବୁ ଗୁଡ଼ାକ ଯେମିତି କାହାର ନୂଆ ବନାଣ ! ପତ୍ରର ସାବୁଜା ରଙ୍ଗ ସେଠି ନାହିଁ, ଗଛର ଠାଣି ନାହିଁ; ରସ ନାହିଁ, କିଛି ନାହିଁ; ଖାଲି ଗୋଟାଏ ବିକୃତ ଅବୟବ—ଛାଇ !.

ନି-ତି ପଡ଼େ । ଗଛର ଛାଇ ପୋଖରୀରେ, ପାହାଡ଼ର ଛାଇ ଜଙ୍ଗଲରେ । ଅରମାର ଧଳା ନାଲି ଫୁଲଫଳ ଦିଶେ ଛାଇରେ । ନାଲି ଦିଶେ ମଉଳା; ଧଳା ଦିଶେ ଛୋଟ । ଯା ଛାଇ ତାଠି; ତା ଛାଇ ଯାଠି । ଦୁନିଆ ଗୋଟାକ ଖାଲି ଛାଇ !

କେତେ ଛାଇ ଆଖିକୁ ଦିଶୁଛି; କେତେ ଛାଇ ନ ଦିଶୁଛି । ଜାମୁ ଗଛର ଛାଇଟା ମିଶିଛି ଦେବଦାରୁ ଗଛ ଛାଇରେ । ଆଉ ସେ କିଆପତ୍ରର କଣ୍ଟାଏ କଣ୍ଟାଏ ଯେଉଁ ଛାଇ ଦିଶୁଛି, କିଏ ଜାଣେ, ସେ ଛାଇ କାହାର ?

କାହାର ଛାଇ ଜଣା ନାହିଁ; କିନ୍ତୁ ତାର କେତେ କେତେ ଯିବା ଆସିବା, ବୁଲାବୁଲି ଜୀବନସାରା !

"କାହାର ସେ ଛାୟା ଜାଣେ ନା ମୁଁ ହର
ଯାପିବି ଜୀବନ ତାରେ ଅନୁସରି ।"

ମନ ଅଣ୍ଡାଳୁଛି, ପାଉ ନାହିଁ । ଏ ସଂସାରରେ କେତେ କଥା ନ ଘଟିଛି ? କେତେ ଲୋକ, କେତେ ଗଛଲଟା ନ ଉପୁଜିଛନ୍ତି ? ନ ଉପୁଜିବେ ବା ? ସମସ୍ତେ ତ ଛାଇ ପକାଇଥିବେ; ତାର ସମଷ୍ଟି ଗଲା କାହିଁ ? ସଂସାରରେ ଯେତେ କଥା, ସବୁ ଛକାଛକି, ଜଣକୁ ଜଣେ । ଏକୁଟିଆ ନିଛାଟିଆ ହୋଇ ରହିଛି କିଏ ? ଆମ

ଆକାଶରେ ଯେମିତ ଗୋଟଏ ସୂର୍ଯ୍ୟ ତାଣ ଆଲୁଅର ତାରତମ୍ୟ ଅନୁସାରେ ସବୁର ଛାଇ । ସବୁ କରଣି, ସବୁ ସର୍ଜନ ସେପାଖେ ହୁଏତ ଯେମିତ ଗୋଟିଏ ରହିଛ ଶକ୍ତିର ସମଷ୍ଟି । ସେହି ଅନୁପାତରେ ଆମର ଛାଇ । ସେ ସୂର୍ଯ୍ୟ, କ ସେ ତାରା, କ ସେ ଚନ୍ଦ୍ର କ ସେ କେତେଜଣ ଶକ୍ତି ଉପଶକ୍ତିର କୌଣସି କୈନ୍ଦ୍ରିକ ସମଷ୍ଟି, ଏତେ କଥା ଏ ସୃଷ୍ଟିର ବାହ୍ୟ ତେଲି ଆମର ସୀମାବଧି ଆଖି ଧରିବାକୁ ନାରାଜ ନ ହେଲେ ସୁଦ୍ଧା ଅପାରଗ । କନ୍ତୁ ଯାହା ଆମେ ଦେଖୁଁ ସବୁ ଜଣକା ଜଣ ଛାଇରେ ଛକାଛକ, ଛନ୍ଦାଛନ୍ଦ । ଅଣ୍ଡାଳ ଅଣ୍ଡାଳ ମନ ଭିତରେ ଅନେକ ବସିଲେ କେଉଁଠୁ କେଉଁ ଛାଇଟା ଆସିଲା, ସେ ବଷୟ ଆମେ କେଉଁଟା ଧରି ପାରିବା ସିନା, ସବୁ ତ ନୁହେଁ ! ଏ ଯୁଗର ସାହିତ୍ୟ ଉପରେ ଅମୁକ ଜାଗାରେ ରୁଷ ଦେଶର ଛାଇ ପଡ଼ିଛି । ବେଶ୍, ଗୋଟାଏ ହେଲା ! ଅମୁକଠି ପଡ଼ିଛି ଗଲା ଭକ୍ତଯୁଗର ଛାଇ । ଭଲ, ଦୁଇଟା ହେଲା । ଏମିତ ଗଣି ବସିଲେ କେଉଁଟା ଛାଇ ସିନା ଆମେ ପାଇ ପାରିବା, ସବୁ ତ ନୁହେଁ । ଆଉ ଉଖାର ଉଖାର ଦେଖିଲେ କେଉଁଠି ଛାଇ ପର ବାସ୍ତବକ ଯୁଗର ଆତ୍ମା (Zeitgeist) ଅଛି ତାର ସ୍ୱରୂପ କଅଣ, ଏ କଥା ସ୍ଥିର କରିବା ହେବ ଅସମ୍ଭବ । କେତେ ଖିଅ ଗୁଡ଼ି ହୋଇଯିବ, କେତେ ଖିଅ ଆମର ଗୋଟା ଆଙ୍ଗୁଠି ସନ୍ଧିରେ ଖସିଯିବ, କେତେ ବୃଢ଼ୀଆଣି ଜାଲ ଆଙ୍ଗୁଠିରେ ବାଜି ପରଶ ନ ଆଣି ହସାବ ତାଲିକାରେ ସ୍ଥାନ ପାଇବ ନାହିଁ । ତେଣୁ ଏତେ ଫର୍ଦ୍ଦ ଛାଇ ଉଠାଇପାରିବା ଅସମ୍ଭବ । ଯାହା ଲୋକେ କହିବେ, ସେ କେବଳ ମୋଟା-ମୋଟି । ଅରମା ନଟାର ଫୁଲ କସରୀ କ ନାଲିଆ, ତାର ପ୍ରକୃତ କଅଣ, ଛାଇ ତଳେ ଅନେକ କଥା ଠଙ୍କା ପଡ଼ିବ ।

ତେଣୁ ଶିଳ୍ପୀ ଛାଇକୁ ଏତେ ଭଲ କରି ବୁଝିବାକୁ ଚେଷ୍ଟା କରେ । ସେ ବୁଝିଛି, ଯୁଆଡ଼କୁ ଚାହିଁ, ଖାଲି ଛାଇ ! ପର ଭଲ, ପବନରେ ଧୀର ଧୀର କରି ଖସି ଆସୁଥିବା ଉଡ଼ନ୍ତା ତୁଳା ପରି ସେ ଯେଣିକ ଚାହେଁ, ତେଣେ ଆଖି ବୁଜେ ସ୍ୱା ତା ଛାଇ । ନଜର ସ୍ୱବକୁ ଶିଳ୍ପୀ ଛାଇ ଭିତରେ ମିଶାଇ ଦଏ । ନଜର ପ୍ରେରଣାକୁ ଅବଲମ୍ବି ଛାଇରେ ଡୁବିଯାଏ । ତାପରେ ଗଢ଼ା କାମ ଆପେ ଆପେ ଚାଲେ । ସେଥିରେ ଯେତେ ଯୁଗର, ଯେତେ କାଳର, ଯେତେ କଳାର ଛାଇ ପଡ଼ୁ ପଛେ !

ଆଉ ଛାଇକୁ ଶିଳ୍ପୀ ହତାଦର କରିପାରେ ନାହିଁ । ଗଢ଼ାକାମରେ ଚୂନସୁରିକି ପରି ଛାଇ ଯେ ତାର ଗୋଟାଏ ଆଦରର ଉପାଦାନ ! ଛାଇ ନ ଥିଲେ କଳା ଭିତରେ ଅର୍ଥ ସୃଷ୍ଟି କଏ ? ଅଲୁଅ ଅନ୍ଧାର ଫାଙ୍କେ ଫାଙ୍କେ ଝରଣାଟି ଯେତେବେଳେ ବହିଯାଏ, କେତେ ସର୍ଜନାର କୁହୁକ ଛାଇ ପଡ଼େ ତାର

ସ୍ଥିତିରେ । କାଳିଆ ହେଉ, ଅନ୍ଧାରୁଆ ହେଉ, ଠାଏ ଠାଏ ମେଞ୍ଚା ମେଞ୍ଚା ଛାଇ ଝରଣାର ଚଳନ୍ତ ପାଣିରେ ଶବ୍ଦ ନ କରି କଥା କହେ । ସବୁ ଛାଇ ଏକାଠି ମିଶି କେତେ ପୋଷାକ ସୃଷ୍ଟି କରେ । କଳା ତାକୁ ଛାଡ଼ିପାରିବ ନାହିଁ । ଫାଙ୍କା ଆଲୁଅ ତଳେ ଏ ପାଖେ ଛାଇ ସେ ପାଖେ ଛାଇ କରି ଗୁଣର ଯେଉଁ ବିକାଶ ହୁଏ, ଓ୍ୱେଣଇଣ ବିଶ କରି ଏ ପାଖ ସେ ପାଖ ଭିତରେ ଯେଉଁ ସମ୍ବନ୍ଧମୂଳକ ସ୍ଥିତି ରହେ, ତହିଁରେ ରୂପର ଯେଉଁ ସ୍ଥୂଳତା ଫୁଟି ଉଠେ, ଛାଇ ନ ଥିଲେ ସେତେକ ହୁଅନ୍ତା ନାହିଁ । ଛାଇ ଶିଳ୍ପୀର ତୂଳିର ରଙ୍ଗ; ଶିଳ୍ପୀ ତହିଁକୁ ବଡ଼ ହୁସିଆର !

ଶିଳ୍ପୀର ଆଖି ଆଗରେ ଠୂଳ ହୁଏ ଛାଇ । ତେଣୁ ଆଖିରେ ସ୍ବୃହିଁ କୌଣସି କଥାର ସ୍ୱରୂପ ଘେନିବା ବେଳେ ଶିଳ୍ପୀ ଛାଇ ଭିତରେ ସବୁ ଦେଖିଥାଏ । କଣ୍ୱମୁନି ଆଶ୍ରମରେ ଶକୁନ୍ତଳା । ଖାଲି କଅଣ ଶକୁନ୍ତଳାକୁ ଦେଖିଲେ ଅନସୂୟାର ଛାଇ ପ୍ରିୟମ୍ବଦାର । କଣ୍ୱମୁନି ଆଶ୍ରମର କଅଁଳ ଗଛନଟାର ଛାଇ, ଗୁଣ୍ଡୁଣି ହାଣ୍ଡପରି ତଳୁଥିଲା । ଝଙ୍କା ଅମ୍ବଗଛ "ନୋମାଲିଆ" ଲତା ଭୁନ୍ଧଥିଲା ତାର ଗଣ୍ଡିଏ ଗଣ୍ଡିଏ ଡାଳେ ଡାଳେ "ପତର ଠେଲି ପାଖୁଡ଼ା ମେଲି" । ଫୁଲ ଗୋଟି ଗୋଟି ହସ ହସ ଆଖିରେ ସ୍ବୃହିଁ ରହିଥିଲା । ତାର ଛାଇ । ମହୁମାଛି ବୁଲୁଥିଲା ଏ କଢ଼ ସେ କଢ଼ । ସେଇ ମହୁମାଛି ଯାହାର ପରିଚର୍ଯ୍ୟାରେ ବାଳିକା ବ୍ୟତିବ୍ୟସ୍ତ ହେବାରୁ ପୌରବ ବୀରବିକ୍ରମରେ ହୁଙ୍କାର ଦେଇ ଶିଭ୍ୟାଲସି ଦେଖାଇ ବାହାରିଲେ । ପୁଣି ପାଣି ମାଠିଆର ଠାଣି ! ଦେହ ଉପରେ ଛାଇ ପଡ଼ିବାରୁ ଅଙ୍ଗସୌଷ୍ଠବର ଲଳିତ ଲାବଣ୍ୟ ! ଶିଳ୍ପୀ ଏତେକଥା ବାଦଦେଇ ଶକୁନ୍ତଳାଙ୍କୁ ଦେଖିପାରି ନ ଥିଲେ । ଏତେ କଥା ସବୁ ନିଜ ନିଜର ସମ୍ବନ୍ଧମୂଳକ ବ୍ୟକ୍ତିତ୍ୱ ହେଉ ଛାଇ ପକାଉଥିଲା । ତେଣୁ ଶକୁନ୍ତଳାଙ୍କର ଯେତକ ସ୍ୱରୂପ ଶିଳ୍ପୀ ଘେନିଲେ, ତା ଭିତରେ କେତେ ପରି ଯେ ଅପର ପଦାର୍ଥର ଛାଇ, ସେ କଥା ଆପେ ଜଣାପଡ଼ୁଛି ।

ଶକୁନ୍ତଳାଙ୍କୁ ସେ ପରିସ୍ଥିତିରୁ ଉଠାଇ ନିଆଯାଉ । ଭିନ୍ନ ପରିସ୍ଥିତିରେ ରଖାଯାଉ, ଭିନ୍ନ ଛାଇ-ସମଷ୍ଟି ତଳେ । ଫଳ ଏକା ହେବ ନାହିଁ । ରାଜଦୁଆରେ ଋଷି-ସ୍ୟାପେରନ୍ (ଅଭିଭାବକ) ଘେନି ଶକୁନ୍ତଳା ମୂଳ ଶକୁନ୍ତଳାଠୁଁ ଭିନ୍ନ, କାରଣ ଛାଇ-ସମଷ୍ଟି ଅଲଗା ।

"ଓଳି ଘେନି କୋଳି, ତେଲ୍ଉଣି ଘେନି ଚକୁଳି" ପରି ସ୍ୱରୂପ ଘେନିବା ବିଷୟରେ ଛାଇର ପ୍ରଭାବ ବାସ୍ତବ ଜୀବନରେ ପଡ଼ିଥାଏ । ନିଃଶବ୍ଦ ନିଶୂନ ସଞ୍ଜରେ ପୋଖରୀ ଭିତରେ ମାନସୀ । ବୃଣପାଖର ଗଛ ଅଢ଼ୁଆଳ ଭେଦି ତେଜାଏ

ଜନ୍ମ ଉଠିଲା । ଛପିଛପିକା ଆଲୁଅରେ ମାନସୀ ମୁହଁ ଉଠାଇଲା । ଗୋଟାଏ ମୁହଁର ସ୍ମୃତି, ଆଲୁଅ ଛାଇ ମିଶା, ଅଧା-ଆଲୁଅ ଅଧା ଛାଇରେ ଆଖିକଣର କେଉଁ କେଉଁ ପାଣି ଚମକି ଉଠିଲା । ଶୁଭ ମୁହୂର୍ତ୍ତରେ ବିଶିଷ୍ଟ ଛାଇ-ସମଷ୍ଟି ତଳେ ଦିଶିଲା ଗୋଟିଏ ଛବି । ତାପରେ ଯବନିକା । କିନ୍ତୁ ସ୍ମୃତି ରହିଲା ଚିରନ୍ତନ । ଆଉ ସ୍ମୃତିର ହେଉ ଛାଇ । ଗୋଟିଏ ଗୋଟିଏ ମୁହୂର୍ତ୍ତରେ ଗୋଟିଏ ଗୋଟିଏ ଛବି ମନ ଉପରେ ଯେଉଁ ଗାର ଟାଣେ, ତହିଁରୁ କେତେ କରଣି ଛାଇର, କିଏ କହିବ ? ସୃଷ୍ଟିର ପ୍ରତ୍ୟେକ ବସ୍ତୁର ଗୋଟିଏ ଗୋଟିଏ (ପର୍ସନାଲିଟି) ବିଶିଷ୍ଟ ରୂପ ଅଛି । ପ୍ରତ୍ୟେକ ବସ୍ତୁ ନିଜେ ଯେପରି ଦିଶେ କେତେ ପର୍ସନାଲିଟିର ଛାଇରେ, ସେପରି ନିଜର ଛାଇକୁ ପକାଇଥାଏ ଅନ୍ୟ ବସ୍ତୁ ଉପରେ । ତେଣୁ ଗୋଟିଏ କଥା ଯାହା ଆମେ ଦେଖୁ, ତାର ନିଜର ଚେହେରାରେ ନୁହେଁ । ନିଜର ଚେହେରାରେ ଅନ୍ୟ କେତେ ଛାଇ-ସମଷ୍ଟି ମିଶି ଯେଉଁ ଚେହେରା ହୁଏ, ତାକୁ ଆମେ ଦେଖିଥାଉଁ ।

ଶିଳ୍ପୀର କଳ୍ପନାରେ ସୁଦ୍ଧା କେତେ ଛାଇ ପଡ଼େ । ଶୂନ୍ୟ ଭିତରେ ପଦାର୍ଥ ଉଦୟ ହେଲେହେଁ ତାର ଗୋଟିଏ ପର୍ସନାଲିଟି ଆସିଲା । ଅପର ପଦାର୍ଥ ଯଦି ଆସିବ, ତେବେ ଦୁହେଁ ଦୁହିଁଙ୍କ ସମ୍ବନ୍ଧମୂଳକ ଚେହେରାରେ ପ୍ରକାଶ ପାଇବେ ।

ଖାଲି କଅଣ ଛାଇ ଥାଏ ଦେଖିବାରେ ! ମନର କଅଁଳ ମରମ ସ୍ତର ଭିତରେ ସେପରି ଛାଇ ପଡ଼େ । ହସ ଉପରେ କାନ୍ଦର, କାନ୍ଦ ଉପରେ ହସର । ଅତି ଖୁସିରେ ମନ ଯେତେବେଳେ ଫୁଲି ଫାଟୁଛି, ତଳେ ତଳେ ଆସେ ହୁଏତ କେଉଁ କାଳର ଦୁଃଖ ସ୍ମୃତି । ବାହା ମଉଛବ ଦୁଆରେ ଠିଆ ହୁଏ ଗୋଟାଏ ସରୁ ବର୍ଷର ଜଡସ ଭିକାରି । ବାଇଦ ବାଜେ, ହସରେ ଆକାଶ ଫାଟେ; କିନ୍ତୁ ହସ ଭିତରେ ମିଶିଯାଏ କାନ୍ଦଣାର ଗୋଟାଏ ଛିଅ, ଗଳ୍ପ ଅଜ୍ଞାତର । କି ପାଯୋଗ୍ୟ ଅନୁଭୂତିର, କି କାହାର ! ମନର କୋହ ମନରେ ମରେ; କିନ୍ତୁ ସବୁ ମିଶିଯାଏ ଏକାଠି—ହସ କାନ୍ଦ, ବାହା ମଉଜ, ଆଉ ଛିଅ-କାନ୍ଦଣା ମନର ସ୍ତରେ ସ୍ତରେ । ହୁଏତ ବିପଦ୍ଦଶ ଗୃହରେ କଳାପଟା ଉପରେ ଧଳାଗାର ପରି ଆନନ୍ଦ ଉଚ୍ଛୁଳି ପଡ଼େ; ନୋହିଲେ ମରମେ ମରମେ କରତି ହୁଏ, ଅଳ୍ପେ ଅଳ୍ପେ ସହଯୋଗ ପାଇ । ଜୀବନର କେତେ ଅନୁଭୂତି । ପ୍ରତ୍ୟେକଟି ଦିଶେ ସମ୍ବନ୍ଧମୂଳକ ପରିସ୍ଥିତିରେ; ପ୍ରତ୍ୟେକଟି ଆରଟି ଉପରେ ଛାଇ ପକାଏ । ଅତି ସୁଖରେ ମନେ ପଡ଼େ କେତେ ଅଭାବ । କେଉଁ ପ୍ରିୟଜନର ଉଦ୍ଦେଶ୍ୟରେ କେଉଁ ପାଯୋଗ୍ୟ ସୁନେଲି ଦିନର ପରିକଳ୍ପନାରେ ମନ ଭିତରେ ହୁଏ କ୍ଷତ । ଅତି ଦୁଃଖରେ ଅନ୍ଧାର

ଭେଦ ଖେଳିଯାଏ ଆଶାର ବିଜୁଳି । ଗ୍ରାଇ ପଡ଼େ, ଲମ୍ବା ଲମ୍ବା ଗ୍ରାଇ । ପରୁସ୍ତୁ ହି ଆଦୌ ଲୁହେଁ । ଖାଲି ଗୋଟାଏ ଗ୍ରାପ ।

ଚିନ୍ତା କଲେ ସୁଦ୍ଧା ଛାଇପଡ଼େ, ଗୋଟାଏ ଧାରଣାର ଆଉ ଗୋଟାଏ ଧାରଣା ଉପରେ । କବି ସ୍ୱପ୍ନଛନ୍ଦ ବସନ୍ତର ଯଥାର୍ଥତା ବିଷୟ । ଶୀତ କଥା ସେ ଆଦୌ ଭୁଲିପାରିବେ ନାହିଁ । ଆହୁରି ଭୁଲି ପାରିବେ ନାହିଁ ପୋଷା କୁକୁରଟି କଥା; ବର୍ଷାର ଗ୍ରାମ ସୀତାଙ୍କ କଥା ।

କିନ୍ତୁ ମଜା ଏଇକି, ଧାରଣାର ବା ଅନୁଭୂତିର ବା ଦୃଷ୍ଟିର ଯେଉଁ ଗ୍ରାଇ ପଡ଼େ, ସେ ପଡ଼େ ନିଜର ଅଜାଣତରେ । ମଣିଷ ମନର ଅଧଚଆଁ ପାଞ୍ଜିଆଁ କେତେବେଳେ କଅଣ ଉକୁଳେଇ ଉକୁଳେଇ ଲେଖି ନେଇଛି—ମଣିଷ ଜାଣୁ ନ ଜାଣୁ । ସେଇ ଯେଉଁସବୁ ସ୍ମୃତି ରହିଲା; ଯେଉଁ ସବୁ ଛାଇ ସଞ୍ଚ ହୋଇ ରହିଲା, ସେଗୁଡ଼ିକୁ ସବୁ ଭବିଷ୍ୟତକୁ । ସେତେବେଳେ ମଣିଷ ଜାଣୁ ନ ଜାଣୁ ଅଧଭୁଲି ସ୍ମୃତିର ଏସବୁ ଛାଇ ତାର ପ୍ରତ୍ୟେକ କାର୍ଯ୍ୟରେ ପଡ଼ିବ । ଗୋଟିଏ ଫୁଲ ଦେଖୁ ଦେଖୁ ମନ ଭିତରେ ଆଉ ଗୋଟିଏ ଅଦ୍ଭୁତ ସୁନ୍ଦର ଫୁଲର ଛାଇ ପଡ଼ି ଏ ଫୁଲଟିକୁ ହୃତାଦର କରିବାକୁ ମନ ବଳୁଛି । ହୁସର କଥା ଭାବୁ ଭାବୁ ମନ ଭିତରେ ଅଜାଣତରେ କାନ୍ଦର କଥା ପଡ଼ି ଫରକଟା ୫୦ ଗୁଣ ହୋଇ ଆସିଲାଣି । ପ୍ରତ୍ୟେକ କାର୍ଯ୍ୟରେ ଖାଲି ଛାଇ ଛାଇ ଭିତରେ ଛନ୍ଦାଛନ୍ଦ । କେଉଁ କାଳର ସେ ଛାଇ, କିଏ କହିବ ? ନିଜେ ନିଜକୁ ବୁଝିହୁଏ ନାହିଁ । ଯାହା ବି ଯିଏ ବାହାରେ, ତା ସମଷ୍ଟିଗତ ।

ଛାଇ ପ୍ରକାଶ ପାଏ କେମିତି ? ଶିଳ୍ପୀ ତୂଳୀ ଉଠାଇଲା ସିଧା ଗାର କାଟିବାକୁ । ମୂଳ ଉଦ୍ଦେଶ୍ୟ ରହିଲା ଗୋଟିଏ । ଗୋଟିଏ ବିଶେଷ ଢଙ୍ଗ ଅନୁସରି ତୂଳି ଗ୍ରାଲିଲା; କିନ୍ତୁ ଗାରଟି ଟାଣି ସାରି ଶିଳ୍ପୀ ଦେଖିଲା—ନା, ସିଧା ତ ହେଲା ନାହିଁ; ଠାଏ ଠାଏ ଗାର ହେଲା ମୋଟା । ହେଇ, ସେଠି ଗାର କରେ କରେ କେଡ଼େ ହାଲୁକା ରଙ୍ଗର ଛୋଟ ଛୋଟ କେତେ ବୁନ୍ଦା ! ସେ ପାଖେ କରେ କରେ ଟିକିଏ ଏ ପାଖ ସେ ପାଖ ଉଣ୍ଡାମାଗ୍ରୁ । ଶିଳ୍ପୀର ହାତ ଅଜାଣତରେ ଥରିଛି । ଗୋଟିଏ ଆଦର୍ଶକୁ ଗ୍ରହୁଁ ଗ୍ରହୁଁ ଅନ୍ୟ କେତେ ଆଦର୍ଶର ମୋହ ଏ ପାଖ ସେ ପାଖ ଟଣାଓଟରା ଲଗାଇଛି । ଗୋଟାଏ ଗାରରେ କେତେ ଛାଇ ପଡ଼ିଛି—ଦେଖିବାର, ଭାବିବାର, ବୁଝିବାର ସବୁଥିରେ । କିନ୍ତୁ ଶିଳ୍ପୀର ନିଜର ବିଗ୍ରହ ଏ ଛାଇଠୁଁ ଅଲଗା ରହିପାରୁ ନାହିଁ । ସେଥିପାଇଁ ଶିଳ୍ପୀ କହିଲା, "ବାଃ, କି ସୁନ୍ଦର !" ଦେବଦାରୁ ଗଛ ଛାଇରେ ନାଲି କୃଷ୍ଣଲତାଟି ଦୂରରୁ ଦିଶୁଛି କସରା । ବେଶ, ସେହି କସରା ରଙ୍ଗରେ ତାର ଶିଳ୍ପ ପ୍ରକାଶ ହେବ । ଗାଁ-

ଅନୁଭୂତ ଛାଇରେ ଫକୀରମୋହନ ହସ ଉପାଦାନର ନାୟିକାକୁ ଦେବେ ପାଇଥିଲ, ନାଁ ରଖିବେ ଚମ୍ପା । ସେ କଅଣ ଆଉ କହୁ ନାଁ ପାଇଲେ ନାହିଁ ? କେଉଁ ଚମ୍ପାର ଛାଇ ପଡ଼ିଥିଲ ତାଙ୍କ ମନରେ ? ନିଶ୍ଚୟ କାହାର ପଡ଼ିଥିବ । ଛାଇ ତଥ୍ୟ ଓଳର ଦେଖିବା ସୁବିଧା ନୁହେଁ; କିନ୍ତୁ ଦେଖିଲେ ବୋଧହୁଏ ଜଣାପଡ଼ନ୍ତା, ମେହେରର କବି କେଉଁ ରାମସେନଙ୍କ ଛାଇରେ କବିତା ଲେଖିଲେ । କେଉଁ ମୁହୂର୍ତ୍ତରେ ତାଙ୍କର ପ୍ରକୃତ-ଉଦ୍ୟାନର କେଉଁ କଚିକା ବାସ୍ତବିକ ତାଙ୍କର ଆଗରେ ଘୁଲ୍ ବୁଲ୍ କରୁଥିଲ; ଆଉ ଜଙ୍ଗଲ ଭିତରେ ଅନ୍ଧାରେ ଅନ୍ଧାରେ କେଉଁ ଦ୍ରୌପଦୀକୁ ହାତ କରିବା ପାଇଁ ଘାତ ପାଞ୍ଚ କରୁଥିଲ !

କଳାଶକ୍ତିର ପ୍ରେରଣାରେ କଳାଶିଳ୍ପୀ ମିଶ୍ରସ୍ୱୟମ୍ଦ୍ୱାସ ନିଜକୁ ନିଜେ ଗଢ଼େ, ପୋକକଣା ବାଉଁଶ ଭିତରେ ପବନ ପଶି । କିନ୍ତୁ ବାଉଁଶର ଅଲେଖ ବହୁତେ ବିଶିଷ୍ଟତା ଅଛି—ବାଙ୍କ, କଣାର ଆକାର, କଣା କଣା ଭିତରେ ଦୂରତା, କେତେ କଅଣ ! ଶିଳ୍ପୀ ନିଜର ଅଭିଜ୍ଞତା ଚଥାଁ ଅଧଚଥାଁ ସବୁନ୍ତକୁ ଏକାଠି ଠୁଳ କରି ତାର ଉପରେ କଳାଶକ୍ତି ନିଜର ଛାପା ମାରି ଯାଏ । ତେଣୁ ଶିଳ୍ପୀ ଠାକୁର ଗଢ଼ୁ ବା ମାଙ୍କଡ଼ ଗଢ଼ୁ, ତାର ହୃଦୟଲ ଅଭିଜ୍ଞତାର ଛାଇ ତହିଁରେ ପଡ଼ିଥିବ । ଅତଏବ ମେହେର କବି ପୁରାଣ କଥା, ପୁରାଣ ଚରିତ୍ର ଘାଣ୍ଟିଥିଲେ ବି ଜୀବନ ଭିତରୁ ସ୍ମୃତି ଗୋଟାଇଥିବେ । ସେ ଦ୍ରୌପଦୀକୁ ଦେଖିଛନ୍ତି, ସାମନାସାମନି ନ ହେଲେ ସୁଦ୍ଧା ଗୋଟାଏ ସ୍ୱପ୍ନମିଶା ଅନୁଭୂତିର ଛାଇରେ । ସେହିପରି କୀଚକକୁ, ରାମକୁ । ସବୁ ଉପାଦାନ ଜଣେଠିଁ ନ ପାଇଥିବେ; ଦଶଠିଁ ଦଶକଥା ପାଇଥିବେ । କିଏ ଜାଣେ, କେଉଁ ପାନଘରଣୀ, କେଉଁ ଧୋବଣୀ, କେଉଁ ଭଉଣୀ, କେଉଁ ମା ଦ୍ରୌପଦୀର ସ୍ମୃତି ଅଜାଣତରେ ଶିଳ୍ପୀ ମନରେ ଢାଳିଛି ? କିଏ ଜାଣେ, କେଉଁ ମଦଘ, କେଉଁ ଗୁଣ୍ଡା, କେଉଁ କେଉଟ, କେଉଁ ରଜାପୁଅ କୀଚକର ଛାଇ ପକାଇଛି ? ଆଲୁଅକୁ ଆମେ ଅଗୁସାଉ ! ଛାଇ ଭିତରେ ଆମର ଯୁ ନାହିଁ; ତେଣୁ ଆମେ ଅଟକିଯାଉ ।

ବଙ୍ଗଳା ସାହିତ୍ୟରୁ ଦଶ କଥା ଏ ଦେଶର ଲେକେ ନେଉଛନ୍ତି—ବଙ୍ଗାଳି ଲେଖକ ଓଡ଼ିଶାରୁ କେତେ କଥା ଗୋଟାଉଛନ୍ତି, ଜାଣି ଜାଣି ନ ହେଲେ ସୁଦ୍ଧା ଅଜାଣତରେ । ଛାଇରେ ଛାଇରେ ଛନ୍ଦାଛନ୍ଦି । ବର୍ତ୍ତମାନର ଛାଇ ଅନ୍ତର୍ଜାତିକ । ଆମ ଦେଶର ଆଜକାଲିକା "ଘଡ଼ଘଡ଼" କବିତାରେ ଯେଉଁ ରଣହୁଙ୍କାର ଶୁଣିଥାଉଁ, ତାର କେତେ ଅଂଶ ଦରିଆ ସେ ପାରିର ? ରୁଷ ଦେଶର ଜନ-କୋଳାହଳର ପ୍ରତିଧ୍ୱନି ଶୁଣୁ ଆମେ ଓଡ଼ିଶା ଦେଶରେ; ଜର୍ମାନ ଦେଶର ସଂସ୍କୃତି ପଢ଼ୁଁ ଓଡ଼ିଆ ଲେଖକଙ୍କ ହାତ ଲେଖାରୁ । ସେମାନେ ବି ହୁଏତ

ହ୍ୱାଇଡ୍‌ର୍ ଲେଖାରୁ "ସସ୍କୃତ"ର ସସ୍କୃତ ପାଉଥିବେ । ସ୍ୱାର କାରଣ ଛାଇ । ଏ ଦେଶର ଛାଇ ସେ ଦେଶରେ ପଡ଼ୁଛି, ସେ ଦେଶର ଛାଇ ଏ ଦେଶରେ ପଡ଼ୁଛି । ହୁଏତ ଆଫ୍ରିକାର ନିଗ୍ରୋ ସଭ୍ୟତାର ଛାଇ ପଡ଼ିଥିବ ରାଧାନାଥଙ୍କ କବିତାରେ । ଅଷ୍ଟ୍ରେଲିଆର ମାଓରି ଛାଇ ପଡ଼ିଥିବ ହ୍ୱିମିନ କବିଙ୍କ ଗୀତଗୁଚ୍ଛରେ । କିଛି କହିହେବ ନାହିଁ, କେମିତି କଅଣ ହେଲା । କୌଣସି କାଳରେ ଗୋଟାଏ ଦେଶର ସାହିତ୍ୟ ସେତିକି ବେଳର ଯୁଗ ଆତ୍ମା ପାଖେ ଯେତିକି ଋଣୀ, ସେହି-କାଳର ଅନ୍ୟାନ୍ୟ ସାହିତ୍ୟ ପାଖେ କମ୍ ଋଣୀ ନୁହେଁ ।

ତା ପରେ ସବା ପଛରେ ତ ଅଛି ପୁଣି ଅତୀତର ଛାଇ । ପୁରୁଣା ଭାଙ୍ଗି ନୂଆ ଗଢ଼ିବାକୁ ଆମର ଯେତେ ଇଚ୍ଛା ହେଉଥାଉ, ସବୁ କାଟି ଦେଇ ଶୂନ୍ୟରୁ ପାହାଡ଼ ଗଢ଼ିବା ଅସମ୍ଭବ । ଏ ଯୁଗରେ ଜନ୍ମି, ଏ ପରମାଣ୍ୱିକ ଯୁଗରେ, ଏ ଆଇନ୍‌ଷ୍ଟାଇନ୍ ଶତାବ୍ଦୀରେ, ଏ ବର୍ଣ୍ଣାଢ଼୍ୟ ସମ୍ବତ୍ସରରେ ବଢ଼ି, ଆମେ ଗଳ୍ପ ଯୁଗର ଭଞ୍ଜ, ଦୀନକୃଷ୍ଣ ବା ଶାରଳା ଦାସ, ଜଗନ୍ନାଥ ଦାଶ ବା ମାଦଳା ପାଞ୍ଜି, ସାମ ବେଦ କାଳର ସାତଗଡ଼ିକୁ ସାହିତ୍ୟରୁ ତଡ଼ି ଦେଇ ପାରିବୁ ନାହିଁ । ଗଳ୍ପ ଯୁଗର ଆତ୍ମା କଟାସ ପରି ଆଗକୁ ଗୁହିଁ ରହିଛି । ଅତୀତର କୁହୁଡ଼ି ଭିତରେ ତାର ଯେତିକି ପର୍ଯ୍ୟାଲୋଚନା ରହିଛି, ସେ ଆଗକୁ ଆଗକୁ ପକାଉଛି ଛାଇ । ଆମର ଅଜାଣତରେ, ଆମର ଅତି ନୂତନ ମୋହର ଉଚ୍ଛ୍ୱାସରେ ସୁଦ୍ଧା ଆମେ ସେ ଅତି ଆଦିମର ଛାଇରେ ଘରକରଣା କରୁଥାଉଁ । ସେ ଯୁଗରେ କୁମ୍ଭକର୍ଣ୍ଣ ନିଦରୁ ଉଠି ମୁଣ୍ଡରେ ହାତ ମାରି କହିବ—"ମୋ ବେଣ୍ଡ ଗଳ୍ପ କାହିଁ ? ମୋ ଚୁଟି ?" ତା ପରେ ହାତରେ ତାର ବାଜିବ ପାପ ଶଲତା ପରି ଗୋଟିଏ ଛୋଟିଆ ଚୁର୍‌କି ! ବେଣ୍ଡର ଛାଇ ନଭିଯାଇନାହିଁ—ରହିଚ ।

ତେଣୁ ଛାଇର ଗୋଟାଏ ଖରାପ ଗୁଣ, ଅତି-ନୂତନ ପକ୍ଷରେ ସେ ଅତି ବହଳ ନାଗଫେଣୀ ବାଡ଼—ତାଡ଼, ଭାଙ୍ଗ, କିଛି ଫଳ ନାହିଁ । ଅତି ନୂତନ ଅସମ୍ଭବ । ପୁରାତନର ମଉଳା ଛାଇ, ପୁରାତନର ଫିମ୍ପିମରା ଗନ୍ଧ ଅଳ୍ପେ ବହୁତେ ରହିଥିବ ।

କିନ୍ତୁ ଅତି-ନୂତନର ସହଯୋଗୀ ନୁହେଁ ବୋଲି ଛାଇ ଖରାପ, ଏ କଥା କେବଳ କେତେ ଜଣ ହେମିତି ସେମିତି ସସ୍କାରକ ଭାବିବେ । ଗୋଟାଏ ଯୁଗକୁ ଅନ୍ୟ ଗୋଟାଏ ଯୁଗ ସଙ୍ଗେ ବାନ୍ଧେ କିଏ ? ଛାଇ ! ଗୋଟାଏ ଜାତିକୁ ଆଉ ଗୋଟାଏ ଜାତି ସଙ୍ଗେ ମିଶାଏ କିଏ ? ଛାଇ ! ତାର ବାଡ଼ ନାହିଁ; ଧୀରେ ଧୀରେ ଘୁର ଘୁର ହୋଇ ସବୁ ମିଶିଯାଏ । ଛାଇ ସବୁ ମିଶାଇ ଦିଏ ।

ଆଉ ସୃଷ୍ଟି ପକ୍ଷରେ ଛାଇ ଅତି ଉପଯୋଗୀ । ବଡ଼ ହେଲେ ଗୁଡ଼ ଗଛ ମଞ୍ଜ ଖୋଳପାକୁ ଖସାଇ ଦିଏ; କିନ୍ତୁ ଖୋଳପା ଏତେଦିନ ତାକୁ ଧରି ରଖି ଥିଆରି କଲା । ଖାଲି ଫାଙ୍କା ହେବା ପରିବର୍ତ୍ତେ ଗୋଟାଏ ଛାଇ ପଡ଼ିଥିବା ଭଲ । ତାରି ତଳେ ନୂଆ ଛାଞ୍ଚ ଗଢ଼ାହେବ, ନୂଆ ଫୁଲ ଫୁଟିବ, ପୁଣି ଛାଇରେ ମଉଳି ନଇଯାଇ ନଜେ ହେବ ଭବିଷ୍ୟତ ଲାଗି ଅସ୍ପଷ୍ଟତର ଛାଇ ।

ପରିସ୍ଥିତିର ଛାଇ ଢାଙ୍କି ରଖି ଜାଣେ ଯେମିତି, ରଙ୍ଗ ଦେଇ ଜାଣେ ସେମିତି, ଆକାର ଦେଇ ଜାଣେ ସେମିତି ! ଆକାର, ରଙ୍ଗ, ଶେଷରେ ଅର୍ଥ, ତେଣୁ ଶିଳ୍ପୀର ଏତେ ଆଦରର ଏ ଛାଇ ।

ଦେଖା ଅଦେଖା, ଛୁଆଁ ଅଛୁଆଁ ସବୁ ଖାଲି ଛାଇ, ପ୍ରେତ ପରି ଛାଇ । ପରସ୍ତ ପରସ୍ତ ହୋଇ ରହିଛି, ଆଖିରେ ଢାଙ୍କୁଛି ପରସ୍ତ ପରସ୍ତ ପର୍ଦ୍ଦା; ଅନୁଭୂତିରେ ଆଣୁଛି ପରସ୍ତ ପରସ୍ତ ନିସ୍ବାଗୁଣ ।

ସବୁ ଯେମିତି ଖାଲି ଛାଇ ! ସୃଷ୍ଟିଟା ଯେମିତି କୋଉ ଅଜଣା କାହାର ଛାଇ-ସମଷ୍ଟି । ଦିନ ସରିଯିବ, ଆଖିବୁଜି ଢୁଳେଇ ପଡ଼ିବ, କିନ୍ତୁ ଭବିଷ୍ୟତକୁ ସମସ୍ତଙ୍କର ସେ ଗୋଟିଏ ଦାନ, ଛାଇ । କୃଷ୍ଣଙ୍କର ବଇଁଶୀ, ଓଡ଼ିଆ ପାଇକର କୁହାଟ, ସବୁ ରହିଛି ଛାଇରେ । ବାରବାଟିର ଭୂତପ୍ରେତ ଭବିଷ୍ୟତ ପ୍ରତି ଯେତିକି ପ୍ରଭାବ ଦେଖାଇବେ, ସେ କେବଳ ଛାଇରେ; ଆଉ ଆମେ ବି ହିଟଚମିଟ ସାରି ଚିରଯୁଗ ଲାଗି ବଞ୍ଚି ରହିବା ସୂକ୍ଷ୍ମଠୁ ଅଧିକ ସୂକ୍ଷ୍ମ ସେଇ ଛାଇରେ । ବଞ୍ଚିଷ୍ଠା ରହିବ ଅତି ସୂକ୍ଷ୍ମ ହୋଇ; ହିସାବ କଲାବେଳକୁ କେତେ ହିସାବୀଙ୍କ ଗୋଟା ଆଙ୍ଗୁଠିରେ ଝୁଣ୍ପିଯିବ । ସବୁ ସରିଯିବ, ଖାଲି ଗୋଟାଏ—ଖାଲି ଗୋଟାଏ ଛାଇ !

ମନରେ ଚମକ ଲାଗେ, ମୁଁ, ସେ, ଆଉମାନେ—ସବୁ ସତ ତ ? କାହାର ଛାଇ ଏଥିରେ ହଲୁଛି ?

କାହାର ?

ବାସ୍ତବ ଛାୟାର ସଙ୍କେତ, ନା ଛାୟା ସଙ୍କେତ ବାସ୍ତବର ?

ଗୋଡ଼ତଳୁ ଭୂଇଁ ଖସି ଖସି ଯାଏ । ଆଖିରେ ଦେଖେ ଛାଇ, ଯୁଗ ଯୁଗର ଯାଇ, କେବଳ ଆଶାର ଶାନ୍ତ ସ୍ନିଗ୍ଧ ମରଣର ! ଛାଇ କଥା କହେ ନାହିଁ; ଖାଲି କାମ କରଯାଏ ସୂକ୍ଷ୍ମେ ସୂକ୍ଷ୍ମେ । ବୁଢ଼ା ସୂର୍ଯ୍ୟ ବିଶ୍ରାମକୁ ଯାଏ । ପୋଖରୀ ଉପରେ ଛାଇଗୁଡ଼ାକ ଦୋହଲେ, ଲମ୍ବା ଲମ୍ବା ଛାଇ ! ଆଉ ଚହୁଣୀର ସରମରଙ୍ଗା ପାଣି ମୂକୁଳା ମିଶା ମୁହଁ ଅର୍ଥ ପାଇ ଝଲସି ଉଠେ—ଅଧା ଛାଇ ଅଧା ବୋହୂ ମୁହଁଦେଖା ଆଲୁଅରେ ।



# ଶେଷ ଅଙ୍କ

ପର୍ଦ୍ଦା ପଡ଼େ, ଅଳ୍ପ ଅଳ୍ପ ପଡ଼େ—ଆ-ସ୍ତେ । ତା ପରେ—? ଖେଳ ସରିଲା; ଫେର ଚାଲ, ଫେର ଚାଲ, ଆପଣା ଘରକୁ । କଳା ମିଚମିଚ ଅନ୍ଧାର ପକ୍ଷି ମେଲାଇ ଓହ୍ଲାଇ ଆସେ ପୃଥିବୀ ଉପରକୁ । ପଥର ମଣ୍ଡଳା ବର୍ଣ୍ଣାଟି ମରଯାଏ ଗାଢ଼ କଳାର ପକ୍ଷି ଓହ୍ଲାଳରେ । ଆଲୁଅର ଚହଲ ନାହିଁ, ଥିଏ ତ ବା ଥିବ ?— କିଏ ଜାଣେ, ଆମ ସାଧାସିଧା ଖୋଲା ଆଖିକୁ ତ ଦିଶେ ନାହିଁ । ଏଇ ମେଞ୍ଚା ମେଞ୍ଚା ଅନ୍ଧାର ତଳେ ତଳେ, ବୁଦା ଗାଛ ଗଦା ମଝି ମଝିରେ କିଏ ସବୁ ଯିବା ଆସିବା କରୁଥିବେ ପରା ! ଅନ୍ଧାରର ନିର୍ଜନ ଶୂନ୍ୟ ପୁରୀ କାହାର ଅଜଣା ହାତ ଲାଗି ଅଳ୍ପ ଅଳ୍ପ ଶିର୍ ଶିରେଇ ଉଠୁଥିବ ବା; ସେ ଖବର ଆମର ନୁହେଁ ଅମ ଆଖିରେ—ପର୍ଦ୍ଦା ପଡ଼ିଲା ।

ଦଳ ଦଳ ଲୋକ, ଖଣ୍ଡା ତରୁଆଳ୍, ହାଣକାଟ, ମଲା ଜୀଅନ୍ତା ଭଲ ପାଇବାର ମଖାମଖି ଢଳାଢଳି, ନୋହିଲେ ଶଙ୍କୁଚା ସାଧିବାର ଧରାଧରି, ଗଡ଼ାଗଡ଼ି, ଭୁଷାଭୁଷି । ପଛପଟେ ଦୃଶ୍ୟ—ନଈ ପାହାଡ଼, "ରାଜପଥ" ସବୁ ରହିଛି; କିନ୍ତୁ ପର୍ଦ୍ଦା ପଡ଼େ । ଶିଳ୍ପୀ ସେତେବେଳେ ଫୋପାଡ଼ିଦିଏ କଲମ, ସାଧକ ବହି ବନ୍ଦକରି ଘୁମେଇ ପଡ଼େ ।

ଏଇ ଶେଷ ଅଙ୍କର ପରିଣତି କିଏ ହାତରୁ କରେ । ମୂଳରୁ ତ ଚକ ଗଡ଼ି ଚାଲିଲା, ଶେଷରେ ପର୍ଦ୍ଦା, ଏ ବସ୍ତୁର ଆରମ୍ଭ କରିଦେବା ତ ଅତି ସହଜ, ମୁହଁ ଖୋଲିଲେ କଥା ବାହାରିଲା; କିନ୍ତୁ ମୁଣ୍ଡି ମାରିବା କେଡ଼େ କଷ୍ଟ । ବାରଶହ ବଢ଼େଇ, କେତେ ବଡ଼ ବଡ଼ ମିସ୍ତ୍ରୀ, କେତେ ବଡ଼ ବଡ଼ ଇଞ୍ଜିନିୟର, ସବା ଉପରେ ଖୋଦ୍ ସୁପରିଦଣ୍ଟ, ଜମାସୁଦ୍ ଶିବେଇ ସାନ୍ତା । କାମ ଚାଲିଲା ପଥର ଉପରେ ପଥର, ମୂର୍ତ୍ତି ଉପରେ ଦଦ୍ଧିମାଠିଆ, ବାହାର ପ୍ରକୃତିର ବାଲିବନ୍ତ ଆଉ ଚଞ୍ଚଳ ସମୁଦ୍ର ଉପରେ ଗାଦିମାଡ଼ି ଠିଆହେଲା କୋଣାରକ; କିନ୍ତୁ ବାକି ରହିଗଲା ସେଇ ମୁଣ୍ଡି ମାରିବା । କହ୍ଲ ଆଲୁଅରେ ଚକ୍ ଚକ୍ ଲହଡ଼ି ଅସରନ୍ତି ଦରିଆର ଅସରନ୍ତି ଦୁଃଖରେ ଅମୁଣ୍ଡିଆ ଦେଉଳର ଗୋଡ଼ତଳେ ଲୋଟିଗଲା— ମଥା କାହିଁ ? ସାଇଁ ସାଇଁ ନଶାରେ ଝାମ୍ପିଗଛ ନିଃଶ୍ୱାସ ପକାଇଲା—ମଥା କାହିଁ ?

ତେଣୁ ଶେଷ ଅଙ୍କର ପରିଣତି ବିଗ୍ଭର କରିବା ଏଡ଼େ କଷ୍ଟ । ସ୍ୱୟଂ ବିଧାତା ଏ କାମରେ ପାରଦର୍ଶୀ ହୋଇଛନ୍ତି କି ନା ସେ ଜାଣନ୍ତି । ଶିଳ୍ପୀ ତ ଶିଳ୍ପୀ, କଳାଶକ୍ତି ଅଜଣାର ସ୍ପନ୍ଦନ ହେଲେ ସୁଦ୍ଧା ମିଡ୍‌ସମର ଏଇ ମଣିଷ । ଉମେଇ ବୁଢ଼ା ନଈରୁ ଗାଧୋଇ ପାଧୋଇ ଆସିଲେ । ପଖାଳ କଂସା ବଢ଼ା ରହିଛି, ଶାଗରୁ ବାମ୍ପ ନିଭି ନାହିଁ, ଖଟା ଉବୁଟି ନାହିଁ, ଖାଇସାରି ଅଢ଼ଙ୍ଗ ଗାଁ ଯିବାକୁ ହେବ, ବୁଧୀବି ଜେନା ଉପରେ ପାଞ୍ଚପଇସା ଅଧଲିଏ ବାକି, ତା ପରେ ପୁଅ ବୁଟିଆ ଫେରିବ ମାମୁଘରୁ ଆଉ ଓଳି; କିନ୍ତୁ ଉମେଇ ବୁଢ଼ାଙ୍କ ଉପରେ ପର୍ଦ୍ଦା ପଡ଼ିଲା । ଗ୍ଭଲିଲେ ।

ଏଇ କଣ ଶେଷ ପରିଣତି ? କାହିଁକି ? ଜଣେ ମଣିଷର ଜୀବନ ନାଟକ କେତେ ଛିପଖାଲ ଭଲ ମନ୍ଦ ଦେଇ ଗଡ଼ି ଗ୍ଭଲି ଆସିଲା; କିନ୍ତୁ ଶେଷ ଅଙ୍କଟି ସୁବିଧା ହେଲା କି ? ବିଧାତାଙ୍କୁ ଜଣା । ଲୋକେ କହନ୍ତି, ସେକ୍‌ସପିଅର ତାଙ୍କ ନାଟକର କୁଶୀଲବମାନଙ୍କ ପ୍ରତି ଏହିପରି ଉଦାସୀନ, କାମ ସରିଲେ ବେକରେ ହାତ ଦେଇ ସୁବିଧାରେ ଠେଲି ଦେବାକୁ ତାଙ୍କର ଆପତ୍ତି ନାହିଁ । ପାଲୋନିୟସ୍ ହ୍ୟାମଲେଟ୍ ନାଟକରୁ ଠିକ୍ ସେହିପରି ତଡ଼ା ଖାଇଲେ, ତାଙ୍କର କାମ ସରିଲା— ଦେ ଓଲଟା ମୂଷା କେଉଁଠିବା ବାହାନାରେ ହ୍ୟାମଲେଟ୍ ତାଙ୍କୁ ପଠାଇଦେଲେ ଆରପାରିକି । ବୁଢ଼ାଲୋକ, ପୁଣି ଏମିତି ସେମିତି ନୁହନ୍ତି, ରାଜ୍ୟର ବଡ଼ ମନ୍ତ୍ରୀ, କିନ୍ତୁ ନାଟ୍ୟକାରଙ୍କ ରାଜ୍ୟରୁ ତାଙ୍କ ପାଳି ସରିଲା । ତା ପରେ ଏ ଚକଚକିଆ ବୁଢ଼ାଙ୍କର ଆଉ କିଛି ପ୍ରୟୋଜନ ରହିଲା ନାହିଁ; ଅତଏବ ସେକ୍‌ସପିଅର ବିବ୍ରତ ହୋଇ ଅକାରଣ ବିନା ଦୋଷରେ ପଲୋନିୟସ୍‌କୁ ମାରି ପକାଇଲେ । ଟୋପାଏ ଲୁହ କିଣ ପଡ଼ିଲା ନାହିଁ, କଲମ ଥରିଲା ନାହିଁ ସୂଚାଖିଏ ସୁଦ୍ଧା—ନା, ପଲୋନିୟସ୍ ବିଦା ହେବେ ।

ଶେଷ ଅଙ୍କର ବିଗ୍ଭର ହେବ, ମୂଳ ଆଉ ମଝି ଘେନି ଏଇ ଆମର ସାଧାରଣ ଧାରଣା । ସବୁ ଯେମିତି ଗୋଟାଏ ଜମର ଗତି । ମୂଳରୁ କଳାର ଯେଉଁ ଅବଧାରଣାର ଶୁଭ ଦିଆହେଲା, ମଝିକୁ ଆସିଲା ବେଳକୁ ତାର ଗତି କେତେ ଅଂଶରେ ମାଫ୍ ଦିଆ ସରିଛି । ଶେଷରେ ଘଟନା ଯାହା ହେଉ ପଛେ, ଶେଷ ଅଙ୍କର ଜମ ସେଇ ବନ୍ଧା ବାଟର ଶଗଡ଼ ଗୁଳାରେ ଗଡ଼ି ଗ୍ଭଲିବ । ବସନ୍ତ ଆସିଛି, କୋଇଲି ଗ୍ଭବିଲାଣି, ନୂଆ ପତ୍ରର ଫାଙ୍କେ ଫାଙ୍କେ ଆମ୍ବ ମେଲିଲାଣି ବଉଳ, ଭବିଷ୍ୟତରେ ଆମ୍ବ ଫଳିବ ଏଇ ତ ସହଜ ଧାରଣା । କିନ୍ତୁ—କୁହୁଡ଼ି ଘୋଟେ, ପହିଲି ଅଙ୍କରୁ ମଝିଗଡ଼ି ଶେଷ ଯାକେ କେତେ ଘଟନା ନ ଘଟିଛି । ଅନ୍ଧାର ଥିଲା, ଆଲୁଅ ଅସୁଛି । ରାମବନବାସ ସରି ଆସିଲା । ଗୋଟି ଗୋଟି ହୋଇ ଅସୁର

ଗଡ଼ିମଲେ । ସମୁଦ୍ର ଅସୁର ରକ୍ତରେ ହେଲା ରଙ୍ଗା । ସୁନେଲି ଲଙ୍କାର ଅଟ୍ଟାଳୀ ଛୁଇ ସ୍ୱର୍ଗି ଚୂଳ ହେଲା ଛାରଖାର । ଏଇ ହେଲା ଶେଷ ପରିଣତି, ପାପର ପ୍ରାୟଶ୍ଚିତ୍ତ । ଅଯୋଧ୍ୟା ପୁରୀର ଆନନ୍ଦ କୋଳାହଳ, ଦେବମାନବଙ୍କର ସ୍ତୁତି ଗୀତ, କେଡ଼େ ଚମତ୍କାର ପରିଣତି ! ସେ ଦିନର ଅଭିଷେକ; କେଡ଼େ ଆଡ଼ମ୍ବର, ଆକାଶ-ବିମାନ ଦେଖିବାକୁ ଅଯୋଧ୍ୟାରେ ଲୋକାରଣ୍ୟ । ସ୍ଥାନେ ସ୍ଥାନେ ମକଲିସ ବାଦସାହୀ ଚହଲ । ଝଣ୍ଡା, ଧନୁ, ଭୁଷା, କେଞ୍ଚା, ଅସ୍ତ୍ରଶସ୍ତ୍ର ଧରି ଭାରତ ଅ-ଭାରତର ହର୍ ରଙ୍ଗି ପଲ୍ଟଣ, ବଡ଼ ବଡ଼ ସେନାପତି, କପ୍ତାନ୍ ମେଜର୍ ଫିଲ୍ଡ୍ ମାର୍ଶାଲ ଅସୁର ବିଭୀଷଣ, କପି-ଧ୍ୱଜ ସୁଗ୍ରୀବ; ଭଲ୍ଲୁ-ଧ୍ୱଜ ଜାମ୍ବବାନ, କେତେ ଜାତି, କେତେ ଭାଷା । କାହିଁ ହନୁମାନଙ୍କର କୁସ୍ତି କସରତ ଲାଗିଛି, କାହିଁ ଲାଗିଛି ଦେଶଦ୍ରୋହୀ ବିଭୀଷଣଙ୍କର ବକ୍ତୃତା, କେଉଁଠି ଋଷିମାନଙ୍କର ଯଜ୍ଞ, ଟେବୁଲ-ଟକ୍, ବିଶ୍ୱାମିତ୍ର କଡ଼ମଡ଼ କରି ଘେରିବାଉଛନ୍ତି ଅଣ୍ଡିରି ବାଛୁରିର ସ୍ତୁତି, ବାଙ୍ଗ ଆଉ ଯୁଦ୍ଧ ବାଜାରେ ଅଯୋଧ୍ୟା ଉଲୁସି ଉଠୁଛି, ଦେବତାମାନେ ନାଟ ଗୀତ କରୁଛନ୍ତି । ଏଇ ଆନନ୍ଦ ହିଁ ଅଯୋଧ୍ୟା ଶେଷ ପରିଣତି । କିନ୍ତୁ ନା—ମଙ୍ଗଳ ଦୁଆର ଆଗରେ ପଡ଼ିଲା କାହାର ଛାଇ, ମଙ୍ଗଳ ଶଙ୍ଖଧ୍ୱନିରେ ମିଶିଲା କାହାର ବିଳାପୀ କୋହ, ଚନ୍ଦନଅଗରୁ ଧୂଆଁରେ ପଶିଲା କାହାର ରୁଦ୍ଧ ବେଦନାର ଦୀର୍ଘ ନିଃଶ୍ୱାସ । ଫୁଟିଲା ଫୁଲ ମଉଳିଗଲା, ପରିଣତିର ଜନ୍ମ ଗଡ଼ିଗଲା ବନ୍ଧାବାଟ ଶଗଡ଼ ଗୁଳାରୁ । ତା ପରେ—ଅରଣ୍ୟ ଉତ୍ତରଚରିତ ।

ମନ ଭିତରେ ଆପଣା ଆପେ ପ୍ରଶ୍ନ ଉଠେ—ରାମାୟଣ କାବ୍ୟର ଶେଷ ଅଙ୍କ ଲମ୍ବିଗଲା କାହିଁକି, ଶେଷ ଅଙ୍କ ଉତ୍ତରଚରିତରେ ପଡ଼ିଲା ବା କାହିଁକି ? ଉତ୍ତର ହୋଇପାରେ (ଯଦି ରାମାୟଣକୁ ଇତିହାସ ନ ଭାବି ଖାଲି କାବ୍ୟ ବୋଲି ଧରିଯାଏ) ଯେ, କବି କରୁଣ ରସର କଳା ଦେଖାଇବାକୁ ଇଚ୍ଛା କଲେ । କବି ଏପରି ଘଟନ କରି କେତେଗୁଡ଼ିଏ ଗୁଣ ବା କେତେଗୁଡ଼ିଏ ନୂଆ ଭାବ ଫୁଟାଇବାକୁ ଇଚ୍ଛା କଲେ; ତେଣୁ ଏପରି କଲେ; କିନ୍ତୁ ଏହାର ଯଥାର୍ଥତା କେଉଁଠି ରହିଲା ? ସୀତା ବନବାସ ଯିବେ କାହିଁକି ? ସୀତା ବନବାସରୁ ଫେରିଲେ ପୁଣି ଭୂଇଁରେ ପଶିବେ କାହିଁକି ? ଅଯୋଧ୍ୟାପୁରୀର ଉଜ୍ଜ୍ୱଳ ପତାକା ମଉଳି ପଡ଼ିବ କି ଦୋଷରେ ?

କାରଣ କିଛି ନାହିଁ—ଖାଲି ଏପରି ଘଟେ । ଏଣୁ ଆଉ ମଣି ଶେଷ ଅଙ୍କର ପରିଣତି ଗଢ଼ିବାକୁ କେତେ ଦୂର କ୍ଷମ, ସେ ବିଷୟରେ ସନ୍ଦେହ ଅଛି । ସାହିତ୍ୟର ଫଳାଫଳରେ ଯଥାର୍ଥ୍ୟ ବା (Poetic justice) ସାହିତ୍ୟିକ ନ୍ୟାୟ ବିଚାରର ବାସ୍ତବିକ କିଛି ନାହିଁ । ଖାଲି ଗାଳୁକଥାଗୁଡ଼ାକ ମିଛ, ମିଛକଥାଗୁଡ଼ାକ

ଗାଲୁ । ସାହିତ୍ୟିକ ନ୍ୟାୟବିଚାରର ସପକ୍ଷରେ ଆଉ ବିପକ୍ଷରେ ବହୁତ କଥା କୁହାଯାଇପାରେ; କିନ୍ତୁ ଏପରି ନ୍ୟାୟ ବିଚାର ଖାଲି ଲେଖକଙ୍କ ଖିଆଲ ଉପରେ ନିର୍ଭର କରେ । ବାସ୍ତବିକ ଜୀବନରେ ଏପରି ନ୍ୟାୟବିଚାରର ସ୍ଥାନ କାହିଁ ? ଶେଷ ପର୍ଦ୍ଦା ଯେତେବେଳେ ଖସେ, ସେତେବେଳେ କେତେଟା ଦୁଷ୍ଟ ଲୋକ ଶାସ୍ତି ପାଇଥାନ୍ତି; ଆଉ କେତେଟା ସାଧୁ ଲୋକ ପୁରସ୍କାର ପାଇଥାନ୍ତି । ଖାଲି ମଣିଷର ଆଶା- ଏପରି ହେଲେ ହୁଅନ୍ତା । ଲେଖାଳି ପଢ଼ାଳି ନିଜେ ନିଜର ଖିଆଲର ମର୍ଜି ଯୋଗାନ୍ତି । କଥାର ନାୟକ ନିଶ୍ଚୟ ହଜାରେ ବିପଦ ଭେଦି ନାୟିକାକୁ ଘେନି ସାତ ସମୁଦ୍ର ସେପାରିରୁ ଫେରି ଆସିବ; ଯେତେ ଯାହା ହେଉ ଫଳାଫଳ ଯେପରି ସ୍ୱତଃସିଦ୍ଧ । ଆରମ୍ଭ ଆଉ ମଝିର କ୍ରମ ଘେନି ଶେଷର ନିଷ୍ପତ୍ତି ଅସମ୍ଭବ । ସଳଖ ଚକରେ ଅଛୁ ବାଙ୍କ । ଏଇ ତ ଦୁନିଆର ନିୟମ ।

ଅସମ୍ଭବ, ଅମାପ—ଏ ଯେପରି ସମ୍ଭବ, ମପାଚୁପା ସ୍ୱତଃସିଦ୍ଧ ସେପରି ସମ୍ଭବ ନୁହେଁ । କଳାଶକ୍ତିର ପ୍ରେରଣାରେ ଶିଳ୍ପୀ ଯେଉଁ ମୂର୍ତ୍ତି ମାରିଦିଏ, ବେଳେ ବେଳେ ଅସମ୍ଭବ ହେଲେ ବି ସେଇ ମୂର୍ତ୍ତି ଠିକ୍ । ଗଣିତର ଗଣନା ଉପରେ ନିର୍ଭର କରି ଯେଉଁ ଶେଷ ଅଙ୍କ ପଡ଼େ, ସେ ଖାଲି ମନଭୁଲାଣି । ଆରମ୍ଭରେ ପିଲାଟି ହେଲା ଅତି ଭଲ । ମଝିରେ ଯୌବନରେ ହେଲା ଅତି ସାଧୁ । ଶେଷରେ ସେ ସାଧୁ ନ ରହିବା ବି ସ୍ୱତଃସିଦ୍ଧ—ଯଦି ତା ନିଜ ଭିତରେ ଜୀବନ ଥାଏ, ଯଦି ସେ କଳକବଜା ପରି ମଣିଷ ନ ହୋଇଥାଏ ।

ତେଣୁ ଦେଖିବାକୁ ହେବ, ପୂର୍ଣ୍ଣଚ୍ଛେଦ ପଡ଼ିଲା କେଉଁଠି । ଯେଉଁ ଆରମ୍ଭ ଆଉ ମଝିକୁ ମୂଳରୁ ଆମେ ଆରମ୍ଭ ଆଉ ମଝି ବୋଲି ଧରି ନେଇଛୁଁ, ସେହି ପ୍ରକୃତ କଥା ନା ତା ଉପରେ ଆଉ କିଛି ଅଛି ? ଯେତେବେଳେ ସାଧାରଣ କ୍ରମ ଅନୁସାରେ ହିସାବ କରି ଦେଖିଲେ ମୋଟାମୋଟି ଅନୁମାନ ଉପରେ ଯାଇ ଭୁଲରେ ପଡ଼ିବାକୁ ହେଉଛି, ସେତେବେଳେ ତା ଉପରେ ବିଶ୍ୱାସ ତୁଟାଇବାକୁ ହେବ । ଯେଉଁ କ୍ଷୀଣ କ୍ରମ ଆଖି ଆଗରେ ପଡ଼ୁନାହିଁ, ଯେଉଁ କାରଣ-ସୂତ୍ରର ଅସ୍ପଷ୍ଟ ମନ ଉପରେ ଧୀର ଗାର ସୁଦ୍ଧା ଟାଣି ନାହିଁ, ତାକୁ ଖୋଜି ବୁଲିବାକୁ ପଡ଼ିବ । ଧରାବନ୍ଧା ଦାମ୍ (accepted values) ଛାଡ଼ି ଦେଲେ ଭୂଇଁତଳୁ ତ ମାଟି ଖସିଗଲା, ତେବେ ଆଶ୍ରା କାହା ଉପରେ ? ଅନ୍ଧାରି ସତ୍ୟକୁ ଆଶ୍ରା କରି ଦେଖି ବୁଲିଲେ କେଉଁଟା ଆଗ, କେଉଁଟା ମଝି, ସେ କଥା ପାସୋରି ପକାଇବା । ହୁଏତ ଯେଉଁ କ୍ରମ ଆଖି ଆଗରେ ରହିଛି, ତାରି ଭିତରେ କେତେ ପୂର୍ଣ୍ଣଚ୍ଛେଦ, କେତେ ଡ୍ୟାଶ୍ ପଡ଼ି ସାରିଲାଣି ।

ତେଣୁ ବେଳେ ବେଳେ ସନ୍ଦେହ ହୁଏ, ଶେଷ ପୂର୍ଣ୍ଣଚ୍ଛେଦ କେଉଁଠି ? ଶେଷ ଅଙ୍କର ଯେଉଁ ଦୃଶ୍ୟ ଉପରେ ପର୍ଦ୍ଦା ପଡ଼ିଲା, ସେଇ କଣ ପୂର୍ଣ୍ଣଚ୍ଛେଦ ନା ସେ ଖାଲି ଗତିଶୀଳ କ୍ଷଣ ମଝିରେ ଗୋଟିଏ ସାଧାରଣ ଅବସ୍ଥା ? ଯେଉଁ ଲୋକଙ୍କ ଇଚ୍ଛା ଅଭିଳାଷ ଘେନି ମଣିଷ ଏ ଜୀବନରୁ ବିଦାୟ ନିଏ, ସେଇ କଣ ତାର ଶେଷ ନା ଜୀବନର ଶେଷ ପାଖରେ ତାର ଆଉ କିଛି କ୍ଷଣ ରହିଛି ? ଜୀବନଟାର ଯେତେଗୁଡ଼ିଏ କାରଣ ସତ୍ତ୍ୱ ସେ ସବୁ ନିଜେ ତ ଥିଲେ ଜୀବନ୍ତ । ତେବେ ମଲାପରେ ହଠାତ୍ ତାଙ୍କର କ୍ରିୟା ଶେଷ ହୋଇଗଲା କି ? ପରିଣତି କଣ ମିଳିବ ପ୍ରେତପୁରୀର ପ୍ରେତଲୀଳାରେ ଅବା ବିଗତ ଯୁଗରେ ସଞ୍ଚା ରହିଲା ମଲା ଲୋକର ଯେଉଁ କ୍ରିୟାର ଅନୁଭୂତ ସେଇ ଅନୁଭୂତିର କ୍ରିୟାଶୀଳ ପକ୍ୱତାରେ ? ମଲାପରେ ମଣିଷର ଯେଉଁ ସ୍ମୃତି ଥାଏ, ସେଇ କଣ କାମ କରେ, ସେଇ କଣ ପରିଣତି ଆଣେ ? ନା ଆଉ କିଛି !

ଶିଳ୍ପୀର କଳା ସେହିପରି ! ନାଟକର ଶେଷ ଅଙ୍କ impressionର ମୂର୍ତ୍ତିମନ୍ତ ନୁହେଁ । ହୁଏତ ଅନ୍ୟ ଘଟଣା ପରି ସେ ଖାଲି ଗୋଟାଏ episode । ସଙ୍ଗୀତ ଶେଷ ହେଲେ ମନ ଭିତରେ ଯେପରି ରାଗିଣୀର ଗୁଣ ଆବୃତ୍ତି ହେଉଥାଏ, ନାଟକର ଶେଷ ଦୃଶ୍ୟ ପରେ କେତେ ଅବଧାରଣା ରହିଯାଏ ବାକି, ମନକୁ ମନ ଭରିବାକୁ ହୁଏ; କେତେ ଆହ୍ୱା ଉତ୍ସ, କେତେ anticipations, କେତେ forecasts, ଶେଷ ଅଙ୍କ ଗୋଟାଏ ସଙ୍କେତ ପରି । ସଙ୍କେତ ପରିଣତି ନୁହେଁ, ସଙ୍କେତ ଦେଖାଏ ପରିଣତିର କ୍ଷଣ । ପୂର୍ଣ୍ଣଚ୍ଛେଦ ଠିକ୍ କେଉଁଠି ପଡ଼ିଲା, ଅଗ ମଝି ଧରି ବାଛିଦେବା ସେତେ ସହଜ ନୁହେଁ ।

ହୁଏତ ଅଗ ମଝି ଶେଷ କିଛି ନାହିଁ । ସତେ ଯେପରି ସବୁ କଳା, ସବୁ ଲୀଳା ଗୋଟାଏ ଗୋଟାଏ କ୍ଷଣିକ ଅବସ୍ଥା । ଅଗ ନାହିଁ ମୂଳ ନାହିଁ, ସବୁ ଖାଲି ମଝି ତାର, ଦରିଆର ଲହଡ଼ି ।

କୋଇଲିର ଗୀତ ଶୁଣିଥିବେ, “ଗହଳ ପତର ଫାଙ୍କେ, ବାଟ ତାର ଚରି ଚରି ।” ଗୀତ ସରିଲା, କୋଇଲି ଗଲା ଉଡ଼ି; ଯୁଗ ଯୁଗର ଚିର ସ୍ପନ୍ଦନ ମଝିରେ ସେହି ଗୀତର ସ୍ମୃତି ରହିଗଲା । ଶେଷ ତାର କେଉଁଠି ? ଏଇ ଆରମ୍ଭ ତ ତାର ଶେଷ, ଖାଲି ଗୋଟାଏ ସ୍ମୃତିର ସ୍ପନ୍ଦନ । ଜୀବନର ନିତିଦିନିଆ ଘଟଣା, ସବୁ ଗୋଟିଏ ଗୋଟିଏ ଘଟଣା, ସବୁ ଯେମିତି ଝଡ଼ି ଅଭୁତର ଉଡ଼ିଲା ପତର । ସମ୍ବନ୍ଧ ତାର କେଉଁଠି ? କିଏ କାହାର କଣ ? କିଏ କାହାର ଅଗ ଶେଷ ? ମଝି ଦରିଆରେ ଲହଡ଼ି ଉଠେ, ଗୋଟାକ ପରେ ଗୋଟାଏ—ଆଦି ନାହିଁ, ଅନ୍ତ ନାହିଁ । କଳାର ଅବଧାରଣା ତ ଠିକ୍ ସେହିପରି । କଳା ଶିଳ୍ପର

ଅବଧାରଣା ହୁଏ ଉଚ୍ଛ୍ୱାସରେ । ଉଚ୍ଛ୍ୱାସର ପୁଣି ଅଗ ମୂଳ କଣ ? ଅଛିଣ୍ଡା, ଅଯୋଡ଼ା; ଯେଣୁ ସବୁଦିନେ ନୂଆ, ସବୁଦିନେ ଆଶାସ୍ପୀ, ସବୁଦିନେ ଜୀଅନ୍ତା । କଳାର ଶେଷ, କଳାର ଅବଧାରଣାର ଉଜୁଆଁରେ । ସେ ଉଜୁଆଁ କେବେ ହୁଏ ନାହିଁ । ଯେତେ ଧରିଲେ ରହିଯାଏ ଅଛୁଆଁ । ମନର ସ୍ତର ଅନୁସାରେ, ଅବସ୍ଥା ଅନୁସାରେ ନୂଆ ନୂଆ ଅନୁଭୂତ ହେଉଥାଏ; ଶେଷ ପାଇଁ ଭାବ ହେବା ବୃଥା ।

ପର୍ଦ୍ଦା ପଡ଼ିଲା; ଗୋଟାଏ ନାଟକର ସବୁ ମୂର୍ତ୍ତୀ ଏକାଠି କରି ମୁଣ୍ଡି ମରି ହେଲା । କେତେଟା ଘଟନାରେ କଥାବସ୍ତୁର କ୍ରମରେ ଶେଷ ପରିସ୍ଥିତ ଘନେଇ ଆସିଲା । ତା ପରେ—ମୋ କଥାଟି ସରିଲା, ଫୁଲ ଗଛଟି ମରିଲା । ଶେଷ ଅଙ୍କ ସରିଲା; କିନ୍ତୁ Impressionର ଅଗ ମୂଳ ନାହିଁ । ଯେଉଁ ସ୍ପଷ୍ଟ କ୍ରମବିକାଶର ଶେଷ ପର୍ଦ୍ଦାପାକେ ଖୁଲିଆସିଲା, ତାର ଅଖି ରହିଲା ଭବିଷ୍ୟତକୁ, ତାର ପ୍ରବଣତା ଖୁହିଁଲା ଆଗକୁ । ରାମ ବନବାସ ପରେ ସୀତା ବନବାସ ସରିଲା; ତଥାପି ଆଗକୁ ରହିଲା ରମର କ୍ରମ । ରାମ ରାଜା ପରେ ଶ୍ୟାମ ରାଜା ହେଉ କ୍ଷତ ନାହିଁ; କିନ୍ତୁ କଳାର ବାଡ଼ା ବନ୍ଦୀ ହୁଏନାହିଁ ଘଟନାର ମୋଟା ଖୁଣ୍ଟିରେ । ରସର କ୍ରମିକ ଉଚ୍ଛ୍ୱାସ ରହିଲା ଅପୂର୍ଣ୍ଣ ।

ଶେଷ ଅଙ୍କ ବାସ୍ତବିକ ଶେଷ ଅଙ୍କ ନୁହେଁ; କିନ୍ତୁ ସାଧାରଣ ଆଖିରେ ଶେଷ ଅଙ୍କ ଗୋଟାଏ ସୀମା ବରଂ ଦୋସମାଲି । ସେପାଖେ କଣ ଅଛି, କଣ ହେବ, ସେ କଥା ଭାବିବା ସୁବିଧା ନୁହେଁ ବା ଅସମ୍ଭବ । ଏ ପାଖର କାମ ସରିଲା । ଉଚ୍ଛ୍ୱାସର କ୍ରମିକ ପ୍ରବଣତା ଯେଉଁ ଭବିଷ୍ୟତକୁ ଖୁହିଁ କଳାର ଅବଧାରଣା କରିବା ସମ୍ଭବ ହୋଇ ପାରିବ ନାହିଁ । ଦେଖାପରଖା ଜଣାଶୁଣା ଅଂଶର ମୂର୍ତ୍ତିମନ୍ତ ହେଲା, ଅଶୁଣା ଗୀତ ବାକି ରହିଲା, ଶୁଣା ଗୀତର ଧାର ସରିଲା ।

ତଥାପି ଶେଷ ଅଙ୍କ is more important. ସଞ୍ଜ କାଳକୁ ଗାଢ଼ ଭରି କଳା ମେଘର ପର୍ଦ୍ଦା ଓହ୍ଲାଇ ଆସେ; ହସିଲା ହସିଲା, ଥରିଲା ଥରିଲା ଧାନ କ୍ଷେତ ଉପରେ ଦିନର ଆଖି ବନ୍ଦଯାଏ; ଦୂର ଦେଉଳର ଚୂଡ଼ା ମିଶିଯାଏ ଦିଗ୍‌ବଳୟ ମେଘ କୋଳରେ । ଯେତକ ରହିଲା, ସେ ରହିଲା ଅଛପା; କିନ୍ତୁ ଯେଉଁ ସ୍ପଷ୍ଟ ଯେଉଁ ଦିନର ଆଲୁଅ ଲୋକ ଅଖିରୁ ବିଦାୟ ନେଲା, ଅନ୍ଧାରର ତଳପର୍ଦ୍ଦା (back ground) ଉପରେ ସେତକ ରହିଲା ପରିସ୍ଫୁଟ, ସେତକ ଯେପରି ଅନାଦିକାଳର ସଙ୍କେତ । ଦୁନିଆର ସାଧାରଣ ଲୋକ ଅନ୍ୟ କିଛି ବୁଝେ ନାହିଁ । ଗାଈଗୋରୁ ତଡ଼େଇ ଘର ଫେରି ସେ ବୁଝେ ଦିନ ସରିଲା; ସରିଲା—ହେଇ

ଧାନ କ୍ଷେତ ଉପରେ ଶେଷ ଚକମକ ଆଲୁଅ, ଦୂର ଦେଉଳ ଉପରେ ତାହାର କାଳିଆ ହାତଚ ଛାଇ; ସେତକ ଯେନ ଧନ ବନ୍ଧା ହେଲା । କଳାର ଶେଷ ଅଙ୍କ ଠିକ୍ ସେହିପରି । ଉପର ଝମିକ ଉଚ୍ଛ୍ୱାସର ପ୍ରବଣତା ଦେହ କାଟି ଛାଟି ବାଛବୃଛ ବୁଝିବାକୁ ଚେଷ୍ଟା କରେ ନାହିଁ, ଶେଷ ପର୍ଦ୍ଦା ତଳର ଯେଉଁ ବିରହି ଆଖିର ଲୁହ ଟୋପା, ଶେଷ ହତାଶାର ଉଚ୍ଛୁଳା କୋହ, ଶେଷ ଚୁମ୍ବନର ମିଳନ ରେଖା, ସେତକ ତା ମନରେ ଚିତ୍ର କରେ, ସେତକ ସମ୍ବଳ ଯେନ ସେ କଳାଠାରୁ ବିଦାୟ ନିଏ ।

ଶେଷ ଅଙ୍କ ସୁଖର ହେବ ନା ଦୁଃଖର ହେବ, ଏହାର ବିଚାର ନିର୍ଭର କରେ ଶେଷ ଅଙ୍କର tendencies ଗୁଡ଼ିକ ବୁଝିବା ଉପରେ । ସେ ଯେଉଁ ପ୍ରକାରେ ତାର ଅର୍ଥ କଲା, ସେହି ପ୍ରକାରେ ସେ ଦେଖିବ । ହସ ରସ ଲାଗିପାରେ କାରୁଣୀ ପରି; କାରୁଣୀ ଲାଗିପାରେ ହସ ରସ ପରି । ଅଚ୍ଛଣ୍ଣ ରହିଲେ ଗଢ ବରଂ ହୁଏ କରୁଣ ଆଡ଼କୁ । କାହିଁକି ନା, ମନ ଭିତରେ ସନ୍ଦେହ ଆସେ, ଭୟ ଆସେ, ସାତ ପାଞ୍ଚ ଭାବ ହେବାକୁ ହୁଏ । କରୁଣ ରସର ସାଧାରଣ ଉପାୟରେ ମୃତ୍ୟୁ ମଗ୍ନ ହେଲେ ସବୁ ସାଧାରଣ ସହଜ ଜଣାପଡ଼େ । ଦଶଟା ମଲେ ବା କୋଡ଼ିଏଟା ଦହିଗଞ୍ଜ ହେଲେ, ଯେତେ ଦୁଃଖ ହେଲେ ବ ସବୁ ରହେ ଜଣାଶୁଣା; ତେଣୁ ଅମପା ବାଟଘାଟର କୁହୁଡ଼ିଆ କୁହୁଡ଼ିଆ ଯେଉଁ ବଡ଼ କାରୁଣୀ ତାର ଭାବ ସେତେ ସୁବିଧାରେ ଆସେ ନାହିଁ ।

ଶେଷ ଅଙ୍କରେ ଦୁଃଖ ପରିବର୍ତ୍ତେ ସୁଖ ରଖିଲେ ଭଲ । ଏଥିଲାଗି ସେ ସାହିତ୍ୟର ମଣିଷ ଉପରେ ଆଶ୍ୱାସନାର ଭଲ ଫଳ ଜଣାପଡ଼େ—ମଝିରେ ଯେତେ କରୁଣ ରସ ଥାଉ ପଛେ ଭଲ ଲାଗେ । ଆଶା ଥାଏ, ଶେଷରେ ଟିକିଏ ସୁଖ ଦେଖିବାକୁ । ଅରେ କଳା-ଶକ୍ତିର ମନ୍ଥ ଆଡ଼କୁ ଝୁଙ୍କିଲେ ମନ ତେଣେ ବନ୍ଧା ରହିଯାଏ । ସେଇ ଚମକରେ ଯଦି ଶେଷରେ କେବଳ ଦୁଃଖହିଁ ହୁଏ ସାର୍, ତେବେ ଅକାରଣ ଦୁଃଖର ବୋଝ ଭାର ହୁଏ । ଜଡ଼ ଟ୍ରାଜେଡ଼ି ଦୁଃଖ ଅନୁଭୂତ ଭିତରେ ସୂକ୍ଷ୍ମ ଭାବରେ ଦେଖା ପରଖା ଜନକର ଆରପାଖେ ଯେଉଁ ଅଦେଖା ଅଶୁଣା ଅଜଣା ବଡ଼ ବଡ଼ ଭାବ ରହିଛି, ତାର ପରଶ ଦିଏ । କଳା ହିସାବରେ ସେ ଅତି ଉଚ୍ଚ; କିନ୍ତୁ ସାଧାରଣ ଲୋକର ସାଧାରଣ ଜୀବନରେ ତାର ବେଶୀ ଉପକାର ହୁଏ ନାହିଁ । ସଂସାରରେ ବଡ଼ ଆଶା ଯେନ ଯୁଝି ବଞ୍ଚିବାକୁ ହେଲେ ନିଜର ବଡ଼ ଆତ୍ମପ୍ରସାଦ ଥିବା ଦରକାର; ଦରକାର ନିଜର ଅଣ୍ଟା ଭିଡ଼ି ବଡ଼ ବଡ଼ ଅଛୁଆଁ ଶକ୍ତି ବିରୁଦ୍ଧରେ ସଂଗ୍ରାମ ଅଭିଯାନ ଚଳାଇବା । କରୁଣ ରସ ସହିତେ ଯେପରି ଗୋଟାଏ ବଡ଼ ଧର୍ମଭାବ । ମଣିଷର ବନ୍ଧା ବାଡ଼ରେ

ସେ ଗୋଦା ଖୋଳେ, ଯେଉଁ ଉଇହୁଙ୍କାକୁ ଛୋଟ ମଣିଷ ପ୍ରାହାଡ଼ ମନେ କରି ଆସିଛି, ତା ସେପାଖେ ଛିଡ଼ାକରେ ବରଂଟ ହିମାଳୟ, କଳାବତ୍ତର ଖୁବ୍ ଉନ୍ନତ । ସେ ଧୀରେ ଧୀରେ ସତ୍ୟ ଆଡ଼କୁ ଗତିକରେ । ତେଣୁ ନିଜକୁ ନିଜେ ସ୍ୱସ୍ତି ଖୁସି ପାଏ । ଦୁନିଆର ଲୋକର ଯେତେ ଉନ୍ନତ ନୁହେଁ, ଯେଉଁ ଠକେଇକୁ ସତ ବୋଲି ସେ ହାମୁଡ଼ି ଧରି ଡଡଲି ବୈତରଣୀ ପାରି ହେଉଛି, ତା ଉପରେ ହାତର ଜାବ ହୁଗୁଳା ହୁଏ । ଦୁନିଆର ଲୋକ ଗୃହେଁ ଆଶା, ସାହସ, ବିଶ୍ୱାସ । ଯେଉଁ ବିଶ୍ୱାସରେ ମଣିଷ ମନେ ମନେ ଆକାଶୀ ସଉଧ ତୋଳି ଆସିଛି, ତାକୁ ତଳେଇ ଦେଖିଲେ ସେ ତ ତାସ୍-ଘର ପରି ମୂଳରୁ ଉପୁଡ଼ି ଅଜାଡ଼ି ହୋଇ ପଡ଼ିବ । ତେଣୁ ତାର ଘରକରଣା ଆଇନରେ ସବୁ ମନ-ନରମା କଳା-ଅନୁଭୂତି ଗୋଟାଏ ଗୋଟାଏ ଦୁର୍ବଳତା । ଏ ଯୁଗର ବସ୍ତୁବାଦ ସେହି ଗୁଣରୁ ସୂକ୍ଷ୍ମକଳାକୁ ହତାଦର କରି ଆସିଛି; ଚମତ୍କାରୀ ଗୁଣକୁ ଦୂରରେ ଦୂରରେ ରଖି କରଛଡ଼ା ଦେଇ ଆସିଛି ।

ତେବେ ଏ ଯୁଗର ବସ୍ତୁବାଦ ଉପରେ ନିର୍ଭର କରି ବା କଳା ଛାଡ଼ି ଅନ୍ୟ କୌଣସି ହିତ ଉଦ୍ଦେଶ୍ୟରେ ସାହିତ୍ୟ ଉପରେ ଆଇନ୍ ଜାରି କରିବା ଯେ ବିଶେଷ ବୁଦ୍ଧିର କଥା, ତା ନୁହେଁ । ଭଲ ହେଉ ମନ୍ଦ ହେଉ ସତକୁ ଡରି ଡରି ପଛକୁ ପଳାଇବା ମଣିଷପଣିଆ ନୁହେଁ । କଳା ତା ନିଜର ଗତି ଧରିବ—ସୁଖର ହେଉ ବା ଦୁଃଖର ହେଉ । ମଜଲିସି କଳା-ପୋଷିକା ସାହିତ୍ୟ କୌଣସି ଯୁଗରେ ବଡ଼ କଳା ନୁହେଁ ବା ବଡ଼ ସାହିତ୍ୟ ନୁହେଁ ।

ଶେଷ ଅଙ୍କର ଗୁଣ ନିର୍ଭର କରେ ତାର କଳା ହିସାବରେ ମୂଲ୍ୟ ଉପରେ । ବଡ଼ କଳାର ସାଧାରଣ ଗୁଣ, ମଣିଷର ହୃଦୟ-ତାରରେ ଆଘାତ କରି ଗୀତ ଗାଇ ଗାଇ ଗ୍ଲୁଲିଯିବ । ପ୍ରକୃତ ଅନୁଭୂତି ନ ଆସିଲେ କଳା ଅସମ୍ଭବ —'ସ୍ୱତେ ବଦାମି'—ଫୋଡ଼ହେଲେ ଗୀତ ଗାଏଁ (ବେଦ) ଫୋଡ଼ ନହେଲେ—? ଲକ୍ଷେ ଗୁଣ ଦେଖାଇଲେ କିଛି ଫଳ ନାହିଁ, ଯଦି ପ୍ରକୃତରେ ଅନୁଭୂତି ନ ଆସିଥାଏ । ମଣିଷର ଗୁଣ, ମଣିଷର ନିତିଦିନିଆ ଆକର୍ଷଣୀ, ମୂଳର ଅନୁଭୂତି ଏଇତ କଳାର ଉପାଦାନ । ତା ଉପରେ ତର୍କ ଗ୍ଲେ ନାହିଁ । ତା ଉପରେ ବଡ଼ କରି ଅମଣିଷ କଳା, ସୋପିଷ୍ଟ୍ରିର ଅଖିଟ୍ଟଲସା ବଡ଼ ବଡ଼ ଢିମା ଢିମା କଥା, ଏସବୁ କଳା ହିସାବରେ ଅତି କମ୍ ଦାମ୍ । କଳାର ଅଗ ହେଉ, ମଝି ହେଉ, ଶେଷ ହେଉ, ସବୁଠି ଏଇ ଏକାକଥା ଖାଟେ । ଯାହା ମନକୁ ଛୁଇଁ ପାରିବ ନାହିଁ, ଯାହା ହୃଦୟର ନିତିଦିନିଆ ସୂକ୍ଷ୍ମ ଅନୁଭୂତି ନ ଦେଖାଇ ବାଜେ ଆତସବାଜିରେ ମାତେ, ସେ ଯେପରି କଳା ଆଡ଼କୁ ବା କଳା ବିରୁଦ୍ଧରେ

ଏକସ୍‌ପେରମେଣ୍ଟ—ନୂଆଶିଖାଳିର ଗଢ଼ିଆ ନୂଳରେ ହାତଗୋଡ଼ପିଟା ଏକସ୍‌-ପେରମେଣ୍ଟ୍ । କ୍ରମେ ଏ ହାତ ଗୋଡ଼ ବାଢ଼ିଆ ଭଲ ହୋଇଯିବ, ହୁଲସ୍ଥୁଳିଆ ଚମକକଲା ପରବର୍ତ୍ତେ ପୁଣି ଚନ୍ଦ୍ରାଧାର ଗଠ କରିବ ଯୁଗଯୁଗର ସେଇ ବନ୍ଧା ବାଟରେ—ଧୀରେ ସୁସ୍ଥେ ।

ଶେଷ ଅଙ୍କର ପରିଣତି କେଉଁପାଖେ, ସେ କଥା କେହି କହିପାରିବେ ନାହିଁ । ସତେ କ'ଣ କିଛି ଶେଷ ବୋଲି ଅଛି ? କିଏ କହିବ ?

ଜୀବନ ହେଉ, କଳା ହେଉ, ବାହାରର ଅଗ ଶେଷ ସେ ପାଖେ ରହିଛି, ଯେମିତ କେଉଁ ଅନ୍ଧାରମୂଳକର ହଲଚଲ ଚହଲ । କତୀ ଯୁଗର ଦରିଆ ମଝିରେ ଛୋଟ ଛୋଟ ଢେଉ । ଶେଷ କେଉଁଠି ?

ସବୁ ସେପରି Episodic, ଗୋଟିକୁ ଗୋଟି ଛଡାଛଡ ।

ଆଉ ସବୁ ଶେଷ ଯେମିତ ଅଗ୍ରେଷିଅସ୍‌ଙ୍କ ଶେଷ ଯାତ୍ରା ପରି । ସମୁଦ୍ର ଉପରେ ପାଲ୍ ମେଲି ବୋଇତ ଚାଲିଛି ।

ନ ହେଲେ ଅଗସ୍ତିଙ୍କ ଦକ୍ଷିଣାପଥ ଯିବାପରି—ବନ୍ଧୀ ପାହାଡ଼ ଗୁଣ୍ଡି ବସିଛି ।

ଏଇ ଚାଲିବାଟା ଯେମିତ ଜୀବନର ମହତ୍ତ୍ୱ । ଅନ୍ଧାର ତଳେ କାଳିଆ ପାଣି ଚହଲ କରେ, ତୋଫାନ ଉଠେ; ତଥାପି ବୋଇତ ଚାଲିଛି । ବାଟ କେତେ ?



# ନାଲି ସଡ଼କର ଢିମା

ଯାବତ ସଢ଼ାପଚା ଅସନା କଦର୍ଥନ ଭିତରୁ ପଦ୍ମ ଫୁଲଟି ଫୁଟି ବାହାରେ, ନେଳିଗ୍ର ଭୁଟ୍‌କମର ଦଳ ଭିତରୁ । ଯାବତ ଅଭାବ ଅସୁବିଧା ଦୁଃଖ ହତାଶ ଏଡ଼ି କଳାର ବାସ ଚହଟେ, କଳାର ଫୁଲ ଫୁଟି ଉଠେ—ଅସରନ୍ତି ବିରାଟ ଅସୀମକୁ ଛୁଇଁ । କାଳପାଲଟା କଳା-ଶକ୍ତି କାହାରିକୁ ଅପେକ୍ଷା କରେ ନାହିଁ । ସେଥିରେ ଓଦାକନା ଦେଇ ଓଡ଼ିଆ ତାର ଶିଳ୍ପୀ—ପ୍ରାଣକୁ ପ୍ରକଟ କରେ । ଷୋଡ଼ଶ ଶତାବ୍ଦୀର ଅଶିକ୍ଷିତ ବଳଦ ପେଣ୍ଡ୍ରେଲରେ ଦିନ ଦ’ପହରେ ମଦୁଆ ସେକ୍‌ସପିୟର ପ୍ରଚାର କଲେ ମ୍ୟାକ୍‌ବେଥ ନାଟକର ଘନ ଅନ୍ଧାରର ଗାଢ଼ କାଳିମା, ଦିନର ଆଲୁଅକୁ ଉପହାସ କରି । ଶିଳ୍ପୀ ଯେପରି ନିଜର ଆଇନ ନିଜେ ଗଢ଼େ, ଦେଶକାଳ ପାତ୍ରର ବନ୍ଧନ ଏଡ଼ି । କଳା-ଶକ୍ତି ବସ୍ତୁ-ତନ୍ତ୍ର ଭିତରେ ବନ୍ଧା ନୁହେଁ, ପ୍ରାଣ ଯେପରି ବନ୍ଧା ନୁହେଁ ରକ୍ତ ମାଂସର ଦେହ ଭିତରେ ।

କିନ୍ତୁ କଳାର ଶକ୍ତି ଯଦିଚ ଅସୀମର ସ୍ୱୟଂ ପ୍ରକାଶ, କଳାର ପ୍ରକାଶ ହେଉଛି ପ୍ରକାଶର ଆଇନରେ ବନ୍ଧା । ସାଧାରଣ ପ୍ରକାଶ କରିବାର ଯେଉଁ ବନ୍ଧା ବାଟ ଅଛି, ଯେଉଁ ଭାଷା, ଯେଉଁ ଉପାୟ, ଯେଉଁ ଅବସ୍ଥା, ମୋଟ ଉପରେ ଯେଉଁ Form, ଶିଳ୍ପୀ ତା ଛଡ଼ା ଅନ୍ୟ ବାଟ ଦେଖିପାରେ ନାହିଁ ।

ସେକ୍‌ସପିୟର ତ ଓଡ଼ିଆରେ ନାଟକ ଲେଖିଲେ ନାହିଁ, ପଣ୍ଡିତ କବି ଜୟଦେବ ତ ବଙ୍ଗଳାରେ ଗୀତ-ଗୋବିନ୍ଦ ଲେଖିଲେ ନାହିଁ; ସେମାନେ ଲେଖିଲେ ନିଜ ଭାଷାରେ । ହୁଏତ କଳାର ମୂଳ ଗୁଣ ସବୁ ମଣିଷଠିଁ ସମାନ; ତେଣୁ ସେକ୍‌ସପିୟରଙ୍କ ଉପରେ ଆମର ବି ଦାବୀ ଅଛି; ଜୟଦେବଙ୍କ କଳାରେ ବଙ୍ଗାଳୀମାନଙ୍କର ବି ଦାବୀ ଅଛି । କିନ୍ତୁ ବାହାରର ପ୍ରକାଶର ଯେଉଁ ଆବରଣ, ସେ ଆବରଣ ଯେପରି ଦେଶକାଳପାତ୍ର ସଙ୍ଗେ ବନ୍ଧା । ପ୍ରକାଶର ସେ ଆବରଣକୁ କଳାର ଗୁମ୍ଫ କୁହାଯାଇପାରେ । ହୁଏତ ଯେଉଁ ଧାତୁ ଢଳା ହେଉଛି, ସେ ଧାତୁ ଏକା—ନିଆରା ଗୁମ୍ଫରେ ନିଆରା ଆକାର ଧରେ । ସେକ୍‌ସପିୟର ଯଦି ‘ଶକୁନ୍ତଳା’ ନାଟକ ଲେଖିଥାଆନ୍ତେ, ଆଉ କାଳିଦାସ ଲେଖିଥାଆନ୍ତେ ଟେମ୍ପେଷ୍ଟ ନାଟକ, ତା ହେଲେ ଦୁଇ ଶିଳ୍ପୀଙ୍କ କଳାର ପାର୍ଥକ୍ୟ ଛାଡ଼ିଦେଲେ ସ୍ୱଙ୍କ ଦେଶକାଳପାତ୍ରରୁ ସେମାନେ ଯେଉଁ ଅଲଗା ଅଲଗା ଆବରଣ ପାଇଥିଲେ, ସେ ଆବରଣ ଗୁଡ଼ିକୁ

ଫଳ ଅଲଗା ହୋଇଥାନ୍ତା । ରାଧାନାଥ ଯଦି ଏ ଯୁଗରେ ଲେଖିଥାନ୍ତେ, ତେବେ ସେ ବୋଧହୁଏ ଲେଖି ନ ଥାନ୍ତେ "ଆମ୍ଭେ ଅମ୍ଭ ହସ୍ତସ୍ଥିତ ଭଗବାନଙ୍କୁ ତାଙ୍କ ପେଟ(?)ରେ ଭୁଷିଦେଲୁ" ।

ଏହି କାରଣରୁ ଅତୀତ ଯୁଗର ଶିଳ୍ପୀମାନେ ଦେଶକାଳପାତ୍ରର ଆବରଣକୁ ମୁଣ୍ଡପାତି ଆଭରଣ କରି ମାନି ନେଇଛନ୍ତି । ହାଲ୍‌କା କଥା, ଫକୀରମୋହନ ଏ ଯୁଗରେ ଭିନ୍ନ କଥା ଲେଖିଥାନ୍ତେ । ଏ ବର୍ଣ୍ଣାର୍ଡ ଶ ଯୁଗରେ ସେକ୍‌ସପିୟର ଅନ୍ୟ ପ୍ରକାରେ ନାଟକ ଲେଖିଥାନ୍ତେ, ଅନ୍ତତଃ ଅମିତ୍ରାକ୍ଷର ଛନ୍ଦର ସେ ଖାମ ରଡ଼ି ଛାଡ଼ି ସରଳ ଗଦ୍ୟରେ—ଏ ଯୁଗର ନାରୀ, ଯୁଦ୍ଧ ପରେ ପୃଥିବୀର ଅବସ୍ଥା, ଏ ଯୁଗର ଅକର୍ମା ସମସ୍ୟା, ଆଉ ସୋସିଏଲିଷ୍ଟ୍ ଦଳ—ଏହିସବୁ କଥା ଲେଖିଥାନ୍ତେ, ରାଜା ମହାରାଜାଙ୍କ କଥା ଛାଡ଼ି ଅଧାପେଟା ଖେଳକାଲି ଦରମଲି ଚାଷୀଙ୍କ କଥା ଲେଖି-ଥାନ୍ତେ, ଭିନ୍ନ ଭିନ୍ନ ନୂଆ ନୂଆ ବୈଜ୍ଞାନିକ ଷ୍ଟେଜ ଉପାୟକୁ ଗ୍ରହି ନାଟକ ଲେଖି-ଥାନ୍ତେ । ଲୋକେ କହନ୍ତି, ପଠାଣି ସାଆନ୍ତେ କୁଆଡ଼େ ବୁଢ଼ା ବୟସରେ ଟେଲିସ୍କୋପ ଦେଖି କାନ୍ଦିଥିଲେ, ଆଉ କହୁଥିଲେ ଯେ, ଏପରି ଯନ୍ତ୍ରପାତି ଯଦି ସେ ପାଇଥାନ୍ତେ, ତେବେ ନିଜେ ଗୋଟିଏ ହାତ-ଗଢ଼ା ଯନ୍ତ୍ର ତିଆରି ନ କରି ଅମୂଲ୍ୟ ସମୟ ଅନ୍ୟ ଉନ୍ନତ ଉପାୟରେ ଲଗାଇଥାନ୍ତେ । ଏଇ ବେଳକାଳର ବନ୍ଧା-ଗତ ହେଉଛି ଶିଳ୍ପୀର ଉପାୟ ।

ଏଇ ବନ୍ଧା-ଗତର ନାଲି ସଡ଼କ ଉପରେ ଶିଳ୍ପୀ ମାଡ଼ିଚାଲେ—ବେଳ-କାଳର ନାଲି ସଡ଼କ, ତାର ପରସର, ତାର ଜମି ଆଉ ତାର ଅବସ୍ଥା ଉପରେ ଶିଳ୍ପୀର ପ୍ରକାଶର ଉପାୟ ନିର୍ଭର କରେ । କେଉଁଠି ନାଲି ସଡ଼କରେ ଅଛି ଢିମା ପଥର । ଶିଳ୍ପୀ ଝୁଣ୍ଟେ, ବୁଲିଣି ବାଟରେ ଯାଏ । କେଉଁଠି ନାଲି ସଡ଼କ ବାଟ ଅଡ଼୍‌ଆ, ବଙ୍କେଇ ବଙ୍କେଇ କେନ୍ଦ୍ରେଇ କେନ୍ଦ୍ରେଇ ସାପ ପରି ଯାଇଛି । ତାର ଉପରେ ଶିଳ୍ପୀ ଚାଲେ । କେଉଁଠି ଖାଲ, କେଉଁଠି ଢିପ, କେଉଁଠି ଦାରୁ ହନସ୍ତା; ତଥାପି ବନ୍ଧା ବାଟରେ ଯିବାକୁ ହିଁ ହେବ । ତା ଛଡ଼ା ଉପାୟ ନାହିଁ । ଶିଳ୍ପୀ ଉଠିପଡ଼ି ଚାଲେ ।

କୌଣସି ସାହିତ୍ୟର ଇତିହାସ ପଢ଼ି ବସିଲେ ପରିଷ୍କାର ଜଣାପଡ଼େ, କିପରି ସ୍ଥାନ, କାଳ, ଆଉ ଅନ୍ୟାନ୍ୟ ଅବସ୍ଥାଭେଦରେ ସାହିତ୍ୟକୁ ଯୁଗ ଯୁଗ କରି ଭାଗ କରାଯାଇପାରେ । ଯେତେବେଳେ ଆମେ କହୁଁ ଭଞ୍ଜ ଯୁଗ, ରାଧାନାଥ ଯୁଗ, ଫକୀରମୋହନ ଯୁଗ, ବିଂଶ ଶତାବ୍ଦୀ, ସେତେବେଳେ ଆପେ ଆପେ ଆମେ ଧରି-ନେଉଁ ଯେ, ପ୍ରତ୍ୟେକ ଦୁଇ ଯୁଗ ଭିତରେ ଅନେକ ଫରକ ଅଛି । ଭଞ୍ଜଯୁଗର

କବି ଆଉ ରାଧାନାଥ ଯୁଗର କବି, ଏ ଦୁଇ ଦଳ ଭିତରେ ଯଥେଷ୍ଟ ଫରକ ଅଛି । ତାର କାରଣ ହେଉଛି, ପ୍ରତ୍ୟେକ ଦଳର ଗୋଟିଏ ଗୋଟିଏ ବଂଶଗତ ଗୁଣ ରହିଛି । ପୂର୍ବବର୍ତ୍ତୀ ଯୁଗମାନଙ୍କର ଭିତର ସମଷ୍ଟି ଗୋଟିଏ ସାହିତ୍ୟିକ ସଂସ୍କାର ଗଢ଼ିଛି । ଦୁଇ ଯୁଗର ସାହିତ୍ୟିକ ସଂସ୍କାର ନିଶ୍ଚୟ ଫରକ । ତାହାଛଡ଼ା ଦୁଇଟି ଯୁଗର ସାମାଜିକ, ରାଜନୈତିକ, ଆର୍ଥିକ ଅବସ୍ଥା ଯେନ ସେହି ସମୟ, ଅଉ ସେହି କାଳର କେତେକ ଧାରା (Conventions) ତିଆରି ହୋଇଯାଇଛି, ଯାହା ପରସ୍ପରଠୁଁ ଅଲଗା । ବିଂଶ ଶତାବ୍ଦୀର ସାହିତ୍ୟିକ ବନ୍ଧାଗତ ଭଞ୍ଜ ଯୁଗର ସାହିତ୍ୟିକ ବନ୍ଧାଗତଠାରୁ ଅଲଗା । ବିଂଶ ଶତାବ୍ଦୀର ସାହିତ୍ୟିକ ସଂସ୍କାର ଭଞ୍ଜ ଯୁଗର ସାହିତ୍ୟିକ ସଂସ୍କାରଠାରୁ ଅଲଗା । ଏହି ଯେଉଁ ପାର୍ଥକ୍ୟ, ତାହାର ଛାଇ ପଡ଼େ ସାହିତ୍ୟର ଆବରଣ ଆଉ ପ୍ରକାଶ ଉପରେ । ତେଣୁ ଯୁଗ ଯୁଗ ପ୍ରଭେଦରେ ସାହିତ୍ୟର Formରେ ଫରକ ରହିଯାଏ । ଏଇ Form ଦେଖି କହିହେବ, କେଉଁ ସାହିତ୍ୟ କେଉଁ ଯୁଗର । କାଳ ନିରୂପଣ କରିବା ପାଇଁ ଏହି Formର ସାହିତ୍ୟିକ ସଂସ୍କାର ଆଉ ସାହିତ୍ୟିକ ବନ୍ଧାଗତଜନିତ ବିଶେଷତ୍ୱ ହେଉଛି ଆଭ୍ୟନ୍ତରୀଣ ପ୍ରମାଣ (Internal evidence) ।

ଏ ଯୁଗର ଓଡ଼ିଆ ସାହିତ୍ୟର ଫଳାଫଳ ଦେଖିବାକୁ ହେଲେ ଏ ଯୁଗର ସାହିତ୍ୟିକ ସଂସ୍କାର ଓ ସାହିତ୍ୟିକ ବନ୍ଧାଗତର କାରଣ ଚିହ୍ନି ଦେଖିବାକୁ ପଡ଼ିବ । ପରୀକ୍ଷା କଲେ ଜଣାପଡ଼ିବ, ନାଲି ସଡ଼କର ସୀମା କେଉଁଠି, କେଉଁ କେଉଁ ସ୍ଥାନରେ କେଉଁ କେଉଁ କାରଣ ଲାଗି ଆମକୁ ଅଟକି ରହିବାକୁ ପଡ଼ିବ, କେଉଁଠି ବା ହିଲି ହିଲି ଚାଲି ଚାଲି ଯିବାଇ ପାରିବା । ଆଜିକାଲିକା ଓଡ଼ିଆ ସାହିତ୍ୟକୁ ଇଂରେଜି ସାହିତ୍ୟ ଆଉ ଭାରତବର୍ଷର ଅନ୍ୟାନ୍ୟ ସାହିତ୍ୟ ସହିତ ତୁଳନା କରି ଦେଖିଲେ, କେତେ ଫରକ ଜଣାପଡ଼େ । କଳା-ଶକ୍ତିର ଗତାଗତ ବାଦ୍ ଦେଲେ ଅନ୍ୟାନ୍ୟ କାରଣ ସବୁ କଣ ? କାହିଁକି ଆମ ସାହିତ୍ୟର ଢଙ୍ଗ ଅଲଗା ହେଉଛି ? କଣ ଏପରି କାରଣ ଅଛି, ଯାହାକୁ ଦଳ ଦଳ ଲେଖାଳି ଲଙ୍ଘି ପାରୁ ନାହାନ୍ତି ?

କଳା-ଶକ୍ତିର ଗତାଗତ ବାଦ୍ ଦେଲେ ସାହିତ୍ୟର ଆବରଣ ଭିତରେ ତାର କାରଣ ମିଳେ । ଦେଶର ସାଧାରଣ ଅବସ୍ଥା, ସାମାଜିକ, ଆର୍ଥିକ, ରାଜନୈତିକ ଓ ଅନ୍ୟାନ୍ୟ, ଜାତିର ମୂଳ-ଗୁଣ, ଏହିପରି ଅନେକ କଥା ଅଛି, ଯାହା ଲେଖକ ଦେହରେ ଲାଗି ରହିଛି । କଷ୍ଟିଫଳ ଦେହରେ ଖୋଳପା ପରି । ଏ ଦେଶର କେତେଗୁଡ଼ିଏ ସଂସ୍କାର ଅଛି—ହୁଏ ତ ସାହିତ୍ୟରେ ସେପରି ସଂସ୍କାର କୌଣସି ଉପକାରରେ ଅସୁନାହିଁ; କିନ୍ତୁ ତା ବିରୁଦ୍ଧରେ ଗଲେ ସାହିତ୍ୟ ହୁଏତ ହେବ ଅମୂଳକ; ନୋହିଲେ ହେବ ଗର୍ହିତ ।

ସାଧାରଣତଃ ଦେଖିବାକୁ ମିଳେ, ଆମ ସାହିତ୍ୟରେ ଭଲ ରୋମାନ୍ସ ନାହିଁ । ବଙ୍ଗଳା ପତ୍ରପତ୍ରିକାରେ କେତେ ଶସ୍ତା ରୋମାନ୍ସ ଥାଏ; ତେଣୁ ଆମେ ଏତେ ବଙ୍ଗଳା ପଢ଼ୁ । ଯେଉଁମାନେ ଜ୍ଞାନବାବୁ କହିଲେ, "କାହିଁ, ରସରସିଆ ଲେଖା ତ ଲେଖୁ ନା, ଏ କାଠୁଆ କଥାର ମହତ୍ତ୍ୱ ବୁଝନ୍ତି ବୁଢ଼ାଏ, ନୋହିଲେ, ପଣ୍ଡିତେ; ଆମର ଦରକାର ନାହିଁ ।" ରସରସିଆ କାହାଣୀ ବାସ୍ତବରେ ଆମର ଅଭାବ । ଅସୀମର ଛନ୍ଦ ଧରାପଡ଼ିଛି, ସୃଷ୍ଟିର ଯୌନ-ଲୀଳା ଭିତରେ । ତାର ଭିତରେ ହିଁ ନିରାକାର ପାଇଛି ଆକାର, ଅନାଦି ଅନନ୍ତ ଆଦି ଅନ୍ତ ପାଇଛି । ନରନାରୀଙ୍କ ଭେଟାଭେଟି, Sexର ଅଭିଳାଷା ଗୁଣ । ଏ ଖାଲି ଅନ୍ୟାନ୍ୟ ପ୍ରବୃତ୍ତି ପରି "ଗୋଟିଏ" ପ୍ରବୃତ୍ତି ନୁହେଁ । ବେହିଆ ମୂହିଁରେ ପଦାକୁ ପଥର ହେଲେ ବି ସମସ୍ତେ ଏ କଥା ବୁଝନ୍ତି; ତେଣୁ ସମସ୍ତେ ମନେ ମନେ ଖୋଜନ୍ତି, ଆଉ ଝୁରନ୍ତି । Spirit ଯୁଗ କଥାଟାକୁ କବିତା କରିଥିଲା, Matter ଯୁଗ ତାକୁ ଗଦ୍ୟରେ ରଖିଛି—ଏତିକି ଯାହା ପ୍ରଭେଦ ।

ତେଣୁ ଏପାଖ ସେପାଖ କରି ଘୋରତେଇ ପୋରତେଇ ଚଳିଲେ ବି ସତର ଅର ସେ କଥାଟି ସାରା ଲୋକଙ୍କୁ ଭଲ ଲାଗୁଥିବ । ଶସ୍ତାରେ ଲୋକଙ୍କ ମନକୁ କିଣିନେବାକୁ ମନ ଥିଲେ, ସ୍ୱଚ୍ଛ ମହଣ ଅଲଥା ଗଦା ଭିତରେ ଅଧଛଟାଙ୍କି ଆଦରସ ପୁରାଇ ଦେବାକୁ ହେବ । ବେଶ୍, ସେତିକରେ କାମ ଫତେ ! କିନ୍ତୁ ଆମ ଓଡ଼ିଆରେ ସେତିକ ସୁବିଧାରେ ଘଟୁନାହିଁ । ଆମେ ପଥର ହୋଇପାରିବା, ଆମେ ପହିଲି ରାତି ବର୍ଣ୍ଣିପାରିବା; କିନ୍ତୁ ଜଣକା ପିଣ୍ଡ ଜଣେ ଯେଉଁ ଯୋଡ଼ାଅଯୋଡ଼ା, ଯେଉଁ ଯୋଡ଼ାଅଯୋଡ଼ା ଜୀବନକୁ କରିଛି କବିତା, ଫୁଲରେ ଦେଇଛି ସୁବାସ, ରଙ୍ଗ, ରକ୍ତରେ ଦେଇଛି ତେଜ, ସେ ଯୋଡ଼ାଅଯୋଡ଼ା ଆମେ ସୁବିଧାରେ ସହଜ ଉପାୟରେ ଏ ଯୁଗରେ ଲେଖିପାରି ନାହୁଁ ।

ଦେହର କଥା ଶେଷ କଥା । ଛୁଇଁଲ-ଛୁଡ଼ିଲ, ଛୁଇଁଲ ଛାଡ଼ିଲ ଏହି ଯେଉଁ କ୍ରମ, ସେହି ହେଉଛି ପ୍ରେମର ଇତିହାସ । ଧରି ରଖିନେଲେ କାମ ଭୁଟିଗଲା । ତେଣୁ ଅତିରସିକ କବି ସେଠି ସୁଜ୍ଞା ଲେଖିଲେ "ଶୈଳାଧିରାଜତନୟା ନ ଯଯୌ ନ ତସ୍ଥୌ" । ମନ ଭିତରେ ସେହି ଯେଉଁ ଯୋଡ଼ାଅଯୋଡ଼ା ଲାଗି ରହିଥିଲା, ବାହାରେ ତାହା ସ୍ଥିତିବାନ୍ ହୋଇଗଲେ ସୁଦ୍ଧା, ତରଳ ଛବି ପଥର ଦେହରେ ଧରାପଡ଼ିଲେ ସୁଦ୍ଧା, ଅନୁଭୂତିର (impression) ସେହି ଗତିଶୀଳ (dynamic) ଅବସ୍ଥା ପୁରି ଯାଇ ନାହିଁ; ତେଣୁ ନ ଯଯୌ ନ ତସ୍ଥୌ ।

ଆମର ଏ ଯୁଗକୁ ସାହିତ୍ୟରେ ସେପରି ଚମତ୍କାର ଯୋଡ଼ାଅଯୋଡ଼ା ବାହାରି ପାରୁ ନାହିଁ । ତେଣୁ ମଣିଷର ସହଜ ମୂଳ ଗୁଣ ବହି ଭଉଣୀ ଅଭି

ଲୋକମାନେ ଓଡ଼ିଆ ସାହିତ୍ୟକୁ ଦେଖି ଦୀର୍ଘଶ୍ୱାସ ପକାଉଛନ୍ତି; ଆଉ ଭାବୁଛନ୍ତି— ଏ ସାହିତ୍ୟଟା ବୃଥା—କାଠୁଆ, ନୀରସ ! ଆଉ ଲେଖାଳମାନେ ହେଲେ ବାଜେ, ଯେଉଁମାନେ କ କାଳି କଲମର ଭଲ ବ୍ୟବହାର କରୁ ନାହାନ୍ତି । ତେଣୁ ପଦ୍ମ ଓଡ଼ିଆ ଲେଖାଟିଏ ଦେଖିଲେ ସାଧାରଣ ମନ୍ତବ୍ୟ "ଦେ ଓଲଟା !" ତେଣୁ ପଦ୍ମ କଅଁଳକୁହା ଶସ୍ତା ବଙ୍ଗଳା ସାହିତ୍ୟ ଆମର ଘରେ ଘରେ ! ଆମର ଭଉଣୀମାନେ ଓଡ଼ିଆ ଯେତେ ନ ପଢ଼ନ୍ତି, ବଙ୍ଗଳା ପଢ଼ନ୍ତି ତହିଁରୁ ବେଶୀ । ତାର କାରଣ ଆଉ ଅନ୍ୟ କିଛି ନୁହେଁ, ସାଧାରଣ ବଙ୍ଗଳା ସାହିତ୍ୟ ଅତିଶୟ ସେଣ୍ଟିମେଣ୍ଟାଲ, ଆଉ ତହିଁରେ ସ୍ତ୍ରୀ-ପୁରୁଷଙ୍କ ଗୋଡ଼ଆଗୋଡ଼ି ପ୍ରକରଣ ଅତି ଦୁର୍ବଳ ହେଲେ ବି ଅତି ପରିସ୍ଫୁଟ । ଅତଏବ ଯେଉଁମାନଙ୍କ ରୁଚି ଅପେକ୍ଷାକୃତ ମାର୍ଜିତ, ସେମାନେ ସୁଦ୍ଧା ତାକୁ ଆଦର କରିବା କଥା ।

ଆମର ଏପରି ଅଭାବ ଗୋଟିଏ ସମସ୍ୟା ହୋଇପଡ଼ିଲାଣି । ତାର କାରଣ ରହିଛି ସମାଜର ମଜ୍ଜା ଭିତରେ । ରୋମାନ୍ସ ସ୍ତ୍ରୀ ହେଁ ଅବାରିତ ମୁକ୍ତ ବ୍ୟବହାର । ପ୍ରେମର ଇତିହାସର ଜନ୍ମ କୌଣସି ସଂସ୍କାରଗତ ଆଇନରେ ବନ୍ଧା ନୁହେଁ । ପ୍ରେମ ବାହାରର ମୋହର ମାନେ ନାହିଁ । ଦୁଷ୍ମନ୍ତ ଶକୁନ୍ତଳାଙ୍କ ସାଙ୍ଗେ ପ୍ରେମ କରୁଥିବା ସମୟରେ ଯଦି ଶକୁନ୍ତଳା ହାତେ ଓଢ଼ଣା ପକାଇ ଘରକଣରେ ଲୁଚିଥାନ୍ତେ, ଆଉ କଣ୍ୱ ଋଷି ନାଲି ଆଖି ଦେଖାଇ ମୁହଁ ଫଣଫଣ କରି ପିଣ୍ଡା ପହଣ୍ଡରେ ବସି ଜଟାରେ ବରକ୍ଷୀର ମାଖୁଥାଆନ୍ତେ, ତେବେ କାଳିଦାସଙ୍କ ନାଟକର ଜନ୍ମ ଅନ୍ୟ ରକମ ହୋଇଥାନ୍ତା । ପ୍ରେମ ସ୍ତ୍ରୀ ହେଁ ଦୁଇଟି ଟୋକା ଟୋକୀ ଖୋଲା ଆକାଶ ତଳେ ଯୁଗଯୁଗର ସେ ଗୋଡ଼ଆଗୋଡ଼ି ଖେଳ ଖେଳୁଥିବେ । ହୃଦୟଭିଲ ଛାଡ଼ିଲା, ହସ କାନ୍ଦର ସେ ଚିରନ୍ତନ ଖେଳ ଭାବର ଢେଉ ଉଠାଉଥିବ । ତା ହେଲେ ଅନୁଭୂତି ସ୍ତ୍ରୀଲସିବ କେଉଁ ଦୂର ଅସୀମକୁ । ମଣିଷ ମୌଳିକ ଗୁଣଦ୍ୱାରା ଅନୁଭବ କରିପାରିବ ବିରାଟ ଅସୀମ ଭାବର ସପନକୁ ।

କିନ୍ତୁ ଆମର ସମାଜର ଘଟନା ସ୍ତ୍ରୀପୁରୁଷଙ୍କ ମିଳାମିଶା ସପକ୍ଷରେ ନୁହେଁ । ଆମର ସ୍ତ୍ରୀଲୋକମାନେ ଓଢ଼ଣାପକା, ଅନ୍ଦର ମହଲର ବାସିନ୍ଦା । ସ୍ତ୍ରୀପୁରୁଷଙ୍କର ସାଧାରଣ ମିଳାମିଶା ଆମ ସମାଜରେ ନାହିଁ । ଅତଏବ ସାହିତ୍ୟରେ ତାକୁ ଆକାର ଦେଲେ ସୁଦ୍ଧା ଚଳିବ ନାହିଁ । ଯୁବକ ଯୁବତୀଙ୍କୁ ଏକାଠି ଭେଟାଇବା ପାଇଁ ତ ଗୋଟିଏ କାରଣ (raison d'etre) ଦରକାର । ଆମର ସମାଜର ଆଇନ ଅନୁସାରେ ସେପରି ଉପଲକ୍ଷ ବା ସେପରି କାରଣ ନାହିଁ । ଯଦି ଜଣେ ଲେଖକ ଦେଖାଇଲେ, ସେ ଯୁବକ ରାଜଯୁବତୀ କନକଲତାଙ୍କ ସଙ୍ଗେ ପ୍ରେମ କରୁଛନ୍ତି, ତା ହେଲେ ଆପଣା ଆପେ ମନ ଭିତରେ ପ୍ରଶ୍ନ ଉଠିବ, "କେମିତି

ହେଲ ?" ବିଶେଷଣରେ ମଧ ଉଣା ରହିବ ନାହିଁ । ଅତଏବ ଏପରି ଲେଖା ଅପ୍ରାସଙ୍ଗିକ ହେବ, ଯେପରି ଅପ୍ରାସଙ୍ଗିକ ହୁଏ ଗଙ୍ଗର ମିଥ୍ୟା ପଇତା ପକାଇଲେ । ଏବେ ତ ସେପରି ମିଳାମିଶା ନ ଥିବାରୁ ପ୍ରେମ କରିବାକୁ ହେଲେ ଅ-ଚଷ୍ଟା କମ୍ବା ଅଧ-ଚଷ୍ଟା ଦୁଇପକ୍ଷ ଭିତରେ କପରି ବ୍ୟବହାର ହୁଏ, ତା ଅନେକ ଲେଖକଙ୍କ ଅଭିଜ୍ଞତାର ବାହାରେ, ତହିଁରେ ପୁଣି ଅନୁମାନ ଉପରେ ନିର୍ଭର କରି କିଛି ଲେଖିଲେ ସମସ୍ତେ ନାକ ଟେକିବେ—"କଲ୍ଲୋ ମା କସ, ଏମନ୍ତ ତ ହୁଏ ନାହିଁ ।"

କନ୍ତୁ ଯଦି ହୁଏ, ତେବେ ସେ ହେବ ପାପ । ବିଦେଶୀ ସାହିତ୍ୟରେ ମିଷ୍ଟର—ଶୁ-ମେକର ମିସେସ୍ ବା ମିସ୍ ସ୍କ ହଜ୍‌ବ୍ୟାଣ୍ଡ୍‌ଙ୍କ ସଙ୍ଗେ ପ୍ରେମ କଲେ ସମସ୍ତେ ଦେଖିବେ, ଏ ବୈଜ୍ଞାନିକ ପ୍ରକ୍ରିୟାର କ୍ରମ ଓ ପରିଣତି କପରି ହେଉଛି । ସେଠି ପାପର କଥା ଆଦୌ ଉଠି ନ ପାରେ । କନ୍ତୁ ଗୋବର୍ଦ୍ଧନ ପଧାନ ଯଦି ଭଗି ମଲିକ ଝିଅ ସାଙ୍ଗେ ରୋମାନ୍‌ସ ଆରମ୍ଭ କରିଦିଏ, ତେବେ ସମସ୍ତେ ପଢ଼ି ମଜା ଦେଖିଲେ ବି ଲୋକେ ଲେଖକଙ୍କ ଉପରେ ଫୁଲ, ଚନ୍ଦନ ନ ପକାଇ ଆଉ କିଛି ପକାଇବେ । କାରଣ ଏଇଟା ପାପ ! ଶହ ଶହ ବରଷର ତରୁଣଙ୍କ ହେଣ୍ଟାଳ ସମାଜର ଏ କୁସଂସ୍କାର ଖଙ୍ଗିପାରି ନାହିଁ । ସ୍ତ୍ରୀ ଜାତିମାନଙ୍କର ହିଁ ଭାରତ ବର୍ଷରେ ଦୁଇ ଭାଗରେ ବିଭକ୍ତ୍ୟ—ମା, ଆଉ ଭଉଣୀ । ବାସ୍, ଏତିକରେ କଥା ସରିଲା । ସ୍ତ୍ରୀ ଉପରେ ଆଉ ବିଗ୍ରହ ନାହିଁ । ଯେଉଁ କଥା ପାପ ବୋଲି ସମାଜ ମାନି ନେଇଛି, ଯେଉଁ କଥା ପାପ ବୋଲି ସଂସ୍କାରରେ, ଆଉ ଆମର ରକ୍ତରେ ଲେଖା ରହି ଯାଇଛି, ତାହା ବର୍ଣ୍ଣନା କଲେ ଭଲ ରୁଚ ହେବ ନାହିଁ; ମଧ ଯେତେ ପୁଣ୍ଣୀଙ୍ଗ ହେଲେହେଁ ସ୍ୱାସ୍ଥ୍ୟକର ହେବନାହିଁ । ସେହି କାରଣରୁ ଓଡ଼ିଆ ସାହିତ୍ୟରେ ଭରପି ଚଷ୍ଟାପଢ଼ ନେହି ଅପ୍ରୀତିକର କଥା ଲେଖିବେ ନାହିଁ । ଯେତେ କାଲିନକ ହେଉ ପଛେ, ଯାହା ପାପ, ତାହା ଅରୁଚକର ।

ଏବେ ତ ପାପ, ତହିଁରେ ପୁଣି ବାସ୍ତବ ଓଡ଼ିଆ ଜଗତରେ ଏତେ ମିଳାମିଶା ଅସମ୍ଭବ । ବଙ୍ଗାଳି ସାହିତ୍ୟ ସମ୍ପର୍କରେ ମିଶାମିଶି ଦେଖାଇ ପାରିବ; କାରଣ ସେମାନଙ୍କ ଭିତରେ ମିଶାମିଶି ସହଜ, ଶିକ୍ଷାଫଳରୁ ଆଉ ଉଚ୍ଛୃଙ୍ଖଳ ଅଳ୍ପ । ବେଶ୍ ଆଗ୍ରହରେ ଲେଖକ ଟୋକାଟୋକିଙ୍କୁ "ଦାଦା" "ଦିଦୀ" କରି ଭଲ ରସ ବନେଇ ଦେଇପାରନ୍ତି; କନ୍ତୁ ଆମର "ଦାଦା" "ଦିଦୀ" କଲେ ସମାଜର ଅଲେଖା ଆଇନ ଅନୁସାରେ ସାରା ଜୀବନ "ଦାଦା" "ଦିଦୀ" ରହିବାକୁ ପଡ଼ିବ । ତହିଁରୁ ବ୍ୟତିକ୍ରମ ହେଲେ ଫଳତଃ ଆଇନ ଅନୁସାରେ "ଭୁମିଂ ତ୍ରିଷ୍ଟୁ କର୍ଣ୍ଣଂ ସ୍ପର୍ଶାମି ।"

ସୁତରାଂ ଗୋଳମାଳରେ ପଡ଼ି ମଣିଷ ଭାବେ ଓଡ଼ିଆରେ ରୋମାନ୍‌ସ ଖଣ୍ଡେ ଆରମ୍ଭ କଲେ ପରିଚୟଟି କି ଉପାୟରେ ହେବ ? ରୋମାନ୍‌ସରେ ଖାଲି ପରିଚୟ ଛଡ଼ା ପୁଣି ଦେଖାଶୁଣା ତ ଅଛି ! ସେ କଥା ହବ କେମିତି ? ଆମ ସମାଜରେ ତ ପରିଚିତ ହେବାର ବା ମିଳାମିଶା କରିବାର ସୁବିଧା ନାହିଁ ।

କିନ୍ତୁ ସୁବିଧା ଅଛି । ବନ୍ଧୁବାନ୍ଧବମାନଙ୍କ ଭିତରେ କିଶୋର କିଶୋରୀ-ମାନଙ୍କର ମିଳାମିଶା ହୁଏ । ପ୍ରେମପ୍ଲଟର ସେଟିଂ ସେଇଠି ଆରମ୍ଭ କଲେ ମନ୍ଦ ହୁଅନ୍ତା ନାହିଁ; କିନ୍ତୁ ସମାଜ ସେ ବିଷୟରେ ଅତ୍ଯନ୍ତ ଉଦାସୀନ । ବନ୍ଧୁବାନ୍ଧବ ସମ୍ପର୍କ ନ ଥାଇ ସେପରି ଆଖି ପକାଇବା ଅଭଦ୍ରତା ଓ ପାପ, ବନ୍ଧୁବାନ୍ଧବ ସମ୍ପର୍କ ଥାଇ ସେପରି 'ଭଲ ପାଇବା' ହେବ ପାପ ଆଉ incest । ବଙ୍ଗଳା ସାହିତ୍ୟ ଭଳି ଚଳାଣି, ଦୂର ସମ୍ପର୍କର ଭଉଣୀ କରି "ଦଦା ଦାଦା" ରୋମାନ୍‌ସ ଚଳେଇ ନଥାନ୍ତି; କିନ୍ତୁ ହାୟ, ଓଡ଼ିଆ ସାହିତ୍ୟିକଙ୍କର ହାତ ବନ୍ଧା । ବଙ୍ଗଳାରେ ଚଳେ; ଓଡ଼ିଆ ଦେଶରେ ସେଇଠି ନିକଟ ସମ୍ପର୍କ ହେଲେ ବି ବଡ଼ିଲ ଝିଅର ପୁରୁଷମାନଙ୍କ ଆଗରେ ଠିଆ ହେବା ବିଧି ନାହିଁ, ସେଠି ଚଳିବ ନାହିଁ ।

ତା ବୋଲି ମୁଁ କହୁ ନାହିଁ, ଆମ ସମାଜ ନିଷ୍କଳଙ୍କ । ଆଦୌ ନୁହେଁ । ରୋମାନ୍‌ସ ହେଉଛି, ଇନ୍‌ସେଷ୍ଟ ହେଉଛି, ସବୁ ହେଉଛି; କିନ୍ତୁ ସମାଜର ବିଧାଗତ ଅନୁସାରେ ସେଗୁଡ଼ାକ ପାପ—ଅପ୍ରାସଙ୍ଗିକ, ଘଟିବା ଅନୁଚିତ, ଆଉ ଅସମ୍ଭବ ! ଅତଏବ ତାର ସପକ୍ଷରେ ସାହିତ୍ୟ ଘଟି ନ ପାରେ । ବିପକ୍ଷରେ ଲେଖା ହେଲେ ସାହିତ୍ୟ Didactic ହୋଇଯିବ । ଭଣା ଅଧିକେ ଗୋଟାଏ ପାପର ଗ୍ଲାନି, ଆଉ ଗୋଟାଏ Morbidity ରହିବ । ଅତି ସୁଣ୍ୟ, ଅତି ପବିତ୍ର ଯେଉଁ ସ୍ତ୍ରୀ ପୁରୁଷଙ୍କର ପ୍ରେମ, ତାର ଆନନ୍ଦକର ଉଲ୍ଲାସ ରହିପାରିବ ନାହିଁ । ସେ ଦେଶର ସାହିତ୍ୟରେ ଯୁଗଯୁଗର ସ୍ତ୍ରୀପୁରୁଷଙ୍କ ଭିତରେ ଯେଉଁ ପ୍ରଣୟର ଇତିହାସ ସାହିତ୍ୟରେ ମିଳେ, ତାର କାରଣ ହେଉଛି ସେମାନଙ୍କର ସମାଜରେ ଏପରି ବନ୍ଧନ ନାହିଁ । ସେମାନଙ୍କ ସମାଜରେ ବିଧାଗତ ଆଉ ଧର୍ମିକ ସଂସ୍କାରରେ ସ୍ତ୍ରୀ ଆଉ ପୁରୁଷଙ୍କ ସ୍ୱାଧୀନ ମିଳାମିଶା ମଝିରେ କୌଣସି ପ୍ରକାର ବାଡ଼ ନାହିଁ । ସେମାନଙ୍କର ଆମ ପରି ଏପରି Prejudice ନାହିଁ ବା ପାପପୁଣ୍ୟର ଏପରି ବିଗ୍ଭର ନାହିଁ । ଥ୍ୟାକରେ (Thackeray) ତାଙ୍କ ଶ୍ରେଷ୍ଠ ଉପନ୍ୟାସ ଏଡ୍‌ମଣ୍ଡରେ ସ୍ୱରୂପ ଓ ଖୁଡ଼ୀଙ୍କର ଯେଉଁ ଅପୂର୍ବ ଦାମ୍ପତ୍ୟ ପ୍ରେମ ଦେଖାଇ ପାରିଛନ୍ତି, ତହିଁରେ ଯୁଗଯୁଗର ସ୍ତ୍ରୀପୁରୁଷଙ୍କର ଯେଉଁ ମୌଳିକ ଚିତ୍ର ରହିଛି, ଉତ୍କଳ ଦେଶରେ ତା ଅସମ୍ଭବ । ସେ ଦେଶରେ ଯଦି ଗୋଟାଏ ରୋମାନ୍‌ସ (Romance) ଆରମ୍ଭ

କରିବାକୁ ହୁଏ, ତା ହେଲେ ଲେଖକ କୌଣସି ରକମର ଛଳ ନ କରି ମୋଟା-ମୋଟି ଭେଟାଭେଟି କରାଇ ଦେଇ ପ୍ରେମର ଜମ ଦେଖାଇ ପାରନ୍ତି । ଏଠି ତା ଅସମ୍ଭବ । ଏଠି ଖାଲି ଘନ ଘନ ଦୀର୍ଘଶ୍ୱାସ, ଅରେ ଅଧେ "ସ୍ନେହ ଚକିତ ଚାହାଣି"ରେ ଦେଖା, ମନକୁ ମନ କବିତା ଲେଖା, ଆଉ କାଗଜ ଛିଣ୍ଡା; କାରଣ ମୁହାଁ ମୁହିଁ ଅସମ୍ଭବ ।

କେଉଁ ଛଳ, କେଉଁ ଉପଲକ୍ଷ୍ୟ ଦେଖାଇ ଅପ୍ରାକୃତ, ଅପ୍ରାସଙ୍ଗିକ ନ କରି ରୋମାନ୍ସ ଓଡ଼ିଆରେ ଲେଖାଯାଇ ପାରେ ? କେବଳ ଓଡ଼ିଶା ନୁହେଁ ଭାରତ-ବର୍ଷର ସାଧାରଣ ପ୍ରେମ କାହାଣୀ ଭିତରେ ଦେଖିବାକୁ ମିଳେ, କେତେଗୁଡ଼ାଏ ବନ୍ଧା ବିଷୟବସ୍ତୁ । ଟିଉଶନ୍ ପ୍ରେମ କେତେ ଉପାୟରେ କେତେ ଲେଖକଙ୍କ ହାତରେ ଦେଖାଯାଏ । ଘର ସୁବିଧା, କାହିଁକି ନା ହେଇ ଗୋଟିଏ ସୁବିଧା, ଯହିଁରେ କିଶୋର କିଶୋରୀ ଏକାଠି ମିଶିବାକୁ ସୁବିଧା ପାଆନ୍ତି । ଅବଶ୍ୟ ଏ ବିଷୟ ମଧ୍ୟ ସେତେ ବେଶୀ ସୁବିଧା ନୁହେଁ; କାରଣ ଯେଉଁମାନେ ଟିଉଶନ୍ ମାଷ୍ଟର ରଖନ୍ତି, ସେମାନେ ଅନେକ ସମୟରେ ବୟସ ଆଉ ଚରିତ୍ର ଦେଖି ମାଷ୍ଟର ରଖିଥାନ୍ତି । ଏ ଟିଉଶନ୍-ପ୍ରେମ ଯେପରି କି ଗୋଟିଏ ଚିରନ୍ତନ ବିଷୟ । ତା ଉପରୁ ଆଉ ଗୋଟିଏ ସାଧାରଣ ପ୍ଲଟ୍ ହେଉଛି ଭାଇର ବନ୍ଧୁ । ଭାଇର ବନ୍ଧୁ ଭାଇ ପରି କାରବାର କରେ; କିନ୍ତୁ ଭାଇ ନୁହେଁ । କିନ୍ତୁ ଏ ବି ଅତି ଅସୁବିଧା କଥା, କାରଣ ବଙ୍ଗଳା ପରି ଓଡ଼ିଶାରେ ଏପରି ଭାଇର ବନ୍ଧୁ ଗୃହପାଳିତ ହୋଇପାରନ୍ତି ନାହିଁ । ହେଲେ ବି ଭାଇ ଓ ବାପା ବୋଉ ହୁଏତ ଭଲ କରି ଜାଣିଥାନ୍ତି ଯେ, ବନ୍ଧୁଟି ଅତ୍ୟନ୍ତ ଅନ୍‌ରୋମାଣ୍ଟିକ୍ । ଆଉ ଯେଉଁଠି ଏପରି ବନ୍ଧୁତା ଥାଏ, ସେଠି ଆଡ଼ ଉଢ଼ୁଆଳ ମୁହାଁମୁହିଁ ପରିଷ୍କାର ନ ହେଲେ ସୁଦ୍ଧା ତଳେ ତଳେ ଥାଏ । ଆମେ ଅତି ମୋଟା ଜାତି, ଘର ଓଳି, ଜହାଜ ଖୋଲି ନୋହୁଁ । ଏପରି କି ସହପାଠୀ ହେଲେ ହେଁ ବେଶୀ ଦୂର ଗତି ନୁହେଁ ।

ଏଇ ସାଧାରଣ କେତୋଟି ଅତି ଘଷରା ପ୍ଲଟ୍ ଦିନୁଦିନ ଅଧିକର ଅଧିକ ଘଷରା ହେବା ଛଡ଼ା ଅନ୍ୟ କୌଣସି ସମ୍ବଳ ନାହିଁ । ବାହାରେ, ଗୋଟାଏ ରୋମାନ୍ସ ଲେଖିବାକୁ ହେଲେ କେବଳ ଭେଟାଭେଟି ପାଇଁ ଛଳନାର ଆଶ୍ରୟ ନେବାକୁ ପଡ଼ୁଛି । ସେ ପୁଣି ଅତି ଘଷରା ଛଳନା ।

ସୁବିଧା କଥା ହେଉଛି ଖ୍ରୀଷ୍ଟିଆନ ବା ବ୍ରାହ୍ମ ସମ୍ପ୍ରଦାୟ, ଏମାନଙ୍କ ଭିତରୁ ନାୟକ-ନାୟିକା ବାଛି ନେବା; କିନ୍ତୁ ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଅଳ୍ପ । ଅତଏବ ଏମାନଙ୍କୁ ନେଇ ସାହିତ୍ୟ ରଚିଲେ, ସେ ସାହିତ୍ୟ ଦେଶର ଧଣିଙ୍କ କୁହଁନ ଆସିବ ନାହିଁ !

ରୋମାନ୍ସ ଦେଖାଇବା ମଝିରେ କେତେ ବାଡ଼, କୁଟୁମ୍ବ କୁଟୁମ୍ବର ଜାତି ଜାତିର । ତଳ ଜାତିମାନଙ୍କର ଭଲ ମିଳାମିଶା ଅଛି; କିନ୍ତୁ ରୋମାନ୍ସର ନାୟକ-ନାୟିକା ହେବା ପାଇଁ କେତେକ ପରିମାଣରେ ଶିକ୍ଷା ଓ ଗୁରୁତା ଦରକାର, ଯାହା ସେମାନଙ୍କର ନାହିଁ । ଅବଶ୍ୟ ପ୍ରତିଭା ଥିଲେ ଲେଖକ ଛୋଟ ନଗଣ୍ୟ ଲୋକଙ୍କୁ ଯେଉଁ କଳାର କରାମତି ଦେଖାଇ ପାରିବେ; କିନ୍ତୁ ସାଧାରଣ ଲେଖକଙ୍କ ପକ୍ଷରେ ଚମ୍ପୀ ଅଭି ପାଣୁଅଙ୍କ ରୋମାନ୍ସ ପ୍ରହସନ ଭଳି ହେବ, ତହିଁରେ ଉଚିତ ପରିମାଣରେ ଗୁରୁତା ରହିପାରିବ ନାହିଁ ।

ଯଦି କୌଣସି ଛଳରେ କିଶୋର କିଶୋରୀଙ୍କର ପ୍ରେମ ଆରମ୍ଭ କରିଦିଆ-ଯାଏ, ତେବେ ସୁଦ୍ଧା ପଶ୍ଚିମ ଦେଶର ସାହିତ୍ୟ ପରି ଏତେ ଉଚ୍ଚ ଦରର କରି ହେବ ନାହିଁ—ଅନ୍ତତଃ ଆଧୁନିକ intellectualism ଫୁଟାଇବା କଷ୍ଟ ହେବ । ତାର କାରଣ ହେଉଛି ସ୍ତ୍ରୀଲୋକମାନଙ୍କର ଶିକ୍ଷାର ଅଭାବ । ଅନେକ ସମୟରେ ସାରଗର୍ଭିକ intellectualismରେ ପ୍ରେମର ଆରମ୍ଭ ଓ ବିସ୍ତାର ହୁଏ । ସରଳା ବାଳିକା କିପରି ତହିଁରେ ଟକର ଦେବ ?

ଆମେ ପ୍ରକୃତ ଜୀବନରେ ରୋମାଣ୍ଟିକ୍ ନ ହେବା ପର୍ଯ୍ୟନ୍ତ ସାହିତ୍ୟରେ ରୋମାନ୍ସ ଦେଖାଇ ପାରିବା କଷ୍ଟ ହେବ । ଜାତି ଯେତେବେଳେ ପ୍ରଜାପତି ପରି ଖୋଲା ହୋଇପାରିବ, ସେତେବେଳେ ଆଦିମ ଯୁଗର ସେ ଯୌନମୂଳକ ଦୌଡ଼ା-ଦୌଡ଼ି ଆମେ ଦେଖାଇ ପାରିବା । ସେ ପର୍ଯ୍ୟନ୍ତ ବନ୍ଧାଗତର ସଂସାର ନିଶ୍ଚୟ ଆମର ସମ୍ବଳ ରହିଲା ।

କିନ୍ତୁ ଏହାଦ୍ୱାରା ସାହିତ୍ୟର କ୍ଷତି ହେଉଛି । ସାହିତ୍ୟରୁ ସ୍ତ୍ରୀଲୋକର ପରଶ (Feminine Touch) ବାଦ ପଡ଼ିଯାଉଛି । ଆଉ ସେତିକ ବାଦ୍ ପଡ଼ିବାଦ୍ୱାରା ଯମସ୍ତେ କହୁଛନ୍ତି "ଦେ ଓଲଟା ।" ହସର ରସ ବିଷୟରେ ଲେଖି ଲେଖି ମେରେଡିଥ୍ କହିଛନ୍ତି, "ପୂର୍ବ ଦେଶରେ, ଯେଉଁଠି ସ୍ତ୍ରୀଲୋକର ମୁହଁରେ ଅଛି ଓଢ଼ଣା, ସେଠି ହସର ରସ ଅସମ୍ଭବ ।" କଥାଟା ଟାଣୁଆ ହେଲେ ସୁଦ୍ଧା ଭାବିବାର କଥା । ସାହିତ୍ୟରେ ନାରୀର ପରଶ ନ ଥିଲେ ସବୁ ବିଗିଡ଼ିଲା ।

ଇଉରୋପରେ ଗୃହଦାଉଡ଼ିକଟା ମୁକ୍ତ ରୋମାନ୍ସ ଅଛି । ସେ ଦେଶରେ ସ୍ତ୍ରୀ-ପୁରୁଷଙ୍କ ସମ୍ବନ୍ଧ ସ୍ୱାଧୀନ— ବାହାରେ ମିଳାମିଶା, ସୁବିଧାରେ ଛାଡ଼ପତ୍ର । ଯଦି କୁଟୁମ୍ବମାନଙ୍କ ସଂଖ୍ୟା ଓ ସମ୍ବନ୍ଧ ସାହିତ୍ୟ ଉପରେ ପ୍ରଭାବ ପକାଏ । ସେମାନଙ୍କର ଏକପିଣ୍ଡା-ଗୁଣ ବେଶୀ । ପରିବାରରେ ମାମୁଁ ମାଇଁ ଦୁଇ ପ୍ରାଣୀ; ତେଣୁ ବେଶୀ ସ୍ୱାଧୀନତା ।

ଯୋଗାଇଛି ଓ ଅବାଧରେ ମିଳାମିଶା, ଏ ଦୁଇ କାରଣ ଯୋଗୁଁ ସେମାନେ ପାଇପାରିଛନ୍ତି ତାଙ୍କର ତ୍ରିଭୁଜ ଗଳ୍ପ, ଯେଉଁଠି ଜଣେ ସ୍ତ୍ରୀ ଦୁଇଜଣଙ୍କୁ ଭଲ ପାଏ, ଆଉ ଦୋସମାନଙ୍କର ଦୋଟଣାରେ ପଡ଼େ । ଏପରି ମନ୍ଥନରୁ ଈର୍ଷା, ପ୍ରେମ, ଲୁଚିଲା ଛଡ଼ାଲା, ଯୌନ ଗୋଳଅଗୋଳ—ଏପରି କେତେ ସାହିତ୍ୟିକ ସମ୍ପଦ ମିଳେ । ଓଡ଼ିଆ ସାହିତ୍ୟରେ ତା ଅସମ୍ଭବ ।

ଆମର ଏକମାତ୍ର ରୋମାନ୍ସ ଆରମ୍ଭ ହୁଏ ବିବାହ ପରେ । ସେତେବେଳେ ତ୍ରିଭୁଜ ଗଳ୍ପର ଜନ୍ମ ଅଶୋଭନ ହେବ । ଜୀବନର ଯୋରଟେଇ ପୋରଟେଇ ଭିତରେ ତରୁଣର ଚଞ୍ଚଳ ତରଳ ଅଭିସାର ହୋଇଯିବ ପଥର । ସ୍ଥିରତାର ଗୌରବ ଅଛି; କିନ୍ତୁ ସାଧାରଣ ମଣିଷର ମନ ଉପରେ ତରଳତାର ଯେଉଁ ଚଞ୍ଚଳ ପ୍ରଭାବ, ସ୍ଥିରତାର ତା ନୁହେଁ । ତହିଁରେ ପୁଣି ସ୍ଥିର ଗମ୍ଭୀର ବନ୍ଧାଗତର ପ୍ରେମ ବର୍ଣ୍ଣନା କରିବାକୁ ଅତି ଶିଳ୍ପୀଙ୍କର ଉଦ୍ୟମ ଦରକାର । ଦେଶର ଦଶଜଣ ଦଣ୍ଡି-ଷିଷ ମହୁରାଡ଼ଙ୍କର ଅବସର, ଉଦ୍ୟମର କାମ ତା ନୁହେଁ ।

ଏତ ଗଲା ରୋମାନ୍ସ ଉପରେ ସାମାଜିକ ସଂସ୍କାରର ପ୍ରଭାବ । ଏପରି ହରେକ ସୁବିଧା ଅସୁବିଧା ଆମେ ଭୋଗୁଥାଉଁ । ଆର୍ଥିକ ଅବସ୍ଥା ମଧ୍ୟ ସାହିତ୍ୟ ଉପରେ ପ୍ରଭାବ ପକାଉଛି ।

ବଙ୍ଗଦେଶର ଚିରସ୍ଥାୟୀ ବନ୍ଦୋବସ୍ତ ହେରୁ ଯେଉଁ ଜମିଦାର ଦଳ ବଢ଼ିଛନ୍ତି, ସେମାନେ ସାହିତ୍ୟର ଉପାଦାନ ହୋଇଥାନ୍ତି । ପ୍ଲଟର ସୁବିଧା ଲାଗି ମୁକ୍ତ ଲେଡ଼ା । ଟଙ୍କା ଥିଲେ ସବୁ କଥା ଖୋଲା । ତେଣୁ ବଡ଼ ଘର, ମଟରଗାଡ଼ି, ଓଡ଼ିଆ ପୂଝାରୀ, ମାଲି, ଆଉ ପଶ୍ଚିମା ଦରବାନ, ଉଡ଼େ ଖୋଟ୍ଟା ଯେତେ ନେଡ଼େ ମେଡ଼େ, ଗମଗୁର ବଡ଼ ଘର, ଏସବୁ ବଙ୍ଗାଳି ଉପନ୍ୟାସର ସାଧାରଣ ଉପକରଣ । ଏଣ୍ଡୁ ଅ ଧାଉଡ଼ି କଅବଣକୁ । ଇଂରେଜମାନେ ସେହିପରି ତାଙ୍କର ବଡ଼ଲୋକ ବଣିକମାନଙ୍କୁ ଘେନି ସାହିତ୍ୟରେ ସଂସାର କରନ୍ତି । ଅନେକେ ଦେଶର ଗଳ୍ପ ଉପନ୍ୟାସର ସାଧାରଣ ନାୟକ ନାୟିକା ବଡ଼ ଲୋକ । ସାଧାରଣ ପ୍ଲଟ ହେଉଛି ଜଣେ ଲୋକ କିପରି ଧୀରେ ଧୀରେ ବଡ଼ଲୋକ ହେଉଛି । ଗରିବ-ଗୁରୁବାଙ୍କୁ ଘେନି ସାହିତ୍ୟ ଚଳିବ; କିନ୍ତୁ ଅଭାବ ଅସୁବିଧା ପ୍ଲଟ ପକ୍ଷରେ ବଡ଼ ବ୍ୟାଘାତ । ତେଣୁ ଆମର ଏ ଦିଗରେ ବଡ଼ ଅସୁବିଧା । ଜଣେ କେହି ଯଦି ବଡ଼ ବଡ଼ କଥା, ବଡ଼ଲୋକ କାରଖାନା ଦେଖାଇ ଉପନ୍ୟାସ ଲେଖିବ, ଏ ଓଡ଼ିଶା ଦେଶରେ ଆମେ ମୁରକି ମୁରକି ହସିବା । ଇଂରେଜ ଉପନ୍ୟାସ ଯେଉଁଠି ଇଚ୍ଛା ସେଠିକା କଥା ଲେଖେ, ପୃଥିବୀର ସୁରଅଡ଼ର କଥା ଲେଖେ । ପୃଥିବୀର ଯେଉଁ

ସ୍ଥାନରେ କେଉଁ ମନୋହର ଦୃଶ୍ୟ ବା ଘଟନା ଅଛି, ସବୁ ସେମାନେ ହଜମ କରି-ନେଲେଣି । ଆମର ସ୍ଥାନ ଓଡ଼ିଶା ନୋହିଲେ ପୁଣି ଏଣ୍ଡୁଥ ଧାଉଡ଼ି କଆବଣକୁ—କଲିକତା; ନୋହିଲେ କାଲିମାଟି । ବଙ୍ଗାଳୀ ଲେଖାରେ ବୁଢ଼ାବୁଢ଼ୀ ସୁବିଧାରେ କାଶୀ ଚାଲିଯାଆନ୍ତି ଘରେ କୌଣସି ଉପଦ୍ରବ ଘଟିଲେ । କେତେକ ଲେଖାରେ ଭାରତବର୍ଷର ଅନ୍ୟ ସ୍ଥାନର ସେଟିଂ ରହିଛି । ତାର କାରଣ ବଙ୍ଗାଳି ଭାରତର ଅନ୍ୟଠି ବି ଅଛନ୍ତି, କାଶୀ ବି ଯାଆନ୍ତି । ଆମର ସେପରି କୌଣସି ଉପଲକ୍ଷ ନାହିଁ । ଖାଲି କେତେଗୁଡ଼ିଏ ପଶ୍ଚିମା ନାଁ, ମାଥୁର, ଶ୍ରୀବାସ୍ତବ କରିଦେଲେ ସ୍ୟାଡ଼କା ସେଟିଂ ହେବ ନାହିଁ; ବରଂ ଲୋକେ ହସିବେ ।

ଓଡ଼ିଶାରେ ବିଦେଶୀ ସେଟିଂ ଚଳିବ ନାହିଁ । ବଡ଼ଲୋକ ନାୟକ, ମାହାଲି ମାହାଲି କୋଠା, ସ୍କ-ଟେବୁଲ—ସେମାନ୍‌ସର ସହଜ ସୁବିଧା ଚଳିବ ନାହିଁ । ପାଶ୍ଚାତ୍ୟ ସଭ୍ୟତା ଆଗ ମାଡ଼ି ଚାଲିଛି । ସାହିତ୍ୟର ଆବରଣରେ ଗତାଗତ ପାଇଁ ତହିଁରେ ଅନେକ ସୁବିଧା । କଳକବଜା ବିଜ୍ଞାନ ଦେଶରେ ଅନେକ ସୁବିଧା । ସାମାନ୍ୟ ଚୋର-ପୁଲିସ ଗଳ୍ପଟିଏ ଆମେ ଲେଖି ପାରୁନାହୁଁ; କାରଣ ଭଲ ବୈଜ୍ଞାନିକ ଡିଟେକ୍‌ସନ୍ କଥା ଲେଖିଲେ ଏ ଦେଶକୁ ସେଇଟା ହେବ ଅପ୍ରାକୃତିକ ଆଉ ଅପ୍ରାସଙ୍ଗିକ । କଳକବ୍‌ଜାର ଛଟକ ଦେଖାଇବାକୁ ଚେଷ୍ଟା କଲେ ପାଞ୍ଚକଡ଼ି ଦେ ଷ୍ଟିଂ ଛପିଲା ପରି ଦିଶିବ ।

ଅର୍ଥ ଅଭାବରୁ ଓଡ଼ିଶାର ଲୋକେ ପୃଥିବୀର ଲୋକ ହୋଇପାରୁ ନାହାନ୍ତି; ତେଣୁ ପୃଥିବୀର ବଡ଼ ବଡ଼ ସମସ୍ୟା ଆମର ସାଧାରଣ କଥାଭାଷା ହୋଇପାରୁ ନାହିଁ କିମ୍ବା ବଡ଼ ବଡ଼ ସମସ୍ୟା ଆମର ସାହିତ୍ୟର ଉପାଦାନ ହୋଇପାରୁ ନାହିଁ । ଆମେ ଏ ପର୍ଯ୍ୟନ୍ତ ଓଡ଼ିଶାକୁ ପୁରାପୁରି ଉଠିପାରି ନାହୁଁ, ପଦାର କଥା ତ ଆହୁରି ବେଶୀ ।

ଓଡ଼ିଆ ଭାଷାରେ ନାଟକ ଲେଖା ହୋଇପାରୁ ନାହିଁ । କେତେଖଣ୍ଡ ବାଜେମାର୍କା ନାଟକ ଛାଡ଼ିଦେଲେ ଆମର ନାଟକ ନାହିଁ । ଘଡ଼ିକେ ପହରକେ ଫୂର୍ତ୍ତି କରିବା ଲାଗି ଯଦି ଦଳେ ନାଟକ ଆରମ୍ଭ କରିଦିଅନ୍ତି, ତା ହେଲେ ମନ୍ଥା-ଚକଟା ପଡ଼େ—ଭଲ ନାଟକ କାହିଁ ? ଶେଷରେ ଅଧିକାଂଶ ବେଳେ ବଙ୍ଗଳାରୁ ଅଳିଆ-ବାଜେ ନାଟକ ଦସ୍ତ ହୋଇ ଥିଏଟର ହୁଏ । ଏଥିପାଇଁ କିଏ ଦାୟୀ ? ଆମର ଅଭାବ । ଟଙ୍କା ନାହିଁ; ତେଣୁ ଚିରସ୍ଥାୟୀ ନାଟ୍ୟମନ୍ଦିର ତିଆରି ହୋଇପାରୁ ନାହିଁ । ଟଙ୍କା ନାହିଁ; ତେଣୁ ଦେଖିବା ଲୋକଙ୍କ ଅଭାବ । ଲୋକେ ନାଟକ ଲେଖିବେ କି ଦୁଃଖରେ ? ସାହିତ୍ୟ ଯେଉଁ ଦେଶରେ ଏପର୍ଯ୍ୟନ୍ତ ଗୋଟିଏ ଲୋକର ଖୋରାକ

ପୋଷାକ ଯୋଗାଇ ପାରନାହିଁ, ସେ ଦେଶରେ ନାଟକ ପୁଣି ଲୋକେ କାହିଁକି ଲେଖିବେ ? ବିଦେଶୀ ଭାବରେ, ଏମାନେ ନାଟକ ଲେଖି ଜାଣନ୍ତି ନାହିଁ ।

ଅର୍ଥ ଅଭାବରେ ପଡ଼ି ପଡ଼ି ପେଟରେ ଓଦାକନା ଦେଇ ସରସ୍ୱତୀ ସେବାକୁ ଯେ ଏ ଦେଶର ଲେଖାଳୀ ନିଷ୍କାମ ଭକ୍ତି ଦେଖାଇ ଆସିଛନ୍ତି; ସେତିକି ଯଥେଷ୍ଟ । ମନର ତାରୁଣ୍ୟରେ ଟୋକା ବୁଢ଼ା ବେଳେ ବେଳେ ଲେଖନ୍ତି । ସେତିକି ଆମର ସମ୍ପଦ । ତାରି ଉପରେ ଆମର ସବୁ ସମାଲୋଚନା । ସେତିକି ପଢ଼ିବାକୁ ଦେଶର ଲୋକେ ଟାକିକରି ବସିଛନ୍ତି । ତେବେ ଓଡ଼ିଶାରେ କିପରି ସାହିତ୍ୟ ଚଳିବ ?

ରୋମାନ୍ସ—ପ୍ରଜାପତି ପ୍ରେମ—ଭୁଲ ସାହିତ୍ୟ ଜୀବନର ଟୋକାଳିଆ ଦୌଡ଼ାଦୌଡ଼ିର ମଉଜ, ଏପରି ସାହିତ୍ୟ ଲାଗି ଉପାଦାନ ନାହିଁ । ଲୋକଙ୍କର ନୈତିକ ବିତୃଷ୍ଣା ରହିଛି । ଆଜିକାଲିକା ଦୁନିଆରେ ସେକାଳର ଶ୍ଳୀଳ-ଅଶ୍ଳୀଳ ନ ମାନି ଖୋଲା ମନରେ ସାହିତ୍ୟ ଆଉ ଦର୍ଶନରେ ଯେଉଁ ଯୌନତତ୍ତ୍ୱର ଆଲୋଚନା ଚାଲିଛି, ସେ ବି ଏଠି ମୋଟେଇ ପାରିବ ନାହିଁ ସେହି ସେହି କାରଣରୁ ।

ଇଉରୋପ ଆମେରିକାରେ ଯେଉଁ ବଡ଼ ବଡ଼ ସାହିତ୍ୟିକ ଆଦର୍ଶ ଆଉ ସାହିତ୍ୟିକ ସମସ୍ୟା ଚାଲିଛି, ସେ ବି ଏଠି ଏକପ୍ରକାର ଅଚଳ; କାରଣ ବହିରୁ ପଢ଼ି ହାଉଁପାଉଁ ହେଲେ ବି ଆମେ ସାହିତ୍ୟିକ ସଂସ୍କାର, ସାହିତ୍ୟିକ ବଂଶାଗତ, ଆଉ ଘଟନାର କ୍ରମକୁ ବଦଳାଇ ଏକା ମୁଥକେ ଓଡ଼ିଶାକୁ ଇଉରୋପ କରିଦେଇ ପାରିବା ନାହିଁ । ସେ ଦେଶର କଥା ଅମେ ପଢ଼ୁଥାଉଁ । କେତେକ ଅଂଶରେ ତାର ପ୍ରଭାବ ଏ ସାହିତ୍ୟରେ ପଡ଼ିବ; କିନ୍ତୁ ହଠାତ୍ ସେ ଦେଶର ସବୁ ସମସ୍ୟା ଆମର ବୋଲି ଭାବି ନେଇ ଲୁହ ଲୁହରେ ତକିଆ ଓଦାଇବା ଆମ ପକ୍ଷରେ ଅଶୋଭନ ।

ତେବେ ଆମେ କେଉଁଠି ? ଆମେ ଏଠି ନା ବିଲାତରେ ? ବିଲାତରେ ତ ନୋହୁଁ; କିନ୍ତୁ ପଶ୍ଚିମ ଆକାଶକୁ ଚାହିଁ ଚାହିଁ ପୂର୍ବ ଆକାଶକୁ ମୁଣ୍ଡ ବୁଲାଇପାରୁ-ନାହୁଁ, ବେକ ଲାଗିଗଲାଣି । ଆମେ ହେଲୁଣି ଯେମିତି ସେହି ସବୁ ଲୋକଙ୍କ ପରି, ଯେଉଁମାନେ ଇଂରେଜ ଚମଡ଼ାରେ ବିଲାତକୁ କହନ୍ତି 'ହୋମ' (ଆମ ଘର), ବୁଡ଼ସ୍ପିଆର୍ଡ କିପ୍ଲିଙ୍ଗ୍‌ଙ୍କ ଭାଷାରେ ବିଲାତକୁ ଚାହିଁ ଦୀର୍ଘନିଶ୍ୱାସ ପକାନ୍ତି, ଆଉ ଜବାବ ଖବରକାଗଜରେ ଭାବନ୍ତି—

O to be in England now
Now that summer's there.

ଭାରତର ଆଦର୍ଶ ଗଲାଣି ପାସୋରି। ପୂର୍ବ ସଂସ୍କୃତ ସଂସ୍କୃତି ଆଉ ମିଳିବ ନାହିଁ। ପଶ୍ଚିମର ପ୍ରଭାବରେ ଭାରତର କାଉ ଘରଚଟିଆ ଧଳା ହୋଇନାହାନ୍ତି, କିନ୍ତୁ ତାଙ୍କ ଆଡ଼କୁ ଅନାଇବାର ଢଙ୍ଗ ଆମର ବଦଳିଛି।

ଯୁଗର ଗତି ଅନୁସାରେ ଆମେ ପାଇଛୁ ମଝି ମଝିକା ଗୋଟାଏ ସାଲିସ। ତହିଁରେ ନୂଆ ସାହିତ୍ୟର ଗ୍ରନ୍ଥ ପଢ଼ୁଛୁ।

ବିଶ୍ୱ-ସାହିତ୍ୟକୁ କେହି ନିନ୍ଦା କରୁନାହିଁ; କିନ୍ତୁ ଯେଉଁଠି ମଣିଷ ସତକୁ ଚିହ୍ନି ପାରିଛି, ଯେଉଁଠି ମଣିଷ ମଣିଷକୁ ଠିକ୍ ଠିକଣା କରି ବାଣ୍ଟିପାରିଛି, ସେଠି ସେ ବିଶ୍ୱ ସାହିତ୍ୟ ତିଆରି କରିପାରିଛି। ଯେଉଁଠି ଅଳଙ୍କାରର ଝଲମଲରେ ଦୁର୍ବଳତା ଲୁଚାଇ ମଣିଷ ମଣିଷକୁ ପୂର୍ଣ୍ଣତା ଦେଇ ପାରିନାହିଁ, ସେଠି ବିଶ୍ୱ-ସାହିତ୍ୟ ଗଢ଼ାଯାଇ ପାରିନାହିଁ।

ସବୁ ମଣିଷ ସମାନ ମଣିଷ। ବଡ଼ ଶ୍ରେଷ୍ଠ ସମସ୍ତେ। ଅମେ ଯଦି ବଡ଼ଲୋକ ଆଡ଼ାକୁ ଉପାଦାନ କରିନେବା, ତା ହେଲେ ପୃଥିବୀର ପ୍ରତିଯୋଗିତାରେ ଅମେ ପଡ଼ିବା ଅତି ତଳେ। କାରଣ ଅନ୍ୟମାନେ ସେ ଦିଗରେ ବେଶୀ ଲମ୍ଭି ପାରିବେ। ଛୋଟ ମଣିଷ, ଗରିବ ଦୁଃଖୀ ଯେମିତି, ଅମ୍ଭେମାନେ ସେମିତି ଦୁନିଆରେ ଦଶ ଜଣ ଆଉ। ବରଂ ଦେଶ ଗୋଟାକ ଗରିବ ବୋଲି ବଡ଼ଲୋକମାନଙ୍କର ବଡ଼ଲୋକୀ ବିଷୟରେ ଯେତିକି ଅଜ୍ଞତା, ଗରିବଗିରିରେ ଆମର ତାଠାରୁ ବେଶୀ। ଆମେ ପ୍ରାଣେ ପ୍ରାଣେ ଅନୁଭବ କରୁଁ, ଶାଗ ପାଣିରେ ନିଜେ ମଣିଷ ହେଉ, ଆଖି ଆଗରେ ଆପଣା ପୁରୁଷକୁ ଅଧପେଟା ଦରମଲା ହୋଇ ବଢ଼ି ଉଠିବାର ଦେଖୁଁ। ଗରିବର ଟେକ କିଛି କମ୍ ନୁହେଁ! ଗରିବର ବଞ୍ଚି ରହିବାର ବାହାଦୁରୀ ବଡ଼ ଲୋକଙ୍କର ବଡ଼ଲୋକୀପଣିଆର ବାହାଦୁରୀଠାରୁ କମ୍ ନୁହେଁ।

ଭଙ୍ଗା କାନ୍ଥ, ଅଧନୁଆଁ ଦାନ୍ତୁର ଗୃଳ ତଳେ ଖୁଦମଣ୍ଡୁଖର ଜୀବନ ସମ୍ଭାର ଭିତରେ ଶାଶ୍ୱତ ମଣିଷର ଯେଉଁ ପରିଶ ମିଳେ, ତହିଁରେ ଷୋଳ ପଣ ସତ ଅଛି। ମଣିଷର ମୂଳ ଗୁଣ ବାହାରର ଆବରଣ ତଳେ ବଦଳି ପାରେ ନାହିଁ। ଅତଏବ ବିଶ୍ୱ-ସାହିତ୍ୟ ପାଇଁ ବଳିଆ ଭଇର ମାଗୁର ଜଣ ଲୋଡ଼ା ନାହିଁ। ଲୋଡ଼ା ନାହିଁ ପଶ୍ଚିମ ଜଗତର ମଣି-କାଞ୍ଚନ, ଧନ-ଦୌଲତ। ଯୌନ ଆକର୍ଷଣର ଆଖିଝଲସା ଛବି, ରୋମାନ୍ସ ଛଳରେ ଆମେ ନ ଦେଖାଇପାରୁଁ, ନ ଦେଖାଉ ଆମେ ସାହିତ୍ୟର ସମସ୍ୟା, ବିଜ୍ଞାନର ପ୍ରତିଦ୍ୱନ୍ଦ୍ୱିତା।

ତେଣୁ ଆମର ଏକମାତ୍ର ସମ୍ପଦ, ଦୈନିକ ଜୀବନର ଘୋରତେଇ ପୋରତେଇ କ୍ରିୟାକଳାପ ସେଇ ଘର, ସେଇ ବଳ ପଢ଼ୁଛୁ। ଜନ୍ମମ ଧରି ଯୁଗ

ଯୁଗ ଧରି ଚାଷୀ ମାଟି ତାଡ଼ୁଛି, ଫସଲ କରି ବଞ୍ଚୁଛି; ଶେଷରେ ମରୁଛି । ଚରିତ୍ରମାନର ପ୍ରତୀକ ପରି ସବୁ ସହଜ କଥା ଘଟୁଛି—ବଢ଼ି ମରୁଡ଼ି ଧୋଇ ଦୁର୍ଭିକ୍ଷ ବା-ବତାସୀ ! କେତେ କାଳର ମାଟି ପଡ଼ୁଛି, କେତେ କାଳର ମଣିଷ ଜନ୍ମ ହେଉଛି, ଆଖି ଖୋଲି ବକା ବକା ହୋଇ ଚାହୁଁଛି । ପ୍ରତି ସାଧାରଣ କଥାରେ ନୂଆ ଚମକ ପାଉଛି, ସ୍ୱପ୍ନ ଭିତରେ ଚୁଲ୍‌ଚୁଲ ସପନ ଭିତରେ ବୁଡ଼ିଯାଉଛି । ଏତିକି ସରଳ କଥାରେ ଯୁଗ ପରେ ଯୁଗ ଚାଲିଛି । ସତ ସତ ସରଳ ଅଭିଜ୍ଞତା ଅନୁଭୂତିରେ ଏତିକି କଥା ଲେଖି ପାରିଲେ ସେଇ ହେବ ବିରାଟ ବିଶ୍ୱ-ସାହିତ୍ୟ । ଏ ବିରାଟ ସମ୍ଭାର ଆଗରେ ସବୁ ଅଲଙ୍କାର ଅଡ଼େଇଦିନିଆ, ଆଉ ଯୁଗ ଯୁଗର ସଂସ୍କାରି ସାହିତ୍ୟିକ ବନ୍ଧାଗତ ଓ ପରିସ୍ଥିତି ଏତିକି ଛଡ଼ା ଏ ଦେଶର ସାହିତ୍ୟରେ ଅନ୍ୟ ଉପାଦାନ ରହିବେଇ ନାହିଁ ।

ତେଣୁ ଏ ଦେଶର ସାରା ସାହିତ୍ୟ ହେବ ଦୁଃଖ ଅକ୍ଷରର—ସେହି ସାଧାରଣ ଜୀବନ ତାର ନିତିଦିନିଆ ଦେହଘଷର, ପୁଣି ଅଜଣା ଅଚିହ୍ନା ବନ୍ଧାଗତ । ଗରିବର ଇତିହାସ; ଗୋଡ଼ଦଳା ମଳିମୁଣ୍ଡି ଆଉ କଅଁଳ ମରମ ଭାବ, ଆଉ ଆଶା ଉତ୍ସାହ, ଅଭେକାର ଘରକରଣା, ସେତିକି ହେବ ସରସ୍ୱତୀଙ୍କର ପୂଜାର ବାସନା ଆଉତି, ଅଜଣା ବଜାଲିର ଜୀବନଭେଦ ବୀଣାର ସ୍ୱର । ସେତିକି ହେବ ଯୁଗ ଯୁଗକୁ କଅଁଳ ଶାଉଁଳିଆ ସାବନା ଘାସ । ସେତିକି ଏ ଦେଶର ବଡ଼ ଠାକୁରଙ୍କ ଆସ୍ଥାନ ତଳେ ପୂଜାର ଅଞ୍ଜଳି । ଆମ ଗରିବଆନା ଆମର, ତାଙ୍କ ବଡ଼ଲୋକି ତାଙ୍କର ଥାଉ ।



# କମ୍-ଭୂତ

ଜଣଜଣିଆ ଦେଖାର ଧରଣ ଉପରେ ଚମକ ଫୁଟାଇ ଆସେ, ଯେତେ ଅଦ୍ଭୁତ, ଯେତେ ଅସାଧାରଣ, ଯେତେ ଅଢ଼ଙ୍ଗ, ଯେତେ ଅଖାଡ଼ୁ, ସବୁ ରୂପରେ । କିଏ ଜାଣିଥିଲା, ଆକାଶ କଣରେ ମେଘମେଞ୍ଚାକ ଦିଶିବ ଘୋଡ଼ା ପରି, ହାତୀ ପରି, ପୁଣି ଘୋଡ଼ାର ଥିବ ଗୋଟା ଗୋଟା ଯୋଡ଼ାଏ ଶିଙ୍ଘ, ମିମିକା ମାଣିକରଜା ପରି, ପୁଣି ହାତୀର ଲାଙ୍ଗୁଡ଼ ଲେଟିଯିବ ଗୋଡ଼ ତଳେ ତଳେ । ହୁଏ ତ ହାତୀ ଲାଙ୍ଗୁଡ଼ରେ ଟଣା ହୋଇ ଗୁଳିବ ଧୋବଲା ବଉଦର ଗୋଟାଏ ବଡ଼ ମହାଦେଶ, ଯାହା ଇଉରୋପ ନୁହେଁ, କି ଉତ୍ତର ଆମେରିକା ନୁହେଁ; କିନ୍ତୁ ଦୁଇଟା ମହାଦେଶର ମଝାମଝି ଗୋଟାଏ ସାଲିସ, ଗୋଟାଏ ସଙ୍କର । ଏତେ ଅପରୂପ— ପୁଣି ସେହି ନେଳି ଆକାଶରେ, ଯେଉଁଠି ଜହ୍ନ ଆଲୁଅର କୂଆର ଲହଡ଼ି ଖେଳେ, ଆଉ ବାଷ୍ପହୋଇ ପଡ଼େ ଭଙ୍ଗା ଫେଣର ପରମେଘ ।

ସବା ଉପରେ ଗାଦି ମାଡ଼ି ବସିଛି—କମ୍-ଭୂତ, ଆକାଶର ମଥାମଣି ଜହ୍ନ ଉପରେ; ଆଉ ଯେତେ କବି, ଯେତେ ଶିଳ୍ପୀ, ଯେତେ ସହକା ଗୁଣ୍ଡି ବସିଛନ୍ତି ତଳର ଏ ପୃଥିବୀରେ, ତାଙ୍କର ଆଡ଼କୁ ଗୁଣ୍ଡି ଗୁଣ୍ଡି ହସୁଛି, କଣେଇ କଣେଇ, ବଙ୍କେଇ ବଙ୍କେଇ । ଜହ୍ନ ମଝିରେ ସେଇଟା କଣ ? ସେଇଟା କଣ ଠେକୁଆ ? ନା ପାହାଡ଼ ? ନା ଝାଟିବିଟା ଆଉ ମଶାଲ ଧରି ଜହ୍ନର ମଣିଷ । ସେଇଟା କିଛି ନୁହେଁ, ସେଇଟା କମ୍-ଭୂତ ।

ସୁନ୍ଦର ଆଖି-ଦରଶାର ବନ୍ଧ ଡେଇଁ ଗୋଟାଏ କଣ ଲମ୍ବି ଯାଏ, ଛବି ଉପରେ ଅନ୍ଧେରୁଙ୍କ ରଙ୍ଗ-ମେଞ୍ଚା ପରି । ଲମ୍ବି ଗୁଳିଯାଏ, କମର ଅଗ ଶେଷ ନ ମାନି । ଲମ୍ବି ଗୁଳିଯାଏ, ମପା ଚୁପା ଗଢ଼େଇ ନକ୍ସାର ବାଡ଼ ଡେଇଁ । ଶେଷରେ ଦିଅଁ ହୁଏ ମାଙ୍କଡ଼, ପୋଷା ହୁଏ ଅରଣା, ଛବି ହୁଏ ମେଞ୍ଚା ମେଞ୍ଚା ରଙ୍ଗର ଅସନା ସମଷ୍ଟି, ଗୀତ ହୁଏ ଘୋ ଘା ଗୋଲମାଲ କୋଇଲିର କୁହୁ କୁହୁ ହୁଏ ଗଧର ଭେରଣ୍ଡା ।

ଦୁନିଆର ସବୁ ହୋଇଥାଆନ୍ତା ଆମ ଆଇନ୍‌ରେ ସୁନ୍ଦର । ତା ନ ହୋଇ ଠାଏ ଠାଏ ଖାଲି ବଙ୍କା, ଢେମଣା, ଆବଡ଼ା ଖାବଡ଼ା, ତେଣ୍ଟା ଗୋଜା, ଦାନ୍ତୁରିଆ ଗହଣ୍ଟେଣ୍ଟିଆ । ଲତାର ଲଳିତ କଳା ଭୁରୁକୁଣ୍ଡିଆ ମାରେ, ଫୁଲ ହୁଏ କେମ୍ପା ଭୂଜା ।

ପ୍ରକୃତିର ଆଇନ୍‌ର ଫାଙ୍କେ ଫାଙ୍କେ ରହିଯାଏ ବେ-ଆଇନ; ନ ହେଲେ କ ଅଦିନରେ ବରଷା, ରୂପରେ କୁରୂପ । କେହି କହିବେ ସୃଷ୍ଟିର ବୈଚିତ୍ର୍ୟ; କିନ୍ତୁ ସେ ବିଚିତ୍ରତା ଯେଉଁ ମରୁ ସୂତାରେ ଗୁନ୍ଥା ହୋଇଛି, ତା ରହିଯାଏ ସବୁଦିନେ ଅଛପା; ଖାଲି ମନର ଶାନ୍ତି ପାଇଁ ଆମେ ଧରନେଉଁ ମଝିଏ ମଝିଏ ସରୁ ଛିଅ—ଅନ୍ଧକାରରେ ଦୂର ବାଟୋଇ ଭାବେ ଯେପରି ତାରଗୁଣି ଆଲୁଅକୁ ଶଗଡ଼ର ଲଣ୍ଟଣ ବୋଲି ।

ଆଉ ପ୍ରକୃତି ଭିତରେ ଠାଏ ଠାଏ ନ କହୁ ନ ପୋଛୁ ବାହାରି ପଡ଼େ ସେହି କମ୍-ଭୁତ, ଟଳଟଳା, ଅଥରପା, ଅଖାଡ଼ୁଆ, ଅରଣା; ବନ୍ଧାବାଡ଼ର ଭେଡ଼ା ଡେଇଁ ସେ ପାଖେ ଠିଆ ହୁଏ; ଅଚ୍ଛିଣ୍ଡା ଗୁହାଣିରେ ଥରେ ଗୁହିଁଦେଇ ମାଡ଼ି ଚାଲିଯାଏ, ଅନ୍ଧାର ଆଲୁଅ ମଝିଆଁ ମଝି ।

ଆଖି ପାଏ ନାହିଁ । ମନ ଭିତରର ସଞ୍ଚା ବିଶ୍ୱାସ ଧାରଣା ଦୋହଲାଇ ଦେଇଯାଏ; କେତେ ଆଦରର କେତେ ଯୁଗଯୁଗର ବସାଣି (deposit) ସଂସ୍କାର ସସ୍ତୁଡ଼ି ଓଲଟ ପାଲଟ କରି ଦେଇଯାଏ; ଦମକା ପବନ ଯେପରି ଓଲଟ ପାଲଟ କରିଯାଏ, ଅତି ଯତନରେ ସଜଡ଼ା ମଥାର କବରୀ ।

ମନ ଆପେ ଆପେ ଲେଉଟି ଆସେ କମ୍-ଭୁତର ପରିକଳ୍ପନାକୁ, ମୁଣ୍ଡବୁଲା ପାହାଡ଼ ତଳର ଦେଉ ଉପରୁ ଆଖି ଚାଲିଯାଇ ବିଶ୍ରାମ କରେ ଫୁଲଫୁଟା ବଗିଚ ଉପରେ । ଯେଉଁଠି ମଣିଷର ଯତ୍ନରେ ଫୁଲ ଫୁଟିଛି ଅଗଣିତ ମନମାଫି ସଜା, ମନମାଫି କଟା ଛଣ୍ଟା, ଯେଉଁଠି ମଣିଷର ମରଜି ଯୋଗାଇ ଅରଣା ଘାସ ହୋଇଛି ସାବୁକା ଶେଯ, ପ୍ରେମ...ନ ।

ଖାଲି ଯେ ଦୃଶ୍ୟମାନ ପ୍ରକୃତିରେ କମୂତ ଥାଏ, ତା ନୁହେଁ; ସବୁଠି କମ୍ଭୂର୍ତ୍ତ । ଚାଲେଇ ଚାଲେଇ ଦେଖିଲେ ତ ଯାହା ଅତି ସାଧାରଣ, ତା ଭିତରେ ସୂକ୍ଷ୍ମ ପଦେ ପଦେ କମ୍-ଭୂତ । ତା ଛଡ଼ା ସାଧାରଣ ମୋଟା ଦୃଷ୍ଟିରେ ଦେଖିଲେ ବି ଚେହେରାରେ, ବ୍ୟବହାରରେ, ସ୍ୱାଦଗନ୍ଧରେ, ସବୁଠି ମିଳେ କମ୍-ଭୁତ । ଲୋକଟି ସଙ୍ଗେ ଏହି ପହିଲ ଦେଖା । ଦେଖିଲେ ମନେହୁଏ—କମ୍-ଭୂତ ! ବାଳଗୁଡ଼ାକ ଫୁର୍ ଫୁର୍ ଉଡ଼ୁଛି, ଦେମେଟା ଦେମେଟା ରଙ୍ଗ, ବେକଟା ସତେ କି କଏ ଉଷ୍ଟା ଦେଇ ଦେଇଛି । ଜଙ୍ଗଲିଆ ଭ୍ରୂଲତା ତଳେ ଘଟାଟୋପ ପରି ଆଖିପତା ଘୋଡ଼ାଇ ରଖିଛି ଖାରଡ଼ିଆ ଆଖିର ଗୁହାଣି । ବାଙ୍କୁଲି ନାକ ନକ ନକ କରୁଛି, ପୁଣି ଚାଲିବାର କେମିତି ଗୋଟାଏ ଦୋହଲିବା ଢଙ୍ଗ ଦେଖିଲେ

ମନେପଡ଼େ ଡିଆଁ ବଢ଼ିଲା ନଈରେ ଭାସିଲା କାଠ । କଥାବାର୍ତ୍ତା, ଚାଲିଚଳନ, ହାବଭାବ, କିମ୍-ଭୂତ !

ଅଧିକ କିଛି ବୁଝେଁ—ଆକାଶର କିମ୍-ଭୂତ ଓହ୍ଲାଇଛି ଦୁନିଆର ମଣିଷ ଉପରକୁ ; ଦୁନିଆର କିମ୍ଭୂତ ଚଢ଼ିଛି ଆକାଶର ବଉଦ ଉପରେ । ସବୁ ଧରାବନ୍ଧା ନିତିଦିନିଆ ଧାରଣା ଉପରେ ସେଇ କିମ୍-ଭୂତ ।

କେଉଁଠୁ ତାର ଜନ୍ମ ? କେଉଁ ଅଜଣା ଦରିଆର ଢେଉର ହାବୁକା ଏଇ କିମ୍-ଭୂତ !

ସାଧାରଣ ମଣିଷର ସରଳ ମନ ଉପରେ ହଠାତ୍ ସେ ଆଘାତ କରେ । ମୁହୂର୍ତ୍ତେ ତାର ନିତିଦିନିଆ ଧାରଣାକୁ ଦୂରକୁ ଫିଙ୍ଗି ମଣିଷ ଆଖି ରଗଡ଼ି ରଗଡ଼ି ଚାହେଁ । କିଛି ଅନ୍ତ ପାଏ ନାହିଁ କାହିଁକି ? ଆକାଶର ବଉଦ ସବୁଦିନେ ଏଇ ରୂପରେ ତାର ଆଖି ଆଗରେ ଠିଆ ହୁଏ ନାହିଁ । ବାଟର ବାଟୋଇ ଏଇ ଭେକରେ ସବୁଦିନେ ତାର ଧାରଣା ଆଗରେ ଚାଲିଯାଏ ନାହିଁ । ସବୁଦିନେ ଦେଖେ ନାହିଁ, ଭାବେ ନାହିଁ; ତେଣୁ ମଣିଷ ହଠାତ୍ ଚମକିପଡ଼ି ଭାବେ, “ଏ କଣ ?” ତାର ନିତିଦିନିଆ ଧାରଣା ଭିତରେ ଏ ରୂପ ସହଜେ ମିଶିଯାଏ ନାହିଁ—ଫୁଲ ବଗିଚାରେ ସାରୁଗଛର ପେଁହ୍ନେଁକାଳୀ ଫୁଲଟି ଯେପରି ମିଶେ ନାହିଁ, ସେମିତି । ସାରୁଫୁଲର ନିଜର କିଛି ବିଶେଷ ଗୁଣ, ବିଶେଷ କଥା ଅଛି, ଏ କଥା ମଣିଷ ଭାବିବାକୁ ଅବସର ପାଏ ନାହିଁ । ତାର ଦେହସହା ଧାରଣାରେ ଫୁଲବଗିଚା ଯେପରି ହେବ, ସେହି ଧାରଣା ଉପରେ ଦମ୍ଭ ହୋଇ ଠିଆ ହୋଇ ଏ ବେଢଙ୍ଗ ଅତିଥିକୁ ଦୂରରୁ ସମାଦର କରେ “ଦୂର୍ ପଲା, ଦୂର୍ ପଲା !”

ସାଧାରଣ ମଣିଷ ମୋଟାମୋଟି କରି ସବୁ କଥା ଦେଖେ । ଉପରୁ ଉପରୁ ଦେଖେ, ଆଉ ବୁଝେ ଏପରିଭାବରେ, ଯହିଁରେ ତାର ବୁଦ୍ଧି, ମରମ ଭାବ ଓ ଅନ୍ୟାନ୍ୟ ଶକ୍ତି ତାର ଜାଣତାରେ ଖରଚ ନ ହେବ, ବୁଦ୍ଧିର ପରିଶ୍ରମ ସେ ଜାଣି-ଶୁଣି କରିବ ନାହିଁ କୌଣସି ସାଧାରଣ କଥା ବୁଝିବା ପାଇଁ । ରାତି ପାହିଲା । ଆଲୁଅ ଆସିଲା । ତାର ନୂଆ ବିଚିତ୍ରତା କଣ, ତା ନିରେଖି ବୁଝିବାକୁ ଅବସର ନାହିଁ । ଦିନ ଗୋଟାକ ଏମିତି ଏମିତି ଚାଲିଯିବ । ଯେତେବେଳେ ବାହାର ପ୍ରକୃତି ଜୋର ଜବରଦସ୍ତି କରି ମଣିଷର ମନ ଉପରେ ବା ଇନ୍ଦ୍ରିୟ ଉପରେ ଜବରାନ ପ୍ରକୋପ କରିବ, ସେଠି ମଣିଷ ତାକୁ ମାନିନେବ । ମାନିନେବ, ସକାଳର ସୁଲୁସୁଲିଆ ବାଆ, ଗୁଲୁଗୁଲିଆ ଆଲୁଅ, ଆଉ ପ୍ରକୃତିର ଚହଲିଲା ଚହଲିଆ ନିଦୁଆ

ନଦୁଆ ଗୁହାଣି ମନ ଗୋଟାକ ଉପତ କଣଯାଉଛୁ । ମାନନେବ, ଉପଦ୍ଧବର ପୋଡ଼ା ଝାଙ୍କି ବେଳେ ଗୁଣଅତ୍ତେ ନଆଁ ପଶ ଖଗ । ବସନ୍ତର ବାରତା ଯେବେ ନଘଞ୍ଚ ଡାଳରୁ କୋଇଲି କହୁବ, ମଣିଷ ମାନନେବ—କୋଇଲିର ଡାକ ସବୁ ସୁନ୍ଦର ।

କନ୍ତୁ ସେତକ, ବେଶି ନୁହେଁ । ମୋଟାମୋଟି ସବୁ ସେନଯାଇ ଠିକ ବଚଯତାକୁ ମୁଣ୍ଡ ଟେକ ଗ୍ରହିବ ବ ନାହିଁ ଅଲପେ । ଏଇ 'ସାଧାରଣ' ଢଙ୍ଗରେ ଚଲ ଚଲ ମଣିଷ ତାର ନକଡ ଗଢ଼ୁଛ ଏଇ 'ସାଧାରଣ' ପାଇଁ, ତାର ମୋଟା-ମୋଟି ଜୀବନର ମୋଟାମୋଟି ଅଭିଜ୍ଞତା ବଳରେ । ସବୁ କଥାର ଦରଦାମ ସେ ଠିକଣା କରେ ଏଇ ସାଧାରଣ ଅଭିଜ୍ଞତା ଉପରେ । ତାର ନ୍ୟାୟ ଶସ୍ତ୍ର ହେଲାଣି ବନ୍ଧାଗତ । ତାର ଜୀବନ ହେଲାଣି ଛୁଟିନ୍‌ବନ୍ଧା ଧାସ । ଏଇ ଧାସ, ଏଇ ଅଭିଜ୍ଞତା ଯେନ ଯୁଗ ଯୁଗ ଧଣ ବୃହ୍ୟ ବସ୍ତୁଶବାର ସସ୍କାର ସାଇତା ହୋଇ ଆସିଛୁ; କନ୍ତୁ ଏ ବସ୍ତୁର ଧାସର ମୂଳରେ ରହୁଛୁ ମଣିଷର ସେଇ "ମୋଟାମୋଟି" ଦେଖା, ଯାହା ଅପେ ଆପେ ହୋଇଛୁ, ମନ ଉପରେ ବାହାର କଥାର ହାବୁକା ବାଜ, ଆପେ ଆପେ (ପ୍ରତଘାତ) ଉତାର ମାଡ଼ ହୋଇ ଯେତକ ଚନ୍ତା, ଯେତକ ଅନୁଭୂତ ବାହାରଛୁ, ତାଣଦ୍ୱାସ । ତାଶଦ୍ୱାସ ଯୁଗ ଯୁଗର "ସାଧାରଣ" ଅଭିଜ୍ଞତାରେ ତଆଣ ହୋଇଛୁ ସାଧାରଣ ଧାସ (Norm) ।

ଅତଏବ ଦୁନଆର ଦଶନ୍ଲୋକେ ଗୋଲୁପଲ ପଣ ଗ୍ଭଲନ୍ତି ଆମେ ହେଇ ସୁରୁଣା ବାଟରେ । ସବୁଥିରେ ଅମର ଧାରଣାରେ ସସ୍କାର ରହୁଛୁ । ଯାହା ଏ ଗୁନ୍ଦାବନ୍ଧା ଧାରଣାରେ ନ ପଡ଼ିବ, ସେ ହେବ "ବେଢଙ୍ଗ" । ତାକୁ ଜାଗା ଦେବାକୁ ବନ୍ଧାଗତର ଧାରଣା ଭିତରେ ସ୍ଥାନ ନାହିଁ । ସେ କମ୍‌ଭୂତ ।

କନ୍ତୁ ଏପର ତ କେହି କେହି ଅଛନ୍ତି, ଯେଉଁମାନଙ୍କୁ ଦଶପଳର ବନ୍ଧା-ବାଟ ଲାଗେ ଅଡ଼ୁଆ, ବନ୍ଧାଗତର ସସ୍କାର ସନ୍ୟତା ଲାଗେ ଅଶୁଦ୍ଧ । ପଡରଚନ୍ଧ 'ଢେଙ୍ଗା' ପର ସେମାନଙ୍କର ନଅସ କଣରେ ବଡ଼ା । 'ସାଧାରଣ'ର ମୋଟା ସୁନ୍ଦର ସେମାନଙ୍କର ସୁନ୍ଦର ନୁହେଁ, ଘନ ବରଷାର ମୋହ ଅଭ ମାଟିକାଦୁଅ ପାଣିପଙ୍କରେ ଯୋଗ, ତୋଫାନର କୁହାଟ, ଅଭ ଆକାଶ-ଫଟା ବଜୁଳର ହସ ସେମାନଙ୍କୁ କରେ କୂଳରୁ ବାହାର । ଖାଁ-ଖାଁ-ମଶାଣି ଭୂଇଁରେ ଚକ୍ ଚକ୍ ହାଡ଼-କଙ୍କାଳ ଭିତରେ ସେମାନେ ଖୋଜନ୍ତି ସୁନ୍ଦରମା । ସେମାନଙ୍କ ଭୂତ ଅଲଗା—ଦୁନଆର ବନ୍ଧାଗତରେ ବନ୍ଧା ନୁହେଁ । ଦୁନଆ ସେମାନଙ୍କୁ ତରକ ତରକ ଗ୍ଭହେଁ । ଦୁନଆ ଆଖିରେ ସେମାନଙ୍କ ମୁଣ୍ଡରେ ଗୋଳମାଳ ରହୁଛୁ । ଦୁନଆ ଅଖିରେ

ସେମାନେ ଜାଅନ୍ତା ଭୂତ, କମ୍‌ଭୂତ । ଦୁନିଆ ସାଙ୍ଗେ ସେମାନେ ଆଖିକୁ ଆଖି ମିଳାଇ ଦେଖିପାରନ୍ତି ନାହିଁ ।

ଏତକ ଯେଉଁ କମ୍-ଭୂତ ଗୁଣ, ସେ ଦୁନିଆର ସୁନେଲି ଧାର ଭାଙ୍ଗି ଦିଏ । ଏପରି ଲୋକ ବାସ୍ତବରେ ତ ପାଗଳ । ଦୁନିଆ ଯାହାକୁ ସ୍ଥିର, ଶାନ୍ତ, ମୋଟାମୋଟି ଧାରଣାର ମଣିଷ ବୋଲି ଜଣାପଡ଼େ ଧରି ନେଇ ଯାଉଛି, ଏମାନେ ସେଥିରୁ ବାହାର; ତେଣୁ ଅନେକ ଆପେ ସେମାନେ 'ଭଲ ମଣିଷ' ନାହିଁ ହୋଇଗଲେ । ମନ ଭିତରେ କୌଣସି ଗୋଟାଏ ଗୁଣ ଏମାନଙ୍କର ଅଧିକ ବଳି ପଡ଼ୁଛି । ସବୁ ଭାବ ଭିତରେ ଯେଉଁ ପୋଷାପଣର ସମସ୍ତ ରହିଛି, ତା ସେମାନଙ୍କର ଲୁଚିଛି; ତେଣୁ ସେମାନେ କମ୍-ଭୂତ । ଗୋଟାଏ ଗୁଣ ବଢ଼ୁଛି; ତେଣୁ ସାଧାରଣରେ ସେ ଗୁଣର ଯେପରି କିମ୍ବା, ତାଠୁ ଆହୁରି କିଛି ଅଧିକା ବାହାରୁଛି, ଯାହା ସଚରାଚର ଆଖିରେ ପଡ଼େ ନାହିଁ । ସେଇ ବଳକା ଶକ୍ତି ଅପର 'ମୋଟାମୋଟି' ସ୍ତରର ଭାବଗୁଡ଼ିକୁ ଯୋଡ଼ାଇ ଦେଇଛି । ଅତଏବ ମପାଚୁପା ବିଧାନର ବାଡ଼ ଭାଙ୍ଗି ଆକାର ଯେପରି ଦିଶୁଛି, ସେଥିରେ ଲୋକଟିକୁ ସହଜରେ ଲୁହାଯିବ—"କମ୍-ଭୂତ ।" ସେଇ କମ୍-ଭୂତ ଭାଙ୍ଗିଛି ହସାବୀ ଦୁନିଆର ଲୁହାର ବାଡ଼, ଓଲଟାଇ ଦେଇଛି ଦୁନିଆର ସବୁ ନ୍ୟାୟ ବ୍ୟବହାର ନକଲ ।

ଯେଉଁଠି ଛପିଛପିକା କମ୍-ଭୂତର ଗୁଣ ହଠାତ୍ ବାହାରପଡ଼େ, ସେଠି କଳା ଉପରେ ସେ ବଡ଼ ପ୍ରଭାବ ପକାଏ, ତାର ପ୍ରକାଶର ଗଢ଼ ଆଉ କ୍ରମ ଉପରେ, ପ୍ରକାଶର ଉପକରଣ ଉପରେ, ତାର ଧାରଣା ଉପରେ । ସବୁନ୍ତିକୁ ସେ ନିଜର ରଙ୍ଗରେ ରଙ୍ଗାଇ ଦିଏ, ସମସ୍ତିଙ୍କୁ ନିଜର ଧରଣରେ ବାଗେଇ ଦିଏ ।

କଳାର ଗଢ଼ିବା ମାଟି ଉପରେ କମ୍-ଭୂତ ତାର ଅପରୂପ ରୂପ ଫିଟି ଦେଇଯାଏ; ତେଣୁ ଗଢ଼ଣ ଦିଶେ ଆଗ ପଛ । କଥାଟି ଆରମ୍ଭ ହେଲା, ଆଗ ମଝି ଦେଇ ଧୀରେ ସୁସ୍ଥେ ଶେଷଅଡ଼କୁ ନଇଁଯାଅନ୍ତା । ତା ନାହିଁ, ଯେଉଁଠି ଯେତେ କଥା ରହିଛି ଅକୁହା, ସେଇଠି ପଡ଼ିଲା ପୂର୍ଣ୍ଣଚ୍ଛେଦ । ନାୟିକାର ମୁଣ୍ଡବନ୍ଧା ସଇ ନାହିଁ, ନାୟକ ତାର ସଫଳତା ପାଇଁ; କିନ୍ତୁ ପାଇନାହିଁ ଜେଣେ ପ୍ରତିଦ୍ୱନ୍ଦୀ ଯେ ଥିଲି ଧଡ଼ି ତଳେ । ତାର ଭାଗ୍ୟ ଖୋଲିବା ଉପରେ । ଏପରି ହେଉଁ ସନ୍ଦେହର ମଇନ ସଞ୍ଚ, ମେଘଳକବେଳେ ଶୁଣିଲା କଳମରୁ କାଳି, କଥା ସରିଲା ।'

ନୋହିଲେ ଘଟଣାର ପରମ୍ପରା ସହିତ ସମ୍ବନ୍ଧ ଥିଲା ପରି ଲାଭ ନାହିଁ, ଦଶ ଲୋକଙ୍କ କଥା ଯେପରି କୁହା ହେଉଛି ଏକା ମୁହଁରେ; କିନ୍ତୁ ଦଣ୍ଟା ଦିଅରେ । କମ୍‌ଭୂତର ପ୍ରଭାବକୁ କେତେ ନୂଆ ରୂପ ଆମେ ଦେଖୁଁ ନିତି ନିତି ।

କଳ୍ପନାରେ ସେହିପରି, ଯେପରି କଥା-ଚେଳରେ । ଚରଘନ ଯେଉଁଠି ଯେତେ ପ୍ରକାର ଧବବନ୍ଧା ବର୍ଣ୍ଣନା ଶୁଣି ଶୁଣି କାନରେ ଅଭ୍ୟାସ ପଡ଼ିଲେଣି, ଆଜ କମ୍-ଭୂତ କବ ଦେବେ ନୂଆ କଥା, ଅକଥା । ବରହରେ ହସ ପୁଣି ଫୁଲହାର, ମିଳନରେ ଆଖିର ଲୁହ । ପ୍ରଣୟର ଶେଷ ମହୁଆରେ ବସନ୍ତର ମଳୟ ନୁହେଁ, କୋଇଲି ନୁହେଁ, ଖାଲି ମାଛିକାଦୁଅର ଗାଁ ବାଟ, ଯେଉଁଠି ଗୋରୁପଲ ଗୁଳ୍ଳଛନ୍ତି ଗଡ଼ ଗଡ଼, ପୂନେଇଁର ଚାନ୍ଦ ଚାହୁଁ ନାହିଁ ଆନନ୍ଦର ପୁଲକରେ ସୁନ୍ଦରୀମାର ଅଞ୍ଚଳ ଧରି । ପୂନେଇଁର ଚାନ୍ଦ ଆଜ ଭିକାରୁଣୀ !

ଭିତରର ଆତ୍ମା ତାର ଅଣ୍ଡା, ବରଫ ପରି ଅଣ୍ଡା, ବାହାରର ଛଇ ଯେପରି ମଡ଼ାମୁହଁର ଶୁଖିଲ ହସ, ଗ୍ଲେସ ଚକଚ ଗୁହାଣି ନୁହେଁ ଅଭିସାରିକାର ଗୁହାଣି ତାର କରୁଣ, ଭିତରର ଶୂନ୍ୟତାର ଗୋଟିଏ ନର୍ଦ୍ଦବ ଦୁର୍ବଳ ଛାଇ, ଆଖିର ଗୁହାଣି ନୁହେଁ, ପଥରର ଛାଇ । ପୁଣି ସେହିପରି ଦୁନିଆର ସୁନ୍ଦରୀମାର ସହଜ ଢମ ଲାଗେ ରେଲଗାଡ଼ିର ଅନବରତ ଘଡ଼୍‌ଘଡ଼୍ ପରି କଂପ୍ରିତେ, ସଜ ପବନ ଲାଗେ ସାବୁଜା ଘାସର ଶାଉଁଳିଆ ରଙ୍ଗ ପରି ।

ପୁନେଇଁର ଚାନ୍ଦ ପୁଣି ଭିକାରୁଣୀ ! ସଜ ପବନ ପୁଣି ସାବୁଜା ଘାସ ! କେଉଁଟା ହେଲା କପରି ? ସବୁ କମ୍-ଭୂତ ।

କଳାର ଥାଏ ଯେଉଁ କଅଁଳ ମରମ ଭାବ, କମ୍‌ଭୂତର ହାତ ବାଜ ସେ ପୁଣି ହୋଇଯାଏ ଅରଣା । କେଉଁଠି ମରମ ଭାବ ମିଶେ ଚଳ୍ପାରେ, କେଉଁଠି ରୂପ ମିଶେ ରସରେ । କେଉଁଠି ଯାତପାଞ୍ଚ ଭାବର ଥର ମଣିଷ ଦଶେ ଗୋଟାଏ ଭାବର ଖଣ୍ଡିଆ-ଭୂତ ପରି । ସାଧାରଣ ମିଶାମିଶି, ଯୋଖାଯୋଖି, ଖେଳାଖେଳି, ଯେଉଁ ପୂର୍ଣ୍ଣତା ତାକୁ ହସାଇ ହୁଏ ଗୋଟାଏ ଗୁଣ, ଗୋଟାଏ ଭାବ, ଗୋଟାଏ ଖିଆଲର ସୂକ୍ଷ୍ମ ଗୁଣ, ଯାହା ସଚରାଚର ସାଧାରଣଙ୍କ ଦୁନିଆରେ ଦଶେ ନାହିଁ ।

କମ୍-ଭୂତର ଧରଣ ବହୁତ । ଯାହା ବାଡ଼ ଭିତରେ ରହିଛି, ହତା ଯେତେ ବଡ଼ ହେଉ ପଛେ, ଶେଷରେ ଗଣାଗଣି କରି ହସାବ ରଖା ହୋଇପାରେ, ବା, ଯାହା ବାଡ଼ ସେ ପାଖେ ରହିଲା, ତାକୁ ଗଣିବା କାଠିକର ପାଠ ।

ଲୋକେ କହନ୍ତି, କମ୍-ଭୂତ କୁଆଡ଼େ ସିଧା-ବାଟରୁ ଅବାଟକୁ—ଅସୁନ୍ଦର ବାଟକୁ ଗ୍ଲଯାଏ । ସେ ତ କମ୍‌ଭୂତର ମୂଳ ଧାରଣାରେ ରହିଛି । କମ୍-ଭୂତ ହେଲେ ହିଁ ମଡ଼ା ବାଟରୁ ଅମଡ଼ା କଥା ଆପେ ଆପେ ଉଠିବ; କନ୍ତୁ ସବୁ ଅମଡ଼ା ବାଟ କଣ ଅସୁନ୍ଦର ? ଆମର ଦେଖାପରଖା ଜଣେଇ (ଅଭିଜ୍ଞତା) ବାହାରେ

କଣ ଆଉ ଆଉ ବାଟ ନାହିଁ, ଯାହା ଆମର ଅଜଣା; କିମ୍ବା ଜଣା କଥାଠୁଁ ଆହୁରି ଭଲ, ଆହୁରି ସରସ ? ଯୁଗକୁ ଯୁଗ ବାଟ ବଦଳୁଛି; କିନ୍ତୁ ପୂର୍ବେ ଯାହା ଥିଲା, ତାଠୁଁ ଆଜି ଯାହା ହେଲାଣି, ସେ କଣ ଅସୁନ୍ଦର ?

ଲୋକେ କହନ୍ତି, କମ୍‌-ଭୂତ ଅପୂର୍ଣ୍ଣ । ପୂର୍ଣ୍ଣତା ଥିଲେ ସ୍ୱରଆଡ଼ର କଥା ଥାଏ; ପୁଣି ଏପରି ସମ୍ବନ୍ଧ ରଖିଥାଏ, ଯହିଁରେ ଫୁଲ ଦଶିବ ଫୁଲ ପରି, ମଣିଷ ଦଶିବ ମଣିଷ ପରି । କମ୍‌ଭୂତ ଏ ସମ୍ବନ୍ଧ ଭାଙ୍ଗିଯାଏ । ଫୁଲକୁ ଫୁଲ ରହୁଛି, କିନ୍ତୁ ଗୋଟାଏ ନାଲି ପାଖୁଡ଼ା ମୋଡ଼ି ମୋଡ଼ି ହୋଇ ସମସ୍ତିଙ୍କ ଉପରେ ଗଜୁରି କଲାଣି । କଳାରେ ସେହିପରି ଚରିତ୍ରର ଗୋଟାଏ ଗୁଣ ଅନ୍ୟ ଗୁଣଗୁଡ଼ିକୁ ଯୋଡ଼ାଇ ପକାଇଛି । ସମସ୍ତେ ସାଧାରଣରେ ଯେଉଁ ଯେଉଁ ଉପକରଣକୁ ଯେପରି ଭାବରେ ମିଶାଇ ସଜାଇ ଥାଆନ୍ତି, କମ୍‌-ଭୂତ କଳାରେ ସେପରି ମିଶାମିଶି ନାହିଁ ।

କିନ୍ତୁ 'ପୂର୍ଣ୍ଣତା' ବିଷୟରେ ସମସ୍ତିଙ୍କର ଧାରଣା ଏକ ନୁହେଁ । ସାଧାରଣଙ୍କର, ସାଧାରଣ ବୁଝାଳିଙ୍କର ଧାରଣାର ବାହାରେ ମଧ୍ୟ ପୂର୍ଣ୍ଣତା ରହିପାରେ, ଯାହା ସେମାନଙ୍କ ମୋଟାମୋଟି ପୂର୍ଣ୍ଣତାଠାରୁ ଅଲଗା, ହୁଏ ତ ଆହୁରି 'ପୂର୍ଣ୍ଣ' । ବନ୍ଧାଗତର ସଙ୍କେତ ସବୁବେଳେ ଠିକ୍ ନୁହେଁ । ବନ୍ଧାବାଟର ବାଟୋଇମାନେ ହେନ୍ତୁ ମାନ୍ଧାତାଙ୍କ ଅମଳରୁ ଗୋଟାଏ ପାଖରୁ ବାଟକରର ନିତିଦେଖା ଗଛପତର, ଘରବାରି, କୋଠା ଇଟା ଦେଖି ଦେଖି ଗ୍ଲୁଲିଛନ୍ତି । ସେଇ ଦେଖାରୁ ସେମାନେ ବାଟକରର ନିତିଦେଖା ଜିନିଷ ବିଷୟରେ ଧାରଣା କରିଛନ୍ତି । ସେଇ ଗୋଟାଏ ଦିଗରୁ ତାଙ୍କର ପୂର୍ଣ୍ଣତାର ଧାରଣା । ବେକରେ ଯୁଗ ଯୁଗର ଯାଉଁଳି, କାନ୍ଧରେ ଯୁଗ ଯୁଗର ବୋଝ, ସାମନାରେ ଯୁଗ ଯୁଗର ଲକ୍ଷ୍ୟସ୍ଥାନ ବାଟ, ଯହିଁରେ ଘୂରି ଘୂରି ଗ୍ଲୁଲିଥିବା ହେଉଛି ସୃଷ୍ଟିର ଆଉ ସଂସାରର ନିୟମ । ଅବାଟ ବାଟେ ବାଟ ଭାଙ୍ଗିବା, ବାଟ ଯେ କରରେ ଢୁଦ ଉପରେ ବସି ଆରପାଖୁ ନିତିଦେଖା ଜିନିଷ ଦେଖିବା, କାହିଁ ଏତେ କଥା କରିବାକୁ ସମସ୍ତଙ୍କର ଅବସର ? ଠିଆ ହୋଇ ଗ୍ଲହିଁବାକୁ ତର ନାହିଁ, ବୁଲିପଡ଼ି ହେଲାରେ ଦେଖି ଏଠି ସେଠି ମୁହଁ ମାରି ଯିବାକୁ ସୁବିଧା ନାହିଁ । ଯାହାର ସେପରି ସୁବିଧା ହେବ, ତୁନିଆର ଜ୍ଞାନ ଉପରେ ଯାହାର ଆସିବ ବଳକା ଚେତା, ତା କଥା ନାଲି ସଡ଼କର ଦଶ ଜଣ ବାଟୋଇ ବିଶ୍ୱାସ କରିବେ ନାହିଁ ସତ; ତା ବୋଲି ତାର କଣ ଭୁଲ ?

ଲୋକେ କହନ୍ତି, କମ୍‌-ଭୂତ କଳାରୁ କଳାର ଆନନ୍ଦ ମିଳେ ନାହିଁ । କାହିଁ କବିଏ ଲେଖନ୍ତି ଗୋଲାପ ଫୁଲ କଥା, ବାସ-ଚହଟା ମଧୁ-ମାଳତୀର

କଥା, କେତେ ସୁନ୍ଦର କଥା; କମ୍-ଭୂତ କବି ଲେଖିବେ ଅସନା ଅପୋଛା ମଲମୂଣ୍ଡି ଅଙ୍କ କଥା, ବରଷା ଛୁଆ ଖତଗଦାର ମାଛିଆ ଗୋବର ଛତୁ କଥା, କଣ୍ଠାବାଉଁଶୀ ବଣର କଥା, ଯେତେ ନଙ୍ଗୁଳା ଯାବତ—ସବୁ । ଅତଏବ କମ୍-ଭୂତ ଭିତରେ ଆନନ୍ଦ ନାହିଁ, ଏଇ ସମସ୍ତଙ୍କର ସଫା ଜବାବ ।

କିନ୍ତୁ ଆନନ୍ଦ ବିଷୟରେ ମଧ ଦଶ ଜଣଙ୍କ ମତାମତ ଯେନ ଚଳି ହେବ ନାହିଁ । କଳା-ଶକ୍ତି ଯଦି ପ୍ରକୃତରେ ଅବତାର ପାଇଥାଏ, ତେବେ କଳାର ଭିତର ଦେଖା ଯାଉ ସତ ଗୁଣ ଆପେ ଆପେ ଫୁଟି ବାହାରିବ । ସତ ଅଭ ଆନନ୍ଦ, ଏ ଦୁଇଟି ଏକ ସଙ୍ଗରେ ଗୁନ୍ଥା ହୋଇଅଛି । କମ୍-ଭୂତ କଳା କଳାରୁ ବାହାର ନୁହେଁ; କଳାର ଗୋଟାଏ ରୂପ ମାତ୍ର । ତା ପରେ ଆନନ୍ଦ ବିଷୟରେ ସମସ୍ତଙ୍କର ସମାନ ଧାରଣା ନୁହେଁ । ଅନେକ ସମୟରେ ଅନେକ କଥା ଏତେ ଦୂର ଆନନ୍ଦ ପାଇଁ ବନ୍ଧା-କଥା ହୋଇଯାଇଛି ଯେ, ସେ ଲାଗେ ଅତି ନୀରସ, ସାଧାରଣ ଲୌକିକତା ପରି ।

ପୂର୍ବକାଳରେ ଯେଉଁ ସବୁ ବନ୍ଧେଇ ବର୍ଣ୍ଣନା ଥିଲା, ତାର ଫଳ ଠିକ୍ ସେମିତ ହେଲା । ବସନ୍ତ ବର୍ଣ୍ଣନା କରିବାକୁ ଯାଇ କିଏ ନ ଲେଖିଥିଲା ପଳାଶ ଅଶୋକ ଫୁଲର କଥା, ଭଅଁରର କଥା, ଆମ୍ବ ବଉଳ ଆଉ କୋଇଲି କଥା ? ସେଇ ସେଇ ବର୍ଣ୍ଣନା, ଘୋରଡେଇ ପୋରଡେଇ, ଏ ପୋଥିରେ ସେ ପୋଥିରେ ସବୁ ପୋଥିରେ । ଲେଖାଳି ଯେତେବେଳେ ଲେଖୁଥିଲେ, ସେମାନେ କଣ କଳା-ଶକ୍ତିର ପ୍ରେରଣାରେ ପାଗଳ ହୋଇ ଏତେ ଲେଖୁଥିଲେ, ନା ଚଟି ମୁଣ୍ଡରେ ଓଁଟି ପରି ସେମାନେ ଏସବୁ ମାମୁଲି ଗତ ବୋଲି ମାନି ନେଇଥିଲେ ? ସବୁପ୍ରକାର ବନ୍ଧେଇ ବର୍ଣ୍ଣନା, ବନ୍ଧା-ଗତ ଗୁଡ଼ିକଗଲେ ପୁରୁଣା ଆନନ୍ଦର ଧାରଣା ଯେନ ଟିକିଏ ଅସୁବିଧା ଘଟିପାରେ, ଯେଉଁମାନେ ଏକା ଥରକେ ଆଖି ବୁଜେଇ ନେଇ ନିକୁସ୍ତ କମ୍ ମୁଣ୍ଡ ଖର୍ଚ୍ଚ କରି କଳାରୁ ଆନନ୍ଦ ପାଆନ୍ତି, ସେମାନଙ୍କ ପକ୍ଷରେ । କମ୍-ଭୂତ କଳା ଧରନିଏ, ଭୁଝାଳି ହତିତ ଅବଧାନରେ ବୁଝିବାକୁ ଢଆର । ବୁଝାଳି ସେଥିଲାଗି ନିଜ ଭିତରର ବନ୍ଧା-ଗତର ଦୁର୍ବଳତା ଲଙ୍ଘିବାକୁ ପ୍ରସ୍ତୁତ । ବୁଝାଳି ସବୁ ଆଗରୁଥ ଧାରଣା ପଛକୁ ପକାଇଛନ୍ତି । ଏତେ କଲେ ଆନନ୍ଦ ଅଟକି ରହିବ ନାହିଁ, ଯଦି ପ୍ରକୃତ କଳା ହୋଇଥାଏ; କିନ୍ତୁ ଏତକ ଲାଗି ଧୈର୍ଯ୍ୟ ଦରକାର ।

ଶିଳ୍ପୀ କାହାରି ଆଇନରେ ବନ୍ଧା ନୁହେଁ, କାହାରି ମର୍ଜି ଯୋଗାଇବାକୁ କଣା ନୁହେଁ । ଯେଉଁ ବାଟ ତାକୁ ଦଶିବ, ସେଇ ବାଟେ ସେ ଯିବ । ତହିଁରେ

ଆଇନ ଅମାନ୍ୟ ହେଲେ ତାର ଖାତର ନାହିଁ । ତେଣୁ ଶିଳ୍ପୀକୁ ସହାନୁଭୂତ ଦେଇ ଖୋଲଚାଢ଼ ଦେଖିବାକୁ ମନ କରି ଲଗିଲେ ତାର ହାତକାମର ବୁଝାଶୁଝା ହେବ, ପରେ ଧର୍‌ଦାମ ବା ହୋଇପାରେ । ଦାହାବ୍‌ର ଆଇନ ଦଶଲୋକଙ୍କ ଅଧ-ଦେଖା ଉପରେ-ଠାଉରିଆ ଧାରଣା ଘେନ ଦେଖିବାର ଢଗ ନ ବଦଳାଇ ଲଗିଲେ ଶିଳ୍ପୀର ଉଚିତ ବୁଝାମଣା ହେବ ନାହିଁ; କାରଣ 'ଲୋକଙ୍କୁ' ଯାହା ଠିକ୍, 'ଲୋକକୁ' ତା ଠିକ୍ ନ ହୋଇପାରେ—ବିଶେଷରେ କଳାରେ, ଯେଉଁଠି କ ନଧାର୍ଯ୍ୟ ନକ୍‌ତ ନାହିଁ ।

କାନ୍ଥରେ ଛବି ଅଙ୍କା ହୋଇଛି, ଛାଉରେ, କଳାରେ, ଚୂନରେ । ଜାତଜାତକା ଛବି—ଯେଉଁଠି ମଣିଷ, ଗାଈ, ଘୋଡ଼ା, ଗଛ କିଛି ଠିକ୍ ବୁଝାପଡ଼ୁ ନାହିଁ । ବାଟର ବାଟୋଇ ଥରେ ଗୁହିଁ ଦେଇ ହସି ହସି ବାଟ ଗ୍ଲେ । ପୁଣି ସେପରି ଛବି ନାମଜାଦା ଛବି ଘରମାନଙ୍କରେ ଦେଖେ, ବଡ଼ ବଡ଼ ନାଁ, ବଡ଼ ବଡ଼ ଶିଳ୍ପୀ । ଆଁ କରି ଗୁହେଁ; କିଛି ବୁଝି ନ ପାରି ଦୂରରୁ ଭକ୍ତିର ଅଞ୍ଜୁଳା ଟେକେ ।

ସରୁ ସରୁ ଆଙ୍ଗୁଠିରେ ନୂଆବୋହୂଟି ପକାଏ ଚିତା ଗୋବରଲିପା ମାଟିଭୂଇଁରେ । ଧଳା ପିଠୋଉ କଥା କହେ । କେତେ ଜାତର ଛବି ଫୁଟି ଉଠେ—ଫୁଲ, ଫଳ, ଗଛ, ଚଢ଼େଇ । ସବୁ ସତ ସତ ହୁଏ ନାହିଁ, କିନ୍ତୁ ସୁନ୍ଦର ଦିଶେ । କାହିଁର କଣ ସଙ୍କେତ ଲୁଚି ରହେ, ଭୂଇଁର ପ୍ରତି ଦାଗରେ ମନର କେତେ ଖିଆଲ, ସପନର କେତେ ଆଶ୍ୱାସ ! ପଗ୍ଭରିଲେ ଚିତାକୁଟାଳୀ କହିପାରିବ ନାହିଁ, ଚଢ଼େଇ ମୁଣ୍ଡୁଳାର ଧଳା ଉଇଁଶି ମଝିରେ ଛାଉ ଠୋପାଟି କି ଉପକାରରେ ଲଗିବ, କଣ ତାର ସଙ୍କେତ, କଣ ତାର ଭାଷା । କଳା ଯେପରି କମ୍-ଭୂତ ! କିନ୍ତୁ ସୁନ୍ଦର ଦିଶେ । କେତେ ଲୋକ ଭଲ ପାଆନ୍ତି, କେତେ ଲୋକ ଶ୍ରେଷ୍ଠ ମନର ଟିକ ଖିଆଲଟିକୁ ଗୋଡ଼ରେ ଠେଲ ଦିଅନ୍ତି । କିନ୍ତୁ କାହାର ଭୁଲ୍ ? କାହାର ଠିକ୍ ? ଯେ ରସ ଘେନ ପାରେ, ସେ ଚନ୍ଦ୍ରାବି କହିବ ଠିକ୍ ? କାହାର ଆଇନରେ ବିଗ୍ଭର ହେବ ?

କିନ୍ତୁ ଅସୁବିଧା ପଡ଼େ ସେଇଠି, ଯେଉଁଠି କଳାର ରୂପ ଏପରି ଅସ୍ପଷ୍ଟ ଯେ, ଯେ ଯାହା କରୁ, ଯାହା ଲେଖୁ, ବାହାରକୁ ଯେତେ ବେଢ଼ଙ୍ଗ, ବେ-ସୁରି ଲଗୁ, ତାର ଡିଆରି ଦେଲାର ପ୍ରତି ଝିଅ ସେମାନେ ଧରିପାରନ୍ତେ, ତା ହେଲେ ପୃଥିବୀରେ କଳାର ଜୂଆର ଆସନ୍ତା, ସବୁ କଥାରେ କଳାର ରସ ଘେନ ହୁଅନ୍ତା; କିନ୍ତୁ ତା ସମ୍ଭବ ନୁହେଁ—ସାଧାରଣରେ ସମ୍ଭବ ନୁହେଁ । ଯେତେଠି ଯେତେ-

ବେଳେ ସମ୍ଭବ ହୋଇଛି, ସେତେବେଳେ କଳାର ପାଖ ପଶିବା ଘଟିଛି, ସେତେବେଳେ ଦଶ ଜଣଙ୍କର 'ଧଳା', 'କଳା' ବୋଲି ପ୍ରମାଣ ପାଇଛି । ସେଇ ଦଶଜଣଙ୍କେ ଶେଷରେ ତାଙ୍କୁ 'କଳା' ବୋଲି ଘେନ ପାରନ୍ତି । ସେଇମାନେ ପୁଣି ବୁଝି ପାରନ୍ତି, ଯାହାକୁ ଢପ୍ ବୋଲି ଫୋପାଡ଼ି ଦେଉଥିଲେ, ତାହାର ଭିତରେ ରହିଛି କଳାର ମୂଳ ଗୁଣ ।

କିନ୍ତୁ ପ୍ରକୃତରେ ଯଦି କଳା-ଶକ୍ତି ଶିଳ୍ପୀ ଉପରେ ଉଠିଆଏ, ତେବେ କଳାର ମୂଳ ଗୁଣ ଟିକିଏ ବେଶି ପରିଷ୍କାର ହୋଇ ଦେଖାପଡ଼ିବ । ମଣିଷର ମୂଳ-ଗୁଣ ଉପରେ ଝଣା-ଓଝଣା ପଡ଼ି ବେଶୀ ଜୋରରେ ତାର ରୂପ ପ୍ରକାଶିବ । ଅତଏବ ଖାଲି କମ୍-ଭୁତ ହେଲେ ଚଳିବ ନାହିଁ; କମ୍‌ଭୁତ କଳା ହେବା ଦରକାର । ଅଧେ କଳଆର ମଙ୍ଗି ହେଉଛି ଶୁଦ୍ଧ କମ୍-ଭୁତକୁ କମ୍-ଭୁତ କଳାର ଆସନରେ ବସାଇବା ପାଇଁ ଦାବୀ କରିବା । କଳାର ମୂଳ-ଗୁଣ ନେଇଁଠି ନାହିଁ, ଖାଲି ପ୍ରକାରର ଉପାସ୍ଥରେ କମ୍-ଭୁତ କଲେ କିଛି ଫଳ ନାହିଁ । ନୂଆ ଧରଣ ଦେଖି ବରକ୍ତ ଆସିବ, ଚମକ ଆସିବ; କିନ୍ତୁ ଫଳ ହେବ ନାହିଁ କିଛି । ବାଇବଜ୍ଜର ଖସନ୍ତା କାଠି-ଲୁହା, ଜୀବନ ନାହିଁ, ଚେର ଧରିପାରିବ ନାହିଁ, ଯୁଗ ଯୁଗରେ ମଣିଷ ଅଭିଜ୍ଞତାର ଭୂଇଁରେ ।

ଶିଳ୍ପୀର ଦୁର୍ବଳତା, କମ୍-ଭୁତର ଦୋଷ ନାହିଁ । ପ୍ରତି ନୂଆ କଥା ତ ଆସେ କମ୍-ଭୁତ ବେଶରେ । ଶିଳ୍ପୀ ସଙ୍କେତ ଦେଇ ଖାଲି ଶାଢ଼ୀର ଧଡ଼ି ଆଙ୍କି ଫୁଟାଇଲେ ସୁନ୍ଦରମା, ନୋହିଲେ ଅଖିର ସ୍ଵହାଣିଙ୍କୁ ଛବି ଭିତରେ ବଡ଼ତି ଦେଇ ଦେଖାଇଲେ ମନର ଭାବ । ଦେହ ତୁଳନାରେ ଗୋଟିଏ ଗୋଟିଏ ଅଙ୍ଗର ଏ ଉତ୍କର୍ଷ କଲି ସାଧାରଣଙ୍କ ଆଖିରେ ବିରୂପ ସଙ୍କେତ କଲା । ମନର ଭାବ, ଉପମା, ଏସବୁ ପାଇଲି ବେଶୀ ପ୍ରଶ୍ରୟ, ସୁନ୍ଦରୀ ମୂର୍ତ୍ତିରେ ହରିଣୀ ଅଖି, ଶୁଆ ଥଣ୍ଟର ନାକ ଅଙ୍କି । ଅଂଶର ପରସ୍ପର ସମ୍ବନ୍ଧ ଭିତରେ ଗୋଳମାଳ ଘଟିଲି; କିନ୍ତୁ ସେ ହେଲି ଉଚ୍ଚ କଳା ।

କଳାରେ ନୂଆ ନୂଆ ଯେତେ ism, ସବୁ ପ୍ରଥମେ ଆସିଲି କମ୍-ଭୁତ ବେଶରେ ।

ଖାଲି ସେତିକ ନୁହେଁ, ରୁଚିନିବନ୍ଧା ସାଧାରଣ ଜମ ପରେ ଯାହା କିଛି ନୂଆ, ସବୁ କମ୍-ଭୁତ । ସ୍ଟେଶନ୍‌ରେ ସହଜ ମନର ଭାବ ଧାରି ସଭ୍ୟ ହୋଇ ସମସ୍ତେ ବସିଛନ୍ତି । ଗୋଟିଏ ପିଲି ବଡ଼ପାଟିରେ ହସି ଉଠିଲି । ସେଇ ହେଲି କମ୍-ଭୁତ । ଅବଧାନଙ୍କ ବେତ ଗର୍ଜି ଉଠିଲି । ସେ କମ୍-ଭୁତ ନୁହେଁ; ସେ

ସାଧାରଣ ଜମ । ସେହିପରି ଆକାଶର କଳା ବାଦଲ ଫୁଟିଯାଇ ମୁହୂର୍ତ୍ତେ ପରିଷ୍କାର ଜହ୍ନ ଆଲୁଅ ଅନ୍ଧାରୁଆ ନଈ-ପଠା ଉପରେ ସୋରିଷ ଫୁଲ ବିଛି ଦେଇଗଲା । ହେଲ କିମ୍-ଭୂତ । ଘନ ରାତିରେ ମୁହୂର୍ତ୍ତେ ଜହ୍ନ ଆଲୁଅ ଖେଳିଗଲା, ଆକାଶର ବାଦଲଗୁଡ଼ାକ ଦୋହଲି ଉଡ଼ିଗଲେ । ସକାଳ ହେଲା ବୋଲି କାଉ ପକ୍ଷୀ ମିଟିମିଟି କରି ଡାକିଲେ—"କାଆ କାଆ"—ସେଇ କିମ୍-ଭୂତର ଉଦ୍‌ବୋଧନ ।

କଳାର ସ୍ରୋତ ଯେବେ ଶୋଇଥିଲା ପଡ଼େ, ଅନୁଭୂତ ଆଶ୍ଚର୍ଯ୍ୟର ଚମକ ଯେବେ ନୂଆ ସ୍ରୋତ ଆଣେ । ପାଠକେ ଲେଖକେ ସବୁରି କିମ୍-ଭୂତ । ଚହଁ ଆରେଇ ଯାଏ । ସେଇ ହୁଏ ନୂଆ କଳା, ସେଇ ଶିଳ୍ପୀ ହୁଏ ନୂଆ ଯୁଗର ଶିଳ୍ପୀ; କିନ୍ତୁ ବନ୍ଧାଗତର ମୋହ ଲୁଟି ଲୁଟି ବେଳ ଯାଏ । ଯେତେବେଳକୁ ଲୁଟେ, ସେତେବେଳକୁ ଶିଳ୍ପୀର ହାଡ଼ କଙ୍କାଳ ଉପରେ ମାଟି ଜମିବଣି, ଘାସ ଉଠିବଣି, କଣ୍ଟାଥଗର ଫୁଲ ଝଡ଼ିବଣି । ଶିଳ୍ପୀ ତାର କର୍ତ୍ତବ୍ୟ କରିଛି, ଅସୀମର ପ୍ରେରଣାକୁ ପ୍ରକାଶ କରିଛି । ସେଇ ତାର ଶେଷ କଥା । ତା ପରେ ସତ ଯଦି ସେ ବଞ୍ଚିଥିବ, ଦିନେ ନା ଦିନେ ଅଗଣାତର ମାଟି ମୁରୁମ୍ ଭିତରୁ ନିଶ୍ଚୟ ସେ ଚକ୍ ଚକ୍ ହୋଇ ଆଖି ଝଲସିବ ।

ଯାହାର କିଛି ନୂଆ କଥା କହିବାକୁ ଅଛି, ସେ ହେବ କିମ୍-ଭୂତ । ଯେକୌଣସି କଥା ବିଶେଷ କରି ଝୁଙ୍କି ଧରିବସିବ, ସେ ହେବ କିମ୍-ଭୂତ । ଯେତେ ବିଶେଷ, ସମସ୍ତେ କିମ୍-ଭୂତ । ସେମାନେ ଗୋଟାଏ ଖିଅ ଧରନ୍ତି, ମୋଟାମୋଟି ଗୋଳଅମିଶାର "ପୁଞ୍ଜିତା"କୁ ଯାକ ଧରିଥାନ୍ତି ।

କିନ୍ତୁ ଉପରୁ ନ ଉଠିଲେ କିଛି ଫଳ ନାହିଁ । ଉପରୁ ଉଠିବାକୁ ହେଲେ ଗୋଟିଏ ଖିଅ ଧରିବାକୁ ହେବ । ସବୁ ଖିଅକୁ ମଣିଷର ଶକ୍ତି ନାହିଁ । ଗୋଟାକୁ ଭଲ କରି ଟାଣିପାରିଲେ ସବୁ ଆପେ ଆପେ ଆସିବ । 'ସବୁ'କୁ ମେଞ୍ଚା କରି ଧରିବାକୁ ଚେଷ୍ଟା କଲେ କିଛି ଫଳ ହେବ ନାହିଁ ।

ଅତଏବ ଶିଳ୍ପୀ ଦୁଇଥର ସୁନେଲି ବାଡ଼ ଭାଙ୍ଗି ପଡ଼ାକୁ ଯାଏ । ସେଥିପାଇଁ କେତେ କଥା ଶୁଣିବାକୁ ହୁଏ; କିନ୍ତୁ ତହିଁକି ଛଳ ନାହିଁ । ବାଡ଼ ଭାଙ୍ଗିବାକୁ ଲାଗେ ଧ୍ୱଂସର ଶକ୍ତି, କିନ୍ତୁ କିମ୍-ଭୂତ ଧ୍ୱଂସକୁ ଧରି ନେଇଛି ସାଧାରଣ କଥା ବୋଲି । ଧ୍ୱଂସ ନ କଲେ, ପୁରୁଣା ନ ଭାଙ୍ଗିଲେ ନୂଆ ଗଢ଼ା ହେବ କିପରି ?

କିମ୍-ଭୂତର ଚମକର କାରଣ କେତେ ଅଂଶରେ ଧ୍ୱଂସର ଚମକ । —ଧ୍ୱଂସ ଯାହାର ଭଙ୍ଗିତ ନୂଆ ସୃଷ୍ଟିର ସୂଚନା, ନୂଆ ଉପାଦାନର, ନୂଆ ଦେଖିବା

ଧରଣରେ, ନୂଆ ପ୍ରକାଶରେ । ପୁରୁଣାକୁ ଛାଡ଼ି ନୂଆ ପାଇଁ ଜାଗା ଦେବା, ଏହା ତ ଦୁନିଆର ନିୟମ । ଦୁନିଆର ଗତି ଚାଲିଛି ନୂଆରୁ ନୂଆକୁ । ସେହି ଗତି ଭିତରେ ଅଗ୍ରସର ହୋଇ ଚାଲିଛି କମ୍-ଭୂତ, ସାଧାରଣ ଦେଖାକୁ ତଳେ ତଳେ । ଦୁନିଆର ଭବିଷ୍ୟରେ ପଡ଼ି ଭାବ ହୁଏ ନାହିଁ, ଅବସର ନାହିଁ । ଏଥି ଯେତେବେଳେ ଭିତରର କମ୍-ଭୂତ ବାହାରର ମୋଟା ପ୍ରକାଶରେ ପ୍ରକାଶ ପାଇ ଜନସାଧାରଣ ଦେଖା ଆଗରେ ଠିଆ ହୁଏ, ସେତେବେଳେ ମଣିଷ ପରଖେ ଯାଏ ନାହିଁ । ପରଖି ଯିବାକୁ ମନ ଭିତରେ ଟଣା ଓଟରା ଲାଗେ, କାରଣ ବାହାରର ଶାନ୍ତ ସ୍ଥିର ସମତୁଲ ସଂସାର ଭିତରେ କମ୍-ଭୂତ ଲାଗେ ଅଚିହ୍ନା ବିଦେଶୀ ପରି । କମ୍-ଭୂତକୁ ମାନିନେଲେ ନିଜର ଏତେ ଦିନର, ଜୀବନର ନୀତିକୁ ତା ସାଙ୍ଗେ ଖାପ ଖୁଆଯାଇ ପାରିବ ନାହିଁ ।

କିନ୍ତୁ କମ୍-ଭୂତକୁ କଣ ସମାଦର କରି ନେବ ?

କମ୍-ଭୂତର ଗୁଣ ପ୍ରାଚୀନ ଭାରତ ବୁଝିଥିଲା, ତେଣୁ କମ୍-ଭୂତର ଶେଷ ଆଦର୍ଶ ମହାଦେବ—କମ୍-ଭୂତର ଶ୍ରେଷ୍ଠ ସଙ୍କେତ । ଶିଳ୍ପୀ ବୁଝିଥିଲେ, ତେଣୁ ଯେଉଁ କମ୍-ଭୂତ—

"ବପୁର୍ବିରୂପାକ୍ଷମଲକ୍ଷ୍ୟଜନ୍ମତା
ଦିଗମ୍ବରତ୍ୱେନ ନିବେଦିତଂ ବସୁ"

ସେଇ ହେଲେ ଶାଶ୍ୱତ ସୁନ୍ଦରର ଅବତାର । ସେଇ ପାଉଁଶବୋଳା ଦେହ, ସେଇ ବୁଢ଼ା ଷଣ୍ଢଚଢ଼ା ମଶାଣୀ-ବୁଲା ବାବାଜୀ, ତାଙ୍କର ସାପ-ଲଦା ଲମ୍ବ ହାତରେ ସମର୍ପି ଦେଲେ ଶିରୀଷ ଫୁଲର ରାଜକୁମାରୀ । ମଶାଣି-ଚିତା ପାଉଁଶ-ହାଡ଼ ପଡ଼ିଛି ଚକ୍ ଚକ୍, ଖଣ୍ଡିଆ ଭୂତ ଭଉଁରୀ ଖେଳୁଛି ମଲା ମଣିଷର ମେଞ୍ଚା ମେଞ୍ଚା ଅଲରା ବାଳ ଯେଉଁ ଯେତେ ଅମଙ୍ଗଳ, ସବୁ ପୂରି ରହିଛି । ତଥାପି ଯୁଗ ଯୁଗର ଅମଙ୍ଗଳକୁ ପାର କରି ମଙ୍ଗଳ କରିଛି ସେ, କଣ୍ଠରେ ଧରିଛି ଯୁଗ ଯୁଗର ହଳାହଳ । ପ୍ରଳୟ ଭିତରେ ଯେପରି ତାର ଜନ୍ମ, ବନ୍ଧାଘରେ ପଡ଼ିବୁ ପୁନେଇ ବାଡ଼ ସେପାଖେ । କିନ୍ତୁ ତାର ପ୍ରଳୟର ଝଡ଼ ଖାଲି ପ୍ରଳୟ ପାଇଁ ନୁହେଁ, ସେ ପ୍ରଳୟ ଉଦ୍ଦେଶ୍ୟ ରହିଛି ଆଗକୁ । ମରଣକୁ ଜିଣିଛି, ଅନ୍ଧାରକୁ ଜିଣିଛି, କମ୍-ଭୂତ ପ୍ରକଟର ଉଦ୍ଦେଶ୍ୟ ରହିଛି ଆଲୁଅରେ, ତେଜରେ—

"ଅକିଞ୍ଚନଃ ସନ୍-ପ୍ରଭବଃ ସ ସମ୍ପଦାଂ
ତ୍ରିଲୋକନାଥଃ ପିତୃସଦ୍ମଗୋଚରଃ
ସ ଭୀମରୂପଃ ଶିବ ଇତ୍ୟୁଦୀର୍ଯ୍ୟତେ"

ଓଁଲୁଥ ବାଟର ବାଟୋଇ, ଅନ୍ଧାର ଯାହାର ଉଦ୍ଦେଶ୍ୟ ପାଇଁ ଉପାସ୍ୟ, ପ୍ରଳୟ ଯାହାର ସୃଷ୍ଟି ପାଇଁ ଅସ୍ତ୍ର, ଅମଙ୍ଗଳ ଯାହାର ମଙ୍ଗଳ ପାଇଁ ସୂଚନା, ଭୟ ନାହିଁ, ଧ୍ୱଂସର ଅରଣା ଦଳ ତାର ଖେଳ ସାମଗ୍ରୀ । ଶାଶ୍ୱତ ଯୁବକର ଅବତାର ଯେ—ପ୍ରଳୟ କରେ, ପୁଣି ପ୍ରଳୟ ପରେ ସର୍ଜନ କରେ, ଯାହାର ନାହିଁ ଅଜ୍ଞାନ ଶିଶୁର ଉଦ୍ଦେଶ୍ୟ ହୀନ ଅସ୍ଥିରତା ବା ଶିଥିଳ ବୁଢ଼ାର ଆପଣା-ଭୁଲା ମାନ୍ଦା ହସ, ଦୁର୍ବଳ ସନ୍ତୋଷ, ଯେଉଁ ସନ୍ତୋଷ ମରଣକୁ ଆଦର ନଏ ଚଳନ୍ତ ପ୍ରଥାର ସୁନା ଶିକୁଳି ପର; ସେଇ ସାମ, ପୁଣି ସେଇ ଶିବ, ସେଇ ଜମ୍-ଭୂତ—ଯାହାର ଆସ୍ଥାନ ରୂପେଲି କୈଳାସର ଡେଙ୍ଗ, ଦେବଦାରୁ ତଳ ବେଦରେ, ପୁଣି ଅଙ୍ଗାର ପାଉଁଶ, କୋକେଇ ହାଣ୍ଡି ହାଡ଼ବାଳର ଖାଲି ଟିପ ମଶାଣି ଭୂଇଁରେ ।



# ଗଣ-ସାହିତ୍ୟ

ପ୍ରଥମ ଯୁଗରେ ମଣିଷ ଗଢ଼ ଗଢ଼ ଗଲାବେଳେ ହଠାତ୍ ବେଳେ ବେଳେ ଭାବଥାଏ, ଗଢ଼ୁ ଗଢ଼ୁ ସେ ବାଡ଼ ପକାଇ ନିଜର ଭାଇକୁ ପଦାରେ ଫୋପାଡ଼ ଦେଇ ଆସୁନାହିଁ ତ ? ଏଣେ ସୁନ୍ଦର ସହଧ ଆକାଶକୁ ମଥା ଟେକିଲାଣି, ନିଜର ସବୁ କବିତା ଫୁଟିଲାଣି ତହିଁରେ, ତଥାପି ମନ ଭିତରେ ଖୁଣ୍ଟାମାରେ, ପାଚେରି ଯେପରି ହେଲା ଭାରି ଉଚ୍ଚ, ପଦାରୁ କେହି ଏ ସୁନ୍ଦରମାର କାଣିଚାଏ ପାଇବେ ନାହିଁ, କାହାରି ଛୁଇ ପଡ଼ୁପାରିବ ନାହିଁ ଏହା ଭିତରେ, ପାଚେରି ହେଲାଣି ଭାରି ଉଚ୍ଚ ।

ଏଇ ସୁନ୍ଦରମାର ସ୍ତୂପ ହେବ ଶିଳ୍ପୀର ନିଜର କବର, ଶିଳ୍ପୀ ଭାବେ । ମନ ଭିତରେ ତୋଫାନ ଉଠେ । ପୁଣି ପାଚେରି ହେଉଛି ଏ ଗଠନର ଗୋଟାଏ ଅଂଶ । ଏ ଅନ୍ଧୁଆଁ ଗୋଦାମର ସୌଧ ହେଉଛି କଳାର ନିଜର ଗଠନ ।

ପ୍ରଥମ ଯୁଗରେ ଲେଖକ ଭାବନ୍ତି, ସେମାନେ ନିଜର ପଣ୍ଡିତପଣିଅ‌ରେ ନିଜେ ରହିଲେ ବନ୍ଦୀ । ସେମାନଙ୍କର ଲେଖା ଦେଶର ଦଶଜଣଙ୍କୁ ଛୁଇଁ ପାରିଲା ନାହିଁ ।

ବୃଥା-ବୃଥା-ବୃଥା ! ଏ କଳା ଶୂନ୍‌ଶାନ୍, ପୃଥିବୀ ସହିତ ଦୁନିଆର ଅଉ ଆଉ ଦଶଜଣଙ୍କ ସହିତ ଏହାର ସମ୍ବନ୍ଧ ରହିଲା ନାହିଁ । ତେଣୁଉଠି ଲୋକେ ନୂଆ ଲେଖା ଲେଖନ୍ତି । କ୍ରମେ ସେଇଟା ନିଜେ ହୁଏ ବନ୍ଧାଗତ, ନିଜେ ଲାଗେ ଖାଁ ଖାଁ ନିଚ୍ଛାଟିଆ ପାହାଡ଼ପରି; ପୁଣି ନୂଆ ଧରଣକୁ ଲୋକେ ମନ ବଳାନ୍ତି ।

ବିଲାତରେ ଷୋଡ଼ଶ ଶତାବ୍ଦୀର ଲୋକେ ନାଲିସ ଗ୍ରୁପିଲେ, ସମସ୍ତେ ଖାଲି ଇଟାଲୀ ଫରାସୀ ଜିନ୍ଦା ଗ୍ରୁଲଛନ୍ତି । ଦେଶକୁ କେହି ପଚ୍ଚୁରୁ ନାହାନ୍ତି । ପୁଣି ୧୮ଶ ଶତାବ୍ଦୀ ମଝାମଝି ଲୋକେ, ଆମ ଲେଖା ସବୁ ହୋଇଗଲା ଅତି ନିର୍ଜୀବ ବନ୍ଧା-ଗତର, ସହିଁରେ ଖାଲି ଦେଶର ବଡ଼ଲୋକଙ୍କ କୃତ୍ରିମ ଜୀବନ ରହିଲା କବର ପାଇଁ । ତହୁଁ ରୋମାଣ୍ଟିସିଷ୍ଟ କବିମାନେ ମଣିଷର ମୂଳଗୁଣ ଖୋଜି ବୁଲିଲେ । ମିଲ୍‌ଟନଙ୍କ ବିଦ୍ରୋହୀ ସଇତାନ ପରି ଛୁଡ଼ା ହେଲେ ଶେଲିଙ୍କ ପ୍ରମିଥିଉସ୍, କିଟ୍‌ସଙ୍କ ହାଇପେରିଆନ୍, ବାଇରନ୍‌ଙ୍କ କେନ୍ । ମଣିଷର ସାହିତ୍ୟ, ମଣିଷର ମୂଳଗୁଣ,

ମଣିଷର ମୂଳ ଅନୁଭୂତିରେ ସେହିପରି କବି ହୁଆଡ଼ସବର୍ଥଙ୍କ "ଗାଉଁଲି-କବିତା" ଉଚ୍ଛୁଳି ଉଠିଲା । ଭିକ୍ଟୋରିଆନ୍ ଯୁଗର ଅସ୍ତ-ପ୍ରସାଦ ବିରୁଦ୍ଧରେ ଠିଆ ହେଲା, ବ୍ରାଉନିଂଙ୍କ ମଣିଷ ଚରା କବିତା । ଶେଷରେ ଆସିଲା ପୁଣି ରୁଷ୍ ଦେଶର ମଜ୍‌ଦୁର-ବାଦର ବଜ୍ରବାଣ । ସେ ବିବାଦ ଏଣିକି ଏଣିକି ଅଦ୍ଭୁତ ତୀବ୍ର ହୋଇଉଠିଲା । ତାର କାରଣ କଳକାରଖାନା ବଢ଼ିବା ସହିତ ସୁଖୀ ଆଉ ଦୁଃଖୀ, ଥିଲାବାଲା ଆଉ ନଥିଲାବାଲା, ଧନୀ ଗରିବ ଏମାନଙ୍କ ଭିତରେ ଭେଦ ବେଶୀ ବଢ଼ିଗଲା । ଅଳମି ସମସ୍ୟା ବୈଜ୍ଞାନିକ ଆମଦାନୀର ସମସ୍ୟା ଓ ହଜାର ହଜାର ନୂଆ ସମସ୍ୟା ଗରିବଙ୍କୁ ଅଦ୍ଭୁତ ପଦାରେ ପକାଇଲା । ସଙ୍ଗେ ସଙ୍ଗେ ଯେଉଁ ମଲମୁଣ୍ଡିଆ ଲୋକେ ଚିରଦିନ ମୁହଁରେ ଗୁଣ୍ଡି ବାନ୍ଧିବାକୁ ବାଧ୍ୟ ହେଉଥିଲେ, ସେମାନେ ଭିତରେ କୋଳାହଳକୁ ପଦାରେ ଚିତ୍କାର କରି ତେଲମୁଣ୍ଡିଆଙ୍କ ଉପରେ ଫୋପାଡ଼ିବାକୁ ସୁବିଧା ପାଇଲେ ।

ଏ କମିକି ଗତିରୁ ଦେଖିପାରୁଥାଉଁ ଯେ, ଊଣା ଅଧିକେ ସବୁ ଯୁଗରେ ଖିଆଲ ଆସିଛୁ, "ଆମ ସାହିତ୍ୟ ମଣିଷଙ୍କଠାରୁ ଅଲଗା ହୋଇଗଲା କି ?" ଏହା ଫଳରେ ଯେଉଁ ପ୍ରତିକ୍ରିୟା ହୋଇଛି, ସେ ଅମ ସାହିତ୍ୟକୁ ବରାବର କୃତ୍ରିମ ଆହି ଫାଙ୍କିମରା ବୋଲି କହି ଆସିଚି । କହି ଆସିଛୁ ଯେ, ଆଗର ସାହିତ୍ୟ ଖାଲି ଜୀବନର ସତ କଥାକୁ ଡରି ତାକୁ ମୁହାଁମୁହିଁ ନ ଭେଟି ଜୀବନକୁ ଫାଙ୍କିମାରି କୃତ୍ରିମ ମହଲରେ ମାତିଛି, "ମନେ ମନେ କାଣୀ ପିଠା ଖାଉଛି ।" ଆଉ ସେ ପ୍ରତିକ୍ରିୟା ସବୁ ଯୁଗରେ ଊଣାଅଧିକେ ଆଣିଛି ବାସ୍ତବବାଦ ଓ ମନୁଷ୍ୟ ପ୍ରତି-ସହାନୁଭୂତି । ପୂର୍ବବର୍ତ୍ତୀ କାଳ ଆଡ଼କୁ ଆଖି ରଖିଲେ ବେନ୍ ଜନସନ୍ ଓ ହୁଆଡ଼ସବର୍ଥ ବାସ୍ତବବାଦୀ । ଏ ଯୁଗର ଏଡ଼୍‌ଥ୍ ସିଟ୍‌ୱେଲ କହନ୍ତି ଯେ, "ଏ ଯୁଗର ହଡ଼ାକାହାକ ଆଉ ଆଉ ପୁରୁଣା ସିଦ୍ଧାନ୍ତ ଚେଷ୍ଟାର କଥାରେ କାହିଁକି, ମାତିବା"—ସେ ମଧ୍ୟ ବାସ୍ତବବାଦୀ । ଅବଶ୍ୟ ମନେ ରଖିବାକୁ ହେବ, ବାସ୍ତବ । ବାଦର ମଧ୍ୟ କୌଣସି ସ୍ଥିତିବାନ୍ ସ୍ୱରୂପ ନାହିଁ ।

ଆଜିକାଲି ଓଡ଼ିଶାରେ "ଗଣ-ସାହିତ୍ୟ" ଯେଉଁ ଅନେକେ ଚର୍ଚ୍ଚା କରୁଛନ୍ତି । ଅନେକେ ଚେଷ୍ଟା କରୁଛନ୍ତି, ସାହିତ୍ୟ କିପରି ଦେଶର ଦଶଜଣଙ୍କ ମନକୁ ଛୁଇଁ ପାରିବ । ତେବେ ଏ ତ ନୂଆ ନୁହେଁ । ସବୁ ଯୁଗରେ ଖେଳାଳୀ ଯେତେ-ବେଳେ ଲେଖେ, ସେତେବେଳେ ଅନେକ ସମୟରେ ସେ ଉଦ୍ଦେଶ୍ୟ ପାଉଥାଏ, ତାର ଲେଖା କେମିତି ଦଶଜଣ ପଢ଼ନ୍ତେ, କେମିତି ଦଶଜଣଙ୍କ ମନକୁ ପାଆନ୍ତା । ତେବେ ଏ "ଗଣ-ସାହିତ୍ୟ" ପ୍ରତି ବିଶେଷ ପୁଷ୍ଟାଞ୍ଜଳିର ହେତୁ କ'ଣ ? ତାର ହେତୁ ହେଉଛି ଏହି ଯେ, ଆଜିକାଲି ସାରା ପୃଥିବୀରେ ସବୁଠି ଖାଲି 'ମାସ୍, ମାସ୍'

ଚହଲ ପଡ଼ୁଛି ଓ ତାର ପ୍ରଭାବ ଅନେକ ଉପାୟରେ ପଡ଼ୁଛି ସାହିତ୍ୟ ଉପରେ । ୧୯୧୪ ସାଲର ଯୁଦ୍ଧ ସବୁ ପୂର୍ବର ବନ୍ଧାଗତ ଭାଙ୍ଗି ଦେଇଗଲା । ଏପରି ପରିବର୍ତ୍ତନ ଆଣିଲା ଯେ, କ୍ଷୁଦ୍ରା ନ ଯାଏ । ଗୋଟିଏ ନୂଆ ଦଳ ମୁଣ୍ଡ ଟେକିଲେ— 'ମଜଦୁର-ଦଳ', ଯେଉଁମାନେ କି କାଳକାଳକେ ମନ କଥା ମନରେ ମାରି ପଡ଼ିଥିଲେ । ଏଇ 'mass' ଭିତରେ ଚହଲ, ପୁଣି ବନ୍ଧାଗତ ଭାଙ୍ଗି ନୂଆ ଗଢ ଗଢ଼ିବାର ଅନୁଶୀଳନ, ଏଇ ଦୁଇ କଥାର ଫଳ Mass Literature.

କିନ୍ତୁ 'ଗଣ-ସାହିତ୍ୟ' କଥା ଭାବିବା ପୂର୍ବରୁ ଦେଖିବା ଦରକାର— ଇଂରେଜିର ଏ 'mass' କଥାଟିର ଅର୍ଥ କଅଣ ? ଯାର ଅର୍ଥ କିଛି ବୁଝେ ପୁଣି ଯାର ଅର୍ଥ ସବୁ । ଯେପରି ବହୁରୂପୀ ଏଣ୍ଡୁଅ ସ୍ଥାନର ରଙ୍ଗ ଅନୁସାରେ ଦେହର ରଙ୍ଗ ବଦଳାଏ (ରସ୍କିନ୍‌ଙ୍କ କଥାରେ), ସେହିପରି ଏ ମାସ୍ ଶବ୍ଦଟି ଭିନ୍ନ ଭିନ୍ନ ପ୍ରବୋଧାଙ୍କର ଭିନ୍ନ ଭିନ୍ନ ମତ ଅନୁସାରେ ନିଜର ମତ ବଦଳାଏ । ତେଣୁ ସାହିତ୍ୟିକମାନେ 'ଗଣ-ସାହିତ୍ୟ' ବୋଇଲେ 'ସାହିତ୍ୟ' ବୁଝନ୍ତି । ନୋହିଲେ 'ଗଣ' ବିଷୟରେ ନିଜ ନିଜର ହାତଗଢ଼ା ଆଦର୍ଶ ଦ୍ୱାରା ସଂଜ୍ଞା ସ୍ଥିର କରି ଗଣ-ସାହିତ୍ୟର ପ୍ରକୃତ ରୂପ ବିଷୟରେ ଅହୁଣ୍ଡା କଜିଆ ଆରମ୍ଭ କରନ୍ତି । ଇଂରେଜିର 'mass'କୁ ଓଡ଼ିଆରେ 'ଗଣ' ବୋଲି ଅନୁବାଦ କଲେ ଅନେକ ଚଳନ୍ତି ଅର୍ଥ ଦର୍ଶାଯାଇପାରେ । ଯଥା—

୧ । 'ଗଣ' ବୋଇଲେ ସଭ୍ୟଗଣ । ଓଡ଼ିଆରେ 'ସୁଜ୍ଞଜନେ', ଯେଉଁମାନେ 'ଚତୁର ଗାହକ', ସାହିତ୍ୟର ଭଲ ଯେଉଁ ପାରିବେ, ଚଳିକି ଲେଖାଳିମାନେ ସେହିମାନଙ୍କୁ ଉଦ୍ଦେଶ୍ୟ କରି ଲେଖୁଥିଲେ ।

୨ । 'ଗଣ' ବୋଲନ୍ତେ ତଳସ୍ତରର ଅଶିକ୍ଷିତ ଲୋକେ । ଯେଉଁମାନେ ବିଦ୍ୟା ଧାପକୁ ଆସିନାହାନ୍ତି, ପୁଣି ଯେଉଁମାନଙ୍କ ରୁଚ 'ମାର୍ଜିତ' ନୁହେଁ । ଯେଉଁ ପଣ୍ଡିତମାନେ କହନ୍ତି ଯେ, 'ବୈଷ୍ଣବ ପାଣି' ପ୍ରମୁଖ କବିମାନଙ୍କର ଗୀତ ହେଉଛି ପ୍ରକୃତ 'ଗଣ-ସାହିତ୍ୟ', ସେମାନେ 'ଗଣ'କୁ ଏହି ଅର୍ଥରେ ଯେନନ୍ତି ।

୩ । 'ଗଣ' ବୋଲନ୍ତେ ଗୃହୀ ଭାଇମାନେ । ଉପାଡ୍‌ସଭିଆଁ ଏହି 'ଗଣ'ଙ୍କ ପାଇଁ ସାହିତ୍ୟକୁ ନୂଆ ଛାଞ୍ଚରେ ଢାଳିଥିଲେ ।

୪ । 'ଗଣ' ବୋଲନ୍ତେ 'ମଜଦୁର ଭାଇ' । ରୁଷିଆ ଦେଶର ସାହିତ୍ୟ ହେଉଛି ଅଧିକାଂଶରେ ମଜଦୁର ସାହିତ୍ୟ । ସେଠି 'ଗଣ' ବୋଲନ୍ତେ ପୁଞ୍ଜିବାଦୀଙ୍କୁ ଛାଡ଼ି ଅନ୍ୟ ସମସ୍ତେ । ଅତଏବ ଅଶିକ୍ଷିତ (କୁଲାକ୍) ବା ଜମିଦାର ଗୃହୀଭାଇ ହେଲେ ସୁଦ୍ଧା ସେ 'ଗଣ' ଅର୍ଥରେ ଯିବ ନାହିଁ ।

୫ । 'ଗଣ' ବୋଲନ୍ତେ 'ଅତ୍ୟାଗ୍ରହୀତ ମଣିଷ ଜାତି' । ସେହି ମଲମୁଣ୍ଡିଆ, ଯାହା ଉପରେ କାଣିବଗଡ଼ ଘୁଞ୍ଚା ଚୋଡ଼ କରି ଆସିଛି । ମିଲ୍‌ଟନଙ୍କ ସଇତାନ୍, ଶେଲିଙ୍କର ସବୁ ବିଦ୍ରୋହୀ ବୀର ଏହି ଗଣ ପାଇଁ ଲଢ଼ୁଛନ୍ତି ।

୬ । 'ଗଣ' ବୋଲନ୍ତେ ଗରିବ ଲୋକେ ।

୭ । 'ଗଣ' ବୋଲନ୍ତେ ଦେଶର ସମସ୍ତେ, ଯେଉଁମାନେ 'ନାମଜାଦା' ନୁହନ୍ତି । କବି ମେକ୍‌ଫିଲ୍‌ଡ଼ ଏହିମାନଙ୍କ ଉଦ୍ଦେଶ୍ୟରେ କଲମ ଧରିଛନ୍ତି ବୋଲି କହନ୍ତି ।

୮ । 'ଗଣ' ମାନେ ଦେଶବାସୀ । ଅତଏବ ଭିନ୍ନ ଭିନ୍ନ ଦେଶରେ ଏ ଗଣ ମାନଙ୍କର ଧରଣ ଭିନ୍ନ ଭିନ୍ନ । ହିଟଲର ଦେଶରେ ଏ 'ଗଣ' ହେଉଛନ୍ତି ନାଜି, ରୁଷ ଦେଶରେ ଏମାନେ ସାମ୍ୟବାଦୀ, ସ୍ପେନ ଦେଶରେ ପୁଣି ଏ ଦୁଇ ଦଳ 'ଗଣ'ଙ୍କ ଭିତରେ ଲାଗିଛି ହଣାକଟା ଲଢ଼େଇ । 'ଗଣ' ବୋଲନ୍ତେ 'ମଣିଷ ଜାତି', ଯାହାର ମୁଣ୍ଡ ଉପରେ ଆକାଶ, ଗୋଡ଼ତଳେ ଭୂଇଁ ।

ଅତଏବ 'ଗଣ' ସାହିତ୍ୟର ଏତେଗୁଡ଼ାଏ ଅର୍ଥ ଥାଉଁ ଥାଉଁ ଆମେ କେଉଁ ଅର୍ଥରେ ଏହାକୁ ବ୍ୟବହାର କରି ଚଳାଇବା ? ମଜଦୁର 'ଗଣ'ଙ୍କ ସାହିତ୍ୟ ଲେଖିଲେ ତାହା ତ କୃଷୀ ଜାତି 'ଗଣ'ଙ୍କ ସାହିତ୍ୟ ହେବ ନାହିଁ । ସାମ୍ୟବାଦୀ 'ଗଣ'ଙ୍କ ସାହିତ୍ୟ ପୁଣି ଫାସିଷ୍ଟ 'ଗଣ'ଙ୍କ ସାହିତ୍ୟ ଭିତରେ ବା କି ସନ୍ଧି ରହିବ ? ପୁଣି ଅପାଠୁଆ 'ଗଣ'ଙ୍କ ସାହିତ୍ୟ ବୁଜ୍ଜୁଆ 'ଗଣ'ଙ୍କୁ ଲାଗିବ ଅଡ଼ୁଆ । ଇଉରୋପୀୟ 'ଗଣ'ଙ୍କ କଥା ଲେଖିଲେ ଭାରତୀୟ 'ଗଣ'ଙ୍କୁ ସେ ଲାଗିବ ବାହାରଲୋକ କଥା ପରି । ପୁଣି ମଫସଲର 'ଗଣ'ଙ୍କ ସାହିତ୍ୟ ଲେଖିଲେ ସହର ତଳର Slumsରେ ଥିବା 'ଗଣ'ଙ୍କ ସାହିତ୍ୟ ତାହା ହେବ ନାହିଁ ।

ଏତେ ଅଡ଼ୁଆର କାରଣ ହେଉଛି, ଆମେ 'ଗଣ' ଏ କଥାଟି ମନର ଧାରଣାର ସଙ୍କୀର୍ଣ୍ଣତାରେ ଅତି ସଙ୍କୀର୍ଣ୍ଣ ଅର୍ଥ କରୁଥାଉଁ । 'ଗଣ' କହିଲେ ବୁଝାଏ ମଣିଷଙ୍କ ସମଷ୍ଟି । ସାହିତ୍ୟକୁ ମଣିଷର ସାହିତ୍ୟ କରି ଛାଡ଼ିଦେବା । ହଜାରେ 'ବାଦ'ର ପାଳି ନ ଧରାଇ, ହଜାରେ ମତର ପ୍ରଗତିର କାର୍ଯ୍ୟର ବ୍ୟାଣ୍ଡବାଜା ନ ବଜାଇ, ଅଳ୍ପ ଇତିହାସ, କାଲି ଅର୍ଥଶାସ୍ତ୍ର, ପହରଦିନ ବିଜ୍ଞାନ, ଏତେ ସମସ୍ୟାର ପହରିକିଆ ପହରାବାଲା ନ କରି ସାହିତ୍ୟକୁ ତାର ନିଜ ଦାବୀ ସ୍ୱାଧୀନ ବାଟରେ ଗତି କରିବାକୁ ଛାଡ଼ିଦେବା । ଯଦି ସାହିତ୍ୟରେ ଉନ୍ନତ ହୁଏ ତେବେ ବଳେ ସେ ମଣିଷର ମୂଳ ଗୁଣକୁ ପ୍ରକାଶିବ, ବଳେ ସେ ମଣିଷର ସ୍ୱରୂପ ପ୍ରଚାର କରିବ, ଅଭି

କୌଣସି ବନ୍ଧନ ନ ମାନି ତେଉ ଉଠାଇବ ଦୁନିଆର ସବୁ ମଣିଷଙ୍କ ହୃଦୟରେ । କାରଣ ଉକ୍ତ ସାହିତ୍ୟର ଏ ହେଉଛି କାର୍ଯ୍ୟ । ଉକ୍ତ ସାହିତ୍ୟ ଆପେ ଆପେ ଶୁଦ୍ଧ ଗଣ ସାହିତ୍ୟ । ଆମର 'ଗଣ' କହିଲେ ବୁଝାଏ, କଢ଼ ଯୁଗର ସେହି ଚିରନ୍ତନ ମଣିଷ, ଯେ ଗୋଟିଏ ମେରୁଠାରୁ ଆର ମେରୁଯାକେ ଅଦୌ ବଦଳି ନାହିଁ, ଯାହାର ଏ ଅବଦଳା ମୂଳ ଗୁଣ ଯୁଗେ ଯୁଗେ ଗଡ଼ିଆସିଛି । ତାର କୌଣସି କୃତ୍ରିମ ଆବରଣ ନାହିଁ । ତାର ସ୍ୱରୂପ ପ୍ରକାଶ ଲାଗି ଲୋଡ଼ା ନୁହେଁ କୌଣସି ବନ୍ଧାଗତର ମଣିଷଗଢ଼ା ଆଇନ । ପୃଥିବୀର ଅଧିକାଂଶ ଯେଉଁ ସାଧାରଣ ଲୋକ ଯେଉଁମାନଙ୍କର ଜନ୍ମର ଦାବୀ ହେଉଛି ସବୁ ଦିଗରେ ସ୍ୱାଧୀନତା, ଧ୍ୱଂସର ସହାୟକ ହେଲେ ବି ସ୍ୱାଧୀନତା, ଯେଉଁମାନେ 'ନାମଜାଦା' ନୁହନ୍ତି, କିନ୍ତୁ 'ଆଗୁସାର' ହେବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ, ଯେଉଁମାନେ ରାଜା ମହାରାଜା ନୁହନ୍ତି; କିନ୍ତୁ ଯାହାଙ୍କର ମୂଳଗୁଣ ରାଜା ମହାରାଜାଙ୍କ ମୂଳଗୁଣଠାରୁ ଫରକ ନୁହେଁ; ଯେଉଁମାନଙ୍କର ହିତାହିତ ଜ୍ଞାନ ଅଛି ଓ ସାଧାରଣ ଶିକ୍ଷା ଅଛି, ଯେଉଁମାନେ ଭଲ ମନ୍ଦର ମିଶାମିଶି—ଦେବତା ନୁହନ୍ତି କି ସଇତାନ ନୁହନ୍ତି, ଯେଉଁମାନେ ସ୍ଥାନ କାଳ-ପାତ୍ରର ପ୍ରଭାବରେ ଅଛନ୍ତି; କିନ୍ତୁ ଯାହାଙ୍କର ମୂଳ ମଣିଷ ଗୁଣ ଏସବୁ ପରି-ବର୍ତ୍ତନଶୀଳ ଦିଗ୍ବୃତ୍ତିର ଉପରେ, ସେହିମାନେ ହେଉଛନ୍ତି ଗଣ ସାହିତ୍ୟର ଉପାଦାନ ।

ଦୁନିଆରେ ଲୋକେ ନିଜ ନିଜ ମତ ଅନୁସାରେ ଦଳ ଦଳ ଅଲଗା ଅଲଗା mass ଦେଖିପାରନ୍ତି; କିନ୍ତୁ ସବୁ ପାର୍ଥକ୍ୟ ନିଭାଇଦେଲେ ସମସ୍ତେ ସେଇ ଏକ ଜନତ । ତା ଭିତ୍ତିରୁ ପ୍ରତ୍ୟେକ ମଣିଷଠି general ଯେତେ ଅଛି, individual ବି କିଛି ଅଛି । ବାହାରର ପାର୍ଥକ୍ୟ ଅଛି ଆକସ୍ମିକତା ଫଳରୁ । ଆଜି ଅଛି କାଲି ନାହିଁ । ନେପୋଲିଅନ ବ୍ରିଟିଶ ପ୍ରଜା ହୋଇ ଜନ୍ମ ହୋଇ ପାରିଥାନ୍ତେ, ବୀରେନ୍ଦ୍ର ଶାସମଲ ଓଡ଼ିଶା ଭିତରେ ଜନ୍ମ ହୋଇ ପାରିଥାନ୍ତେ; ନ ହେଲେ ଯାହା ଖାଲି accident—ନୋହିଲେ ମଣିଷ ସମସ୍ତେ । ପାତ୍ରର ଆକାର ଭେଦରେ ଜଳର ଆକାରଭେଦ ହୁଏ । 'ଗଣ'କୁ ଏପରି ବୁଝି ସେହି ଅନୁସାରେ ଗଣ ସାହିତ୍ୟ ଲେଖିଲେ ଠିକ ହେବ; ନୋହିଲେ ନୂଆ ନୂଆ ମତବାଦୀମାନଙ୍କ ମତଲବରେ ପଡ଼ି ସାହିତ୍ୟରେ ଗଣବିଭ୍ରାଟ ଘଟିବ, ହିଟଲର ଦେଶର ଫ୍ୟାସିଷ୍ଟ ଗଣ ସାହିତ୍ୟ ଅଥବା ମାର୍କସ ଦେଶର ସାମ୍ୟବାଦୀ ଗଣ ସାହିତ୍ୟ ଭିତରେ ।

ଏ ଯୁଗର ସାହିତ୍ୟର ଗୋଟିଏ ଲକ୍ଷଣ, ଏ ଯୁଗରେ ମତବାଦୀମାନେ ମତ ଅନୁସାରେ ସାହିତ୍ୟ ଗଢ଼ୁଛନ୍ତି । ଏପରି ସାହିତ୍ୟକୁ ସେହି ମତ ଅନୁସାରେ ନାଁ ଦେବା ଭଲ । ତାକୁ ଗଣସାହିତ୍ୟ କାହିଁକି କୁହାଯିବ ? ଓଡ଼ିଶାରେ ଆଜିକାଲି

ଅନେକ ଯେଉଁ ପ୍ରକାର ଗଣସାହିତ୍ୟ ଗଢ଼ୁଛନ୍ତି, ତାକୁ ମଜଦୁର-ସାହିତ୍ୟ କହିବା ବରଂ ଭଲ । Class War, ମଜଦୁର୍‌ର ଜାଗରଣ, ପୁଞ୍ଜିବାଦୀ ବିରୁଦ୍ଧରେ ଅଭିଯାନ, ସ୍ୱପ୍ନବାଦ ମଝିରେ ବିଦ୍ରୋହ ପ୍ରଭୃତି ଯେଉଁସବୁ ଧାରଣା ଆଜିକାଲି ଘଡ଼ଘଡ଼-କବିତା ବିଦ୍ରୋହ କବିତାରେ ମାତି ଉଠୁଛି, ସେ ତ ରୁଷ୍ ଦେଶର ମଜଦୁର୍ ଜାଗରଣର ଚେଉ । ଗଣର ସଙ୍କୀର୍ଣ୍ଣ ଅର୍ଥରେ ତାକୁ ମଜଦୁର୍-ଗଣଙ୍କ ସାହିତ୍ୟରେ ଗଣାଯାଇପାରେ । ଯେଉଁଥିରେ ପଢ଼ିବ ପୁଷ୍କିନ୍, ତୁର୍ଗେନି, ଗର୍କି ପ୍ରଭୃତିଙ୍କ ଲେଖା; ଆଉ ଦେଖିବ ଯେଉଁଥିରେ ପୁରା ଧାର୍ମିକ ଟଲଷ୍ଟୟଙ୍କ ଲେଖା; କାରଣ ତାହା ଅଧେ 'ମଜଦୁର୍' ଅଧେ 'ଖ୍ରୀଷ୍ଟିଆ' ସାହିତ୍ୟ । ଏପରି ସାହିତ୍ୟ ସପକ୍ଷରେ ବହୁତ କଥା କୁହାଯାଇପାରେ । ଏହା ଗଣସାହିତ୍ୟ ବୋଲି ଏ ଭୁଲ୍ ଧାରଣାରେ ନୁହେଁ—ଏହା ମଣିଷ-ଜାତି ଭିତରୁ କେତେକ ଶ୍ରେଣୀ ଯେହି specialise କରି ସାହିତ୍ୟର ଉତ୍କର୍ଷ କରୁଛି ବୋଲି । କିନ୍ତୁ ଏହାକୁ "ଗଣ-ସାହିତ୍ୟ" କହିବା ଉଚିତ ହେବ ନାହିଁ; କାରଣ ଏହା ମତବାଦର ସାହିତ୍ୟ । ଯଦି ସବୁ ମତବାଦୀ ନିଜର ମତକୁ ପୃଥିବୀଯାକର ମତ ବୋଲି ଭାବି ନିଜ ମତର ସାହିତ୍ୟକୁ "ଗଣ-ସାହିତ୍ୟ" କହନ୍ତି, ତାହାହେଲେ କିପରି ବିଭ୍ରାଟ ହେବ, ତାହା କହିବା ବାହୁଲ୍ୟ । ଯେପରି ଭିନ୍ନ ଭିନ୍ନ ଧର୍ମର ଭକ୍ତମାନେ ଆପଣା ଧର୍ମକୁ ପୃଥିବୀଯାକର ଧର୍ମ କହି "ପ୍ରକୃତ-ଧର୍ମ" ବିଷୟରେ ପ୍ରକୃତରେ କଳହ କରନ୍ତି, ଏହା ହେବ ସେହିପରି । ସାହିତ୍ୟରେ ଅନେକ ମତବାଦ ମିଳେ । କିଏ ପଲ୍ଲୀ ବିଷୟରେ, କିଏ ସହର ବିଷୟରେ, କିଏ ଗରିବ ଲୋକଙ୍କ ବିଷୟରେ, କିଏ ପୁଣି ଧନୀ ଲୋକଙ୍କ ବିଷୟରେ ଲେଖନ୍ତି । ସମସ୍ତେ ତା ହେଲେ କଣ 'ଗଣ-ସାହିତ୍ୟ' ଉଦ୍ଦେଶ୍ୟରେ ଲେଖନ୍ତି ?

ସଂସାରରେ କୋଟି କୋଟି ଲୋକ । ସମସ୍ତଙ୍କୁ ଆମର ସଙ୍କୀର୍ଣ୍ଣ ମତରେ ବାନ୍ଧି ରଖିବାକୁ ପ୍ରୟାସ କାହିଁକି ?

ଗଣ ଅର୍ଥ କୋଳାହଳ କରୁଥିବା ଲୋକ ନୁହେଁ । ଗଣ-ସାହିତ୍ୟ କହିଲେ କୌଣସି ଆଇନରେ ଏପରି ଅର୍ଥ ହେବ ନାହିଁ ଯେ, ତାହା ଅଶିକ୍ଷିତଙ୍କ ସାହିତ୍ୟ । ଯାହାର ଶିକ୍ଷା ନାହିଁ, ତାହାର ସାହିତ୍ୟ ଆସିବ କେଉଁଠୁ ? ତାର ଅନୁଭୂତି ଅଛି; କିନ୍ତୁ ପ୍ରକାଶ ନାହିଁ । ତାର ମୋଟାମୋଟି ଧାରଣା ଅଛି; କିନ୍ତୁ ସୂକ୍ଷ୍ମଭାବେ ବୁଝି ବିଚାରିବାର ଶକ୍ତି ନାହିଁ । ଠିକ୍ ଏହିପରି ଯୁକ୍ତି ଦେଖାଇଥିଲେ ହେଗେଲ ଓ ଥିଓଡ଼ର-ଓଆର୍ଟଙ୍କୁ କୋଲରିଜ୍ । ଗଣ ସାହିତ୍ୟର ଅର୍ଥ ମଣିଷର ସାହିତ୍ୟ, ଯାହା ମଣିଷର ସୂକ୍ଷ୍ମ ମୂଳଗୁଣ ଯେହି ଚଳେ । ଏପରି ସାହିତ୍ୟ କଦାପି Escapist ନୁହେଁ । Escapist ହେବ, ଯାହା ସତକୁ ଡର ମିଛ ଗଳ୍ପରେ ମନ ଭୁଲାଇ

ରହିବ । ମଣିଷର ମୂଳ-ଗୁଣଠୁଁ ଅଧିକ ସତ ଆଉ କଣ ଅଛି ? ସେ ମୂଳଗୁଣ ଚିରନ୍ତନର, ଯାହା ଏ ମତବାଦ ନୁହେଁ । ବାହାରର ଆବେଷ୍ଟନୀ ବଦଳାଇବା ପାଇଁ ଏ ସବୁ ମତବାଦ । ଅବଶ୍ୟ ଏ ବାହାରର ଆବେଷ୍ଟନୀ ଅତି ବଡ଼ ଜିନିଷ; କିନ୍ତୁ ଏ ମତସବୁ ବଦଳୁଛି । ବଦଳୁଥିବ । ଏ ମତ ସବୁ ଲୋକଙ୍କର ନୁହେଁ, ଥୋକେ ଲୋକଙ୍କର । ଯେଉଁମାନେ ମଣିଷର ମୂଳଗୁଣକୁ ନ ଚିହ୍ନି ତାର ବାହାରର ଆବେଷ୍ଟନୀକୁ ସାର କରି କୁହନ୍ତି ଯେ, ଅର୍ଥନୀତି, ସମାଜନୀତିରେ, ତାଙ୍କ ନିଜ ବାଦରେ ଫଳିଥିବା ମତର ପ୍ରଚାରକ ସାହିତ୍ୟ ହେଉଛି ଗଣସାହିତ୍ୟ, ସେହିମାନଙ୍କୁ ହିଁ Escapist ଆଖ୍ୟା ଦିଆଯାଇପାରେ—ଏହା ତ ମୋ ଲାଗୁଛି ।

ସବୁ ବାଦର ସାହିତ୍ୟକୁ ଆମେ ଗଣସାହିତ୍ୟ କହିବୁଁ, ଯେଉଁ ପରିମାଣରେ ତହିଁରେ ଚିରନ୍ତନ ଗୁଣର ଛାପ ପଡ଼ିଛି । ତାହା ନ ଥିଲେ ଆମେ ତାକୁ ବିଚାର କରିବୁଁ, ଯେଉଁ ଆଖିରେ ଆମେ ବିଚାର କରୁଁ ଭିନ୍ନ ଭିନ୍ନ ବିକାଳିଙ୍କର ବିଜ୍ଞାପନ ।

ଏ ତ ଗଲା ଗଣ-ସାହିତ୍ୟ, ଆଉ ମଣିଷ-ସାହିତ୍ୟ ବିଷୟରେ । ଉତ୍କଳ ସବୁଦିନେ ସରଳ; ତେଣୁ ସରଳତା ବିଷୟରେ ଉତ୍କଳ ଶିଳ୍ପୀଙ୍କୁ ତାଲିମ୍ କରିବାକୁ ପଡ଼ିବ ନାହିଁ । ଭାଷାର ସରଳତା, ବିଷୟର ସରଳତା, ଏ ତ ଦେଶରେ ରହିବ । ଭଲ ସାହିତ୍ୟ ସାଧାରଣ ଭିତରେ ଅସାଧାରଣକୁ ଦର୍ଶାଇବ; କାରଣ ଉପଯୁକ୍ତ interpretation ହେଲେହେଁ ଚମତ୍କାରୀ ଗୁଣ ବାହାରିବ । ଆଉ ଭଲ ସାହିତ୍ୟ ସମସ୍ତଙ୍କ ମନକୁ ପାଇବ । କାରଣ ସେ ସମସ୍ତଙ୍କ ମନ ଭିତରେ ଯେଉଁ ସ୍ଥିତିବାନ୍ ନିଦାନ, ତାହାରି କଥା କହିବ ।

ତା ପରେ ଆଉ ଗୋଟିଏ କଥା । ଆମ ଦେଶରେ ପୁରୁଣା ସାହିତ୍ୟ କାହିଁକି ପ୍ରଚାର ପାଇ ଆସିଛି, ନୂଆ ସାହିତ୍ୟ କାହିଁକି ପ୍ରଚାର ପାଉ ନାହିଁ ? ସେ ସମ୍ବନ୍ଧରେ ଆତ୍ମଗର୍ବୀ "ଜ୍ଞାନଲବଦୁର୍ବିଦଗ୍ଧ" ମାନେ ଭକ୍ତ ଲୋଭ ପୁରୁଣା ଲୋକଙ୍କୁ ଗାଳି ଦିଅନ୍ତି, ଆଉ ଭାବନ୍ତି—

"ଫୁଲ ଫୁଲ କଏ ଡାକୁଚ—"

"ଯାଉଛ କି ମଧୁବୋପା—କଲିକତା ହୋ" ଇତ୍ୟାଦି ଯେପରି କୁତ୍ସିତ Sex Perversion ଯୋଗୁଁ ଆଦର ପାଉଛି, ଉତ୍ତରରେ ଆଦର ଠିକ୍ ସେହି କାରଣରୁ । ଅଜକାଲି ପଣ୍ଡିତ ବୋଲାଇବା ପାଇଁ ସେକ୍ସପିୟରର ଛେଳେକୁ

ଲୋକେ ଯେପରି ଗାଳି ଦିଅନ୍ତି, ସେହିପରି ଏଣ୍ତେକେଣ୍ତୁ ଯାହା ପାରି ତା ହ୍'ସ୍ଯରିପଦ ଝାଣ ଝାଣ ଅଶ୍ରୁକଣ୍ଠ ଭଞ୍ଜ ହେଉଁକାଙ୍କ ବହୁ ମୌଳିକତା ଦେଖାଇବାକୁ ଚେଷ୍ଟା କରନ୍ତି । ହାୟ, ହାୟ 'ମାସ୍' କଣ ଖାଲି ଅାଦି ରସ ପାଇ ଭଞ୍ଜଙ୍କୁ ପଢ଼ନ୍ତି ? ଯେଉଁମାନେ 'ମାସ୍'କୁ କରନ୍ତି ଏତେ ହୀନ, ସେମାନେ କିପରି "ମାସ୍"ର ପଞ୍ଚନାୟକ ହେବାକୁ ମନ ବଳାନ୍ତି ?

ଭଞ୍ଜଙ୍କ ଲେଖାରେ ସରସତା ଅଛି, ବଡ଼ ଗୁଣ ଅଛି, ଯାହାଲାଗି ଲୋକେ ସହଜରେ ତାଙ୍କ ଆଡ଼କୁ ଢଳିବେ । ଯେ କଳାବନ୍ତୁ, ଯେ ଜଳ ପାଖରେ ଜନେ ଠକ ଲୁହନ୍ତି । ଯେଉଁ ଆଦିମ ପ୍ରବୃତ୍ତି ସବୁ ମଣିଷର ମନକୁ ଚିରଦିନ ଆନନ୍ଦ ଦିଏ, ତାକୁ ସେ ସାହସ କରି ଲେଖିଛନ୍ତି । ବିଦେଶୀ ଗଦ୍ୟ ସୂର୍ଯ୍ୟ ଲୋକେ ଫୁଲବାଟ୍‌ମାନଙ୍କ ଯୌନ ବର୍ଣ୍ଣନାରେ ବାଇ; କିନ୍ତୁ ଅମେ ଦୁଆର ବନ୍ଦ କରି ଯେଉଁ ଅନନ୍ଦ ପାଇବାକୁ ମନ ବଳାଇଥାଉଁ, ତାକୁ କଳାର ରସରେ ଭିଜାଇ ଭଞ୍ଜ ଆମ ଆଗେ ବଢ଼ାଇଲେ ସେ ହେବେ "ବର୍ବର"! ଆଉ ଆଦିରସ ପୁଣି ସେ ଯୁଗର ବନ୍ଧାଗତ ଥିଲା । ତହିଁରେ ପୁଣି ଭଞ୍ଜ ଅନେକ କଥା ଲେଖିଛନ୍ତି, ଯାହା ଭିତରେ ଏ ଦେହ-ବାସ୍ତବତାର ଭାଗ ସେତେ ବଡ଼ ନୁହେଁ । ଭଞ୍ଜଙ୍କ କଥା ଆଉ ଦିନେ ହେବ । ତାଙ୍କ ଲେଖା ଯେ ଏତେ ଦିନ ପ୍ରଶଂସା ପାଉଛି, ଏହା "ଗଣ-ସାହିତ୍ୟ"ର ପ୍ରଚୁର ପ୍ରମାଣ । ବିଲାତରେ ଦ୍ୱିତୀୟ ଚାର୍ଲସଙ୍କ ସମୟରେ ଯେଉଁ ଘୋର ଅଶ୍ଳୀଳତା ସାହିତ୍ୟରେ ଉଦ୍ଭବ ପଡ଼ୁଥିଲା, କାହିଁ ଆଜକାଲି ତ କେହି ସେ ସାହିତ୍ୟକୁ ଉଚ୍ଚ ସ୍ଥାନ ଦିଅନ୍ତି ନାହିଁ ! ଭଞ୍ଜଙ୍କ ସାହିତ୍ୟ ଆଦର ହେବାର କାରଣ ଯଦି ହୋଇଥାନ୍ତା ପଶୁ-ପ୍ରବୃତ୍ତି, ଅଶ୍ଳୀଳତା, ତାହାହେଲେ କେଉଁଦିନୁ ଲୋକେ ତାହାକୁ ପାସୋରିଲେଣି । ଯାହାର ପଶୁପ୍ରବୃତ୍ତି ଅଧୀର ସେ ଭଞ୍ଜଙ୍କ ସାହିତ୍ୟରୁ ବାଛି ବାଛି ଗ୍ରନ୍ଥ ମୁଖସ୍ଥ କରିବ । ସେଥିରେ କଣ ଅଛି ? କିନ୍ତୁ ତାଙ୍କ ସାହିତ୍ୟରେ ମଣିଷର ମୂଳ ଗୁଣକୁ ଛୁଇଁବାଭଳି ଅନେକଙ୍କ କଥା ଅଛି, ଯହିଁରୁ ଆଦିରସ ମଧ୍ୟ ଗୋଟିଏ । ଆଉ ସେ ମୂଳଗୁଣ ଆଗରେ କୃଷୀ ମଜଦୁର, ସାମ୍ୟବାଦୀ ଫ୍ୟାସିଷ୍ଟ, କାଳିଆ ଗୋରା ସମସ୍ତେ ସମାନ ।

ଯେ କୌଣସି ସାହିତ୍ୟକୁ ଆଦର କରି ମନେ ରଖିବା ଲାଗି ଦୁଇଟି କଥା ଲୋଡ଼ା—

(୧) ପାଠକଙ୍କ ବୁଝିବା କାମ ।

(୨) ଲେଖକଙ୍କ ବଡ଼ପଣ ।

ପଢ଼ାଳିଙ୍କ ବୁଝିବା କାମ ନିର୍ଭର କରେ କେତେଗୁଡ଼ିଏ କଥା ଉପରେ । ସେମାନେ ପଢ଼ି ଜାଣିଥିବେ, ସେମାନେ ସାହିତ୍ୟରୁ ଅନ୍ତତଃ ସାଧାରଣ ଭାବରେ ରସ ଟାଣି ପାରୁଥିବେ । ଯେଉଁ ଲେଖା ପାଠକୁ ସେମାନେ ଯିବେ, ତା ପ୍ରତି କୌଣସି କାରଣରୁ ସେମାନଙ୍କ ମନ ଟାଣିଥିବ । ଧର୍ମର କଥା, ମହଜନମଜଲିସ୍ କଥା, ଲୋକଙ୍କ ଅବସ୍ଥା କଥା, ଏହିପରି ପ୍ରସଙ୍ଗ ତହିଁରେ ଥିଲେ ବା ଅନ୍ୟ କୌଣସି କାରଣରୁ ଲୋକେ ତାକୁ ସହାନୁଭୂତି ଦେଇ ପଢ଼ିବେ । ଆଗ ସହାନୁଭୂତି ଆସିଲେ ତହୁଁ ଆସିବ ଭଲ ପାଇବା କଥା ।

ଯଦି ପଢ଼ାଳିଙ୍କ ବୁଝିବା କାମ ବଳେଇଯା ପଡ଼େ, ତେବେ ଲେଖାଳିଙ୍କ ବଡ଼ପଣ ଚର୍ଚ୍ଚା କରିବା କଥା ଉଠି ନ ପାରେ । ଭାଗବତର କାହିଁକି ଏତେ ପ୍ରଚଳନ ?

୧ । ଲୋକଙ୍କର ସହାନୁଭୂତି ସେ ଆଡ଼କୁ ଟାଣିଛି । ତହିଁରେ ଧର୍ମ, ଭକ୍ତି, ପାପପୁଣ୍ୟର ଭୟ ପ୍ରଭୃତି ଅନେକ ଗରଜ କଥା (vested interests) ରହିଛି ।

୨ । ଟୁଙ୍ଗୀରେ ବାରମ୍ବାର ଚର୍ଚ୍ଚା ହୋଇ ଲୋକଙ୍କ ବୁଝିବା କାମ ସେ ଦିଗରେ ଖୁବ୍ ପ୍ରଖର ହୋଇଯାଇଛି ।

୩ । ପୋଥି ଅତି ପୁରୁଣା ହେବାରୁ ବୁନିଆଦିପ୍ରିୟ ଜାତି ସହଜରେ ତାକୁ ଶ୍ରଦ୍ଧା କରି ଆସିଛି ।

ପୂର୍ବକାଳରେ ଗାଁ ଗାଁକେ ସାହିତ୍ୟିକ ବୈଠକ, ଲୋକଙ୍କ ବୁଝାମଣା ଏହିସବୁ ପୁରୁଣା ଗ୍ରନ୍ଥକୁ ଲୋକଙ୍କ ଭିତରେ ଚଳାଇ ଦେଇପାରିଛି । ତା ଉପରୁ ସବୁଠୁ ବଡ଼ କଥା, ଏତେ ଦିନ ଗଡ଼ିଯିବାରୁ କାଳକ୍ରମେ ଗ୍ରନ୍ଥସବୁ ଧୀରେ ଧୀରେ ଲୋକଙ୍କ ଭିତରକୁ ଅଳ୍ପେ ଅଳ୍ପେ ଗଳିଯାଇପାରିଛି । ଭଞ୍ଜ ଯେତେବେଳେ ପ୍ରଥମେ ତାଙ୍କ କାବ୍ୟସବୁ ଲେଖୁଥିଲେ, ସେତେବେଳେ କଣ ହଠାତ୍ ହୁ ହୁ ହୋଇ ସେ ସବୁ କାବ୍ୟ ଓଡ଼ିଶାର ଚାରିଆଡ଼େ ଖେଦିଯାଉଥିଲା, ନା ଏକା ଦିନକେ ଗୋପାଳ-କୃଷ୍ଣଙ୍କ କବିତା ଚାରିଆଡ଼େ ଲୋକେ ଗାଇବାକୁ ଆରମ୍ଭ କରିଦେଇଥିଲେ ? ଯଦି ଜନପର ନଜର ମୂଲ୍ ଥାଏ, ତେବେ ଧୀରେ ଧୀରେ ସେ ସମସ୍ତଙ୍କ ପାଖକୁ ଯାଇ ପହୁଞ୍ଚେ । ପୁଣି ସେତେବେଳେ ରେଳଗାଡ଼ି ନ ଥିଲା କି ଛାପାଖାନା ନ ଥିଲା ।

ଅତଏବ ଏ ଯୁଗରେ ଆମର ଲେଖା ଧୀରେ ଧୀରେ ଲୋକଙ୍କ ପାଖକୁ ଯିବ, ଯଦି ତାର ନିଜର କିଛି ଗୁଣ ଥାଏ । ସେଥିଲାଗି ତାର ବାଟ ସଫା କରିବା ଦରକାର । ସାହିତ୍ୟର ପ୍ରଚାର କରିବା ଲାଗି କଣ କରାଯାଇ ପାରେ ? ଗାଁ ଗାଁରେ ସାହିତ୍ୟିକ ବୈଠକ୍ ହେବା ଦରକାର । ଦଳ ବାନ୍ଧି ଘରିଆଡ଼କୁ ଯାଇ ଲୋକଙ୍କୁ ସାହିତ୍ୟର ସ୍ୱରୂପ ବୁଝାଇବା ଦରକାର । ଭଲ ସାହିତ୍ୟ ଲୋକେ ଯେପରି କିଣି ପାରିବେ, ସେହିପରି ଶସ୍ତା ଦରରେ ବଣ୍ଟନ କରିବା ଦରକାର ।

୧ । ସବୁଠୁ ବଡ଼ ଦରକାର ଏପରି ସାହିତ୍ୟ, ଯାହା ସହିତ ଲୋକଙ୍କର ସହାନୁଭୂତି ରହିବ ବା ଯାହାକୁ ପଢ଼ିବାକୁ ଲୋକେ ଗରଜ ବୁଝିବେ । ଅତଏବ ରୁଚି କଳା ପ୍ରଥମେ ଦରକାର । ଲୋକେ ସାହିତ୍ୟକୁ ସାହିତ୍ୟ ବୁଝି ପଢ଼ିବା ଦରକାର । ଆଜିକାଲିକା ଘଟଣା, କେଉଁଠି କେଉଁ ଲଢ଼େଇ ଲାଗିଛି, ଏସବୁ ଲୋକଙ୍କର ସାଧାରଣ ଶିକ୍ଷା ପାଇଁ ଦରକାର—ଦରକାର ଯେପରି ଖବର କାଗଜ ପଢ଼ିବା, ଅର୍ଥଶାସ୍ତ୍ର ପଢ଼ିବା ଓ ସାଧାରଣ ବିଜ୍ଞାନ ପଢ଼ିବା; କିନ୍ତୁ ଏସବୁ ପରୋକ୍ଷ ଭାବରେ ଲୋକଙ୍କ ଜ୍ଞାନ ବଢ଼ାଇ ଘରିଆଡ଼କୁ ଆଖି ଫିଟାଇବା ଛଡ଼ା ପ୍ରତ୍ୟକ୍ଷ ଭାବରେ, ସିଧା ଭାବରେ ସେତେଦୂର 'ସାହିତ୍ୟିକ ଧାରଣା' ପାଇଁ ସହାୟକ ନୁହେଁ । ଲୋକଙ୍କର କଳା-ଜ୍ଞାନ ବଢ଼ାଇବା ଲାଗି ମେଲେରିଆ, ବନ୍ୟା, ଆମେରିକାର ଘୁଷୁରିପୋଷା କଳ, ନାଇଟ୍ରିକ୍ ଏସିଡ଼, ଚୀନ୍ ଦେଶର ମଠ ତଥାରି, ଭିସୁଭିୟସ୍ ପାହାଡ଼ର ଲାଭା, ମାର୍କସଙ୍କ ସାମ୍ୟବାଦର ସୂତ୍ର ଏସବୁ ସେତେ ଆବଶ୍ୟକ ବୋଲି ମୋର ମନେ ହୁଏ ନାହିଁ । ଯଦିଚ ଯେଉଁଠି ଦରକାର, ସେଠି ଏସବୁ ବଳେ ବଳେ ଉପକରଣ ହିସାବରେ ଆସି ପହଞ୍ଚିବ; ଉଦ୍ଦେଶ୍ୟ ବଳରେ ନୁହେଁ । ଏସବୁ ମଧ୍ୟ ଦରକାର; କିନ୍ତୁ ଅନ୍ୟ କାରଣରୁ; ଲୋକଙ୍କ ସାହିତ୍ୟ-ଜ୍ଞାନ ବଢ଼ାଇବା ପାଇଁ ନୁହେଁ ।

୨ । ପୁଣି ଦରକାର ଲୋକଙ୍କ ଭିତରେ ଶିକ୍ଷା । ଅପାଠୁଆ ଲୋକଙ୍କ ପାଇଁ ଅପାଠୁଆ ସାହିତ୍ୟ କରିବା ବା ଅଫିମିଆ ଲୋକଙ୍କ ପାଇଁ ଅଫିମ ମାହାତ୍ମ୍ୟର ସାହିତ୍ୟ କରିବା କୌଣସିମତେ ଉଚିତ ନୁହେଁ । ସାହିତ୍ୟର ସେତିକି ଆଣ୍ଠୁ ଅଛି ।

ପଢ଼ାଲି ଯଦି ରସ ଘେନିବାକୁ ସମ୍ପୂର୍ଣ୍ଣ ଅକ୍ଷମ, କିଛି ଶିକ୍ଷା କରିବାକୁ ଏକାବେଳକେ ନାରାଜ, ତେତେବେଳେ ତା ପାଖରେ ସାହିତ୍ୟ କିପରି ଭାବରେ ଦେଖା ଦେବ ଯଦି ତାକୁ ଆଗରୁ 'ମଣି' ନ କରାଯାଏ । ଆମର ଅଭାବ ହେଉଛି ଶିକ୍ଷା । ଯାହାର ଶିକ୍ଷା ଅଛି, ସେ ନିଜେ ପଢ଼ି ପାରିବ । ଅନେକ ଚାକର, ପୂଜାରୀ,

ଗାଡ଼ିବାଲାଙ୍କୁ ଲେଖକ ପଢ଼ିବାର ଦେଖିଛୁ—ଯଦି ସେମାନେ କଚ୍ଛ ହେଲେ ପଢ଼ି ଜାଣନ୍ତି ।

ଏ ସାହିତ୍ୟକ ଶିକ୍ଷା ପାଇଁ ମୋ ମତରେ ସରଳ ଉପାୟ ହେଉଛି, (୧) ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ଓ (୨) ଯାତ୍ରାଦଳ, ପାଲା ପ୍ରଭୃତି ଯେଉଁସବୁ 'ସର୍ବସାଧାରଣ' ଅନୁଷ୍ଠାନ ରହିଛି, ତାର ସଂସ୍କାର । ଏ ଦୁଇଟି କଥା ପରସ୍ପରକୁ ସାହାଯ୍ୟ କରେ । ମଫସଲରେ ଯାହାକୁ ସାଧାରଣ ଦି'ଅକ୍ଷର ଜଣାଅଛି, ସେ ଭାଗବତ, ମଥୁରାମଙ୍ଗଳ ପଢ଼େ; ଆମ ନୂଆ ସାହିତ୍ୟ ପଢ଼େ ନାହିଁ । ଗ୍ରନ୍ଥଶାଳୀରେ ପଢ଼ି ପଢ଼ି 'ଭାଗବତ' ବୋଲି ଜାଣିଲେ ଅନେକଙ୍କ ପକ୍ଷରେ ଯଥେଷ୍ଟ ହେବ । ଆମ ସାହିତ୍ୟ ସେମାନଙ୍କ ସାଥିରେ common bond of interest କରି-ପାରି ନାହିଁ । କରିପାରିବ କାଳକ୍ରମେ; ନୋହିଲେ ପ୍ରଚାରଦ୍ୱାରା । ଆମର ଚିରକାଳ ରକ୍ଷଣଶୀଳ ଦେଶ—ଚୀନଦେଶ ପରି; ତେଣୁ ଏଠି କାଳକ୍ରମେ କହିଲେ ବହୁକାଳ ବୁଝାଇବ । ଅତଏବ ପ୍ରଚାର ହେଉଛି ଶ୍ରେୟଃ ।

ପାଲା, ଯାତ୍ରା ଭିତରେ ଯେ କେତେ ସାହିତ୍ୟ ଆଲୋଚନା ହୁଏ, ତା ଅନୁଭବୀ ମାନେ ବୁଝିପାରୁଥିବେ । ପାଲା ଚର୍ଚ୍ଚା କରେ ଶୁଦ୍ଧ-ସାହିତ୍ୟର, ଅର୍ଥ ଉପମା ଅଳଙ୍କାର ପ୍ରଭୃତି ଭଲ କରି ବୁଝାଏ, ସଂସ୍କୃତ ମଧ୍ୟ ବୁଝାଏ ଏତେ ନଠା-ନଠି କରି ଯେ 'ନରପତି' ଶବ୍ଦ ପଣ୍ଡିତଙ୍କ ସମାସ, ପ୍ରତ୍ୟୟ ଭାଙ୍ଗିବୁ 'ନରଶବ୍ଦ' ଗୋଟା ଗୁଡ଼ା ରୂପ କରି ବାହୁଲ୍ୟ କରି ବୁଝାଏ ଅଥଚ ଗାମ ଲୋକେ ମନକଷ୍ଟ ଦେଇ ଶୁଣନ୍ତି ।

ଯଦି କୌଣସିମତେ ଏ ଯୁଗର ପାଲାବାଲା ଏ ଯୁଗର ଶୁଦ୍ଧ-ସାହିତ୍ୟକୁ କାନ୍ଧେ ଲେଖି ପ୍ରଚାର କରନ୍ତେ, ତା'ହେଲେ କପରି ହୁଅନ୍ତା ?

ଯାତ୍ରା ପାଇଁ ଲୋକେ ଅତି ସହଜ । ଓଦାକନା ପେଟରେ ପକାଇ ସେମାନେ ଯାତ୍ରା କରନ୍ତି; କିନ୍ତୁ ଯେଉଁ (medium) ପ୍ରକାଶର ଉପାୟ ଏହିଶା ସାରା ଚନ୍ଦ୍ର ଚନ୍ଦ୍ର କରି ଖୋଜିବୁଲେ, ଯାହାର ମାଧ୍ୟମରେ ଆମର କଥା ଲୋକଙ୍କ ଭିତରକୁ ବୋଲି ଯାଇପାରନ୍ତା, ତାର ବ୍ୟବହାର ଆମେ କରୁ ନାହିଁ । ତା'ର ବ୍ୟବହାର କରନ୍ତି ଯେହିମାନେ, ଯେଉଁମାନେ ତା'ର ଅର୍ଥ କରି ବୁଝନ୍ତି ନାହିଁ ।

୩ । ଗ୍ରାମଅଞ୍ଚଳେ ପୁସ୍ତକାଗାର ଲୋଡ଼ା, ଯେଉଁଠି ଏ ଯୁଗର ସାହିତ୍ୟ ପୂର୍ଣ୍ଣ ରହିବ । ପୂର୍ବେ ଏ ଦେଶରେ "ଗାଦି" ରୂପରେ ଗାଁଏ ଗାଁଏ "ଲାଇବ୍ରେରି"

ଥିଲା, ଏ କଥା ସମସ୍ତେ ଜାଣନ୍ତି । ନିଖିଳ ଭାରତ ଲାଇବ୍ରେରୀ ସଭା ରିପୋର୍ଟରେ ରେଭେନ୍‌ସା କଲେଜର ଲାଇବ୍ରେରୀୟାନ ଶ୍ରୀଯୁକ୍ତ ଦାମୋଦର ମିଶ୍ର ମଧ୍ୟ ଓଡ଼ିଶାର ଏ ଗାଦ ଲାଇବ୍ରେରୀ କଥା ପ୍ରକାଶ କରିଥିଲେ ।

ଆଜିକାଲି ଲାଇବ୍ରେରୀ ଅଭାବ; ସେଥିପାଇଁ ଟଙ୍କା ନାହିଁ । ଏସବୁ ପାଇଁ ସଙ୍ଘ ଗଢ଼ିବା ଦରକାର ।

୪ । ଜର୍ମାନୀ ଦେଶରେ ଛାତ୍ରମାନେ ଯେପରି ଛୁଟିରେ ଗାଁ ଗାଁକେ ବୁଲି ଲୋକଙ୍କ ଭିତରେ ଜ୍ଞାନ ପ୍ରଚାର କରନ୍ତି, ରୁଷିଆରେ ଯେପରି ହେଉଥିଲା, ସେହିପରି ଆସନ୍ତାବର୍ଷ ଭୁଲିଯାଇ ଅଧ୍ୟାପକ ବା ପଣ୍ଡିତ ଲୋକଙ୍କୁ ସାଙ୍ଗରେ ନେଇ ଓଡ଼ିଶା କଲେଜ ସ୍କୁଲର ଛାତ୍ରମାନେ ସାହିତ୍ୟର ବାର୍ତ୍ତା ଆଉ ଯୁଗର ବାର୍ତ୍ତା ନେଇ ଗାଁ ଗାଁକେ excursion କରିବା ଉଚିତ । ଏଥିରେ ଯାହା ଦେଶର ମଙ୍ଗଳ ହେବ, ଗରିବ ଦେଶର ପାଣ୍ଠିରୁ ଖର୍ଚ୍ଚ କରି ବିଦେଶକୁ excursion କରିଯିବାଠାରୁ ନିହାତି କମ୍ ହେବ ନାହିଁ । ପୂର୍ବେ ପଣ୍ଡିତମାନେ ଲୋକଙ୍କ ସାଥିରେ ମିଶି ସେମାନଙ୍କୁ ବୁଝାଉଥିଲେ, ବିବାହ ସଭାର ମଜଲିସ୍ ଭିତରେ ଜ୍ଞାନର ଚର୍ଚ୍ଚା କରୁଥିଲେ, ଶ୍ଳୋକାନ୍ତ ପରୀକ୍ଷା ହେଉଥିଲା । ମୁଁ ତ ଭାବୁଛି ଯେ ଆମର ସାମାଜିକ ଅନୁଷ୍ଠାନ ଭିତରେ ପୁଣି ସେହିପରି ଜ୍ଞାନର ଚର୍ଚ୍ଚା ଓ ସାହିତ୍ୟର ଚର୍ଚ୍ଚା ରଖିବା ଉଚିତ ।

ଏପରି ଆମ ଭିତରେ ବୈଠକ ଡାକିବା ଉଚିତ । ଯହିଁରେ ଏ ସାହିତ୍ୟର ପ୍ରଚାରର ଉପାୟ ବିଚାର ହୋଇ ଖାଲି ଲେଖାରେ ନୁହେଁ, କାର୍ଯ୍ୟରେ ମଧ୍ୟ ପ୍ରଚାର ପାଇଁ କଣ କିପରି କରାଯାଇପାରେ, ତାହା ହୋଇପାରିବ ।

ଓଡ଼ିଶାର ଦାରିଦ୍ର୍ୟତା ସବୁଆଡ଼େ ଯେପରି ଅସୁବିଧା କରୁଛି, ସାହିତ୍ୟରେ ମଧ୍ୟ ସେହିପରି । ସାହିତ୍ୟକୁ ଏ ଦେଶରେ ଜୀବିକା ବୋଲି କେହି ନେଇ ପାରିବେ ନାହିଁ । ସାହିତ୍ୟ ଏ ଦେଶର ଅବସର ସମୟର ଉଦ୍ୟମ । ସାହିତ୍ୟର ପ୍ରଚାରରେ ମଧ୍ୟ ଏ ଉଦାସୀନତା ରହି ଆସିଛି । ତେଣୁ ପ୍ରକୃତ ଗଣ-ସାହିତ୍ୟ ନା ମ୍ୟାନୁଫ୍ୟାକ୍‌ଚର (ତିଆରି) ହୋଇପାରୁଛି, ନା ପ୍ରଚାର ହୋଇପାରୁଛି ।



# ଶିଳ୍ପୀ ଓ ମଣିଷ

କଲ୍ୟାଣୀୟା କାଦମ୍ବରୀ,

ତୁମେ ଯେଉଁଠି ଥାଅ ପଛେ ନିଶ୍ଚୟ ଏ ଚିଠି ତୁମ ପାଖରେ ପହଞ୍ଚିବ, ଆମ ହୃଦ୍‌ଧାରଣାର କାଉଁଶିକା ଶର ପରି; କାରଣ ମୁଁ ଏଥିରେ ମନ୍ତ୍ର ଦେଲି— କେବଳ ଏଥିପାଇଁ ଯେ, ସ୍ୱପ୍ନ ଓ ବାସ୍ତବର ଅପୂର୍ବ ମିଳନର ସନ୍ଧିରେ ତୁମ ମନରେ ଯେଉଁ ଭ୍ରମଟିକକ ହୋଇଥିଲା, ତାର କିଛି ସମାଧାନ ମୁଁ କରିପାରିବି । ତୁମେ ଭାବିବ, ମୁହୂର୍ତ୍ତିକର କଥା; ସେଥିପାଇଁ ପୁଣି ଅପରିଚିତ ପାଖରୁ ଏତେ ଦୀର୍ଘ ଗୋଟିଏ ପତ୍ର ! କିନ୍ତୁ ଯେ ବୁଝେ, ସେ ବୁଝେ ମୁହୂର୍ତ୍ତର ମୂଲ୍ୟ କେଉଁଠି, ଜୀବନରେ ଦୁର୍ଯୋଗ ଆସେ ମୁହୂର୍ତ୍ତରେ । ଗୋଟିଏ ମୁହୂର୍ତ୍ତର ଭୁଲ ପାଇଁ କେତେ ଜୀବନ ପୋଡ଼ିଯିବାର ଏଇ ଆଖି ଦେଖିଛି । ପୁଣି ମୁହୂର୍ତ୍ତ ଆଣେ ସୁଯୋଗ, ଯାହା ଚାଲିଗଲେ ଆଉ ଆସେ ନାହିଁ । ରହିଯାଏ କେବଳ କାନରେ ଗୋଟିଏ କ୍ଷୀଣ ଆଳାପ ଅଥବା ମିଳାଇ ଯାଉଥିବା ଶିଶିରର ଦୁଇ ବୁନ୍ଦା ଟଳ ଟଳ ଲୁହ, ସ୍ୱପ୍ନାବିଷ୍ଟ ଲତିକାର ଶୂନ୍ୟ ବାହୁବନ୍ଧନ ଉପରେ ।

ସେ ଦିନ ତୁମେ ମଣିଷକୁ ଦେଖିଲ, ବସ୍ତୁ ଜଗତର ସାଧାରଣ ମଣିଷ, ସେ କଣ ସ୍ୱପ୍ନର ରାଜପୁତ୍ର ? ନା ସେ ମାଟିର ମଣିଷ । ତାର ଦେହର ଗଠନ ପାଇଁ ଦାୟୀ ଯୁଗ ପରମ୍ପରାର କେତେ ବଂଶାନୁଗୁଣର ପ୍ରଭାବ, କେତେ ବୈଜ୍ଞାନିକ ପ୍ରକ୍ରିୟା । ତାର ଆକାର, ଗଢଗାଢ ଓ ଅନ୍ୟାନ୍ୟ ବାସ୍ତବ ଗୁଣ କେତେ ବସ୍ତୁପ୍ରକ୍ରିୟା ବସ୍ତୁପରିବେଷ୍ଟନୀରେ ସୀମାବଦ୍ଧ ସୂକ୍ଷ୍ମ ଆତ୍ମାଟାକୁ ଛାଡ଼ିଦେଲେ ଅନ୍ୟ ସବୁ କେବଳ ବନ୍ଧନ ଆଉ ବନ୍ଧନ ।

କିନ୍ତୁ ମଣିଷକୁ ଦେଖିବା ପୂର୍ବରୁ ତୁମେ ସାହିତ୍ୟରୁ ପାଇଥିଲ ଅନ୍ୟ ଗୋଟିଏ ରୂପ, ଅନ୍ୟ ଗୋଟିଏ ଧାରଣା । ସେ ଧାରଣା ତୁମେ ନିଜେ ତ ଗଢ଼ିଥିଲ, ସାହିତ୍ୟରୁ ଶିଳ୍ପୀ ପ୍ରାଣର ଯେତିକି ପାଇଥିଲ ତାହାରି ଉପରେ ନିଜର କଅଁଳ ମରମଭାବ ଢାଳି । ସାହିତ୍ୟର ଶିଳ୍ପୀ ଓ ସାଧାରଣ ଜୀବନର ମଣିଷ ଏ ଦୁହେଁ ଯେତେବେଳେ ପୃଥକ୍ ପଡ଼ିଗଲେ ସେତିକିବେଳେ ତୁମ ମନରେ ସନ୍ଦେହ ଆସିଲା । ତୁମ ଆଖିରେ କଳ୍ପନାର ଶିଳ୍ପୀ ରୂପ ଉଭେଇଗଲା । ବାସ୍ତବତାର ମଣିଷ ପ୍ରତି ଆସିଲା ବିମୁଖତା, ଘୃଣା ନ ହେଲେ ମଧ୍ୟ, ଅବଜ୍ଞା । ଶିଳ୍ପୀ ଓ ମଣିଷ

ଭିତରେ ଯେଉଁ ବହଦ୍ଗୁଣ ଗୁଣ ତୁମେ ଦେଖିଲ, ତାହା ଦ୍ୱାରା ଉପମାରୁ ତୁମେ ପାଇଲ ହସର ଉପାଦାନ । ସେଇ ହେଲା ତୁମର ଭୁଲ, ଯେଉଁ ଭୁଲ ଭାଙ୍ଗିବା ପାଇଁ ଏ କାହିଁଶିକା ଶର ।

ସଞ୍ଜର ବୋହୂ, ମୁହଁ ଦେଖା ଆଲୁଅ ଯେତେବେଳେ ଶରତ ନେଳି ଆକାଶରୁ ଝର ପଡ଼ୁଥାଏ ଦୂର ଗାଁ ମଶାଣି ଉପରେ, କେଡ଼େ ସୁନ୍ଦର ସେ ଦୃଶ୍ୟ, କେଡ଼େ ସୁନ୍ଦର ! କୋଉଠି ବରଗଛର ଅଗ ଚକ୍ ଚକ୍ କରୁଥାଏ, ପବନରେ ଥାଏ ପୂର୍ଣ୍ଣ ପ୍ରାଣର ସ୍ଥିରତା । ମଶାଣିରେ ହାଡ଼ ପାଉଁଶ ଉପରେ ଖେଳିଯାଏ ନବତାର ସୌରଭ, କର୍କଶ ସାଫଲ୍ୟତା ଯାଏ ମିଶି, କରୁଣର ଉଦାସୀ ଅସମାପିକା ଛନ୍ଦରେ । ତୁମେ ଅନୁଭବ କର, ଗୋଟାଏ ନୂଆ ପ୍ରାଣ ଯେପରି ଖେଳି ବୁଲୁଛି । ମୂହୂର୍ତ୍ତି ହଜିଯାଏ, ବ୍ୟାପକ ସମସ୍ତ ଭିତରେ ବୁଦ୍‌ବୁଦ୍ ପରି । ତା ପରେ ଯେଉଁ ରୂପ ଅସେ ସେ ସମ୍ପୂର୍ଣ୍ଣ ଭିନ୍ନ । ତୁମେ ତହିଁରେ ନବତା ପାଅ ନାହିଁ ।

ନଈ ଉପରେ କେତେ ଅନ୍ଧାର ଘୋଟି ତ ଯାଉଛି; କିନ୍ତୁ କାହାକୁ କେତେବେଳେ କେଉଁ ଅନ୍ଧାର ଘୋଟି ସେଠି ଭଲ ଲାଗିଥିଲା, ଜହ୍ନ ଆଲୁଅରେ ନୁହେଁ, ତାରା ଆଲୁଅରେ । କାହିଁକି ? ସୁସୁପ୍ତି ଭିତରେ ଜୀବନ, ଅନ୍ଧାର ଭିତରେ ହୃଦୟର ସ୍ପନ୍ଦନରେ ସାମଞ୍ଜସ୍ୟ କିଏ କେବେ ପାଇଥିଲା । ମନରେ ଗମ୍ଭୀର ଗୀତ ଟାଣିଛି—"ସେ ଦିନ ଥିଲା ଦିଆଲି ଉଆଁସ ।"

କାହାକୁ କେବେ କିଣ ଏପରି ଭଲ ଲାଗିଥାଏ, ଭାବିଲେ ମନେପଡ଼େ ଗୋଟିଏ ଗୋଟିଏ ବେଳାର କଥା, ଯେତେବେଳେ ବାସ୍ତବ ହୁଏ କେବଳ ସଙ୍କେତ, ପବନର କ୍ଷୀଣ ରୁଦ୍ଧ ଶ୍ୱାସ, ପଥରର ପରଶ, କାନ ପାଖରେ କାହାର ତାତିଲା ଓଦା ନିଃଶ୍ୱାସ ଆଉ ମନଭୁଲା ଦୁଇଟା କଥା; ସଙ୍କେତ ଛଡ଼ା ଆଉ କଣ ?

ଶିଳ୍ପୀର ପ୍ରକାଶ ଠିକ୍ ସେହିପରି । ଗୋଟିଏ ଗୋଟିଏ ବେଳା ଆସେ ଯେତେବେଳେ ନିଜର ଅଜାଣତରେ ମଣିଷ ମନରେ ସୀମା ଭାଙ୍ଗିଯାଏ, କଳା ଶକ୍ତି ନିଜକୁ ପ୍ରକାଶ କରିବସେ । ମଣିଷର ମନ ହୁଏ ବେଣୁ ଗୁଚ୍ଛ, ତାହାର ଅବଲମ୍ବନରେ ଅସୀମର ବଇଁଶୀ ବାଜି ଉଠେ । ସେ ସମୟର ମଣିଷ କାଳସୀ-ଲଗା ମଣିଷ, ତା ମନର ରୂପ ଶିଳ୍ପୀ ମନର ରୂପ । ଅନ୍ୟ ସମୟରେ ସେ ସେପରି ନ ଥାଏ, ସେ ହୋଇଥାଏ ସାଧାରଣ ଲୋକ । ଅତଏବ କଳା ଭିତରୁ ଯେଉଁ ରୂପ ଅମେ ପାଉ ସେ ହେଉଛି ଶିଳ୍ପୀର ରୂପ । ସେ ରୂପ ବାସ୍ତବ ଜୀବନରେ

ପାଇବାକୁ ଆଶା କରିବା ବୃଥା । ଲେଖକ ବାସ୍ତବ ଜୀବନରେ ସବୁବେଳେ ଶିଳ୍ପୀ ନୁହେଁ । ସେ ସେହି ମୁହୂର୍ତ୍ତରେ ଶିଳ୍ପୀ, ଯେତେବେଳେ ତାହା ମନରେ ବାସ୍ତବର ମୋହ କଟିଯାଇ ଫୁରୁଛି କଳାର ପ୍ରାଣ ।

ତେଣୁ ସାହିତ୍ୟକୁ ଲେଖକର ସାଂସାରିକ ପରିଚୟ ଅନୁଯାୟୀ ବିଗ୍ଭର କରି ଦେଖିଲେ କେବଳ ଯେ କଳା ଗ୍ରହଣ କରିବାରେ ବାଧା ଘଟିବ, ସେତିକି ନୁହେଁ; କଳାର ଅପମାନ ମଧ୍ୟ ଘଟିବ । କାଳିଦାସ ବା ସେକ୍‌ସପିଅରଙ୍କ ସାଂସାରିକ ଅବସ୍ଥାନ ବିଷୟରେ ଯଦି ଲୋକଙ୍କର ଧାରଣା ଥାଆନ୍ତା, ତେବେ ସେମାନଙ୍କୁ ଭଗବାନଙ୍କ ପାଖରେ ଲୋକେ ଆସନ ଦିଅନ୍ତେ ନାହିଁ । ସେକ୍‌ସପିଅର ଏଡ଼େ ବଡ଼ ଲେଖକ, କିନ୍ତୁ ତାଙ୍କ ବିଷୟରେ ଯେ ଯେତେ ଧାରଣା କରିବାକୁ ଯାଇଛି, ସେ କେବଳ ଧାରଣା କରିଛି ତାଙ୍କର ଶିଳ୍ପୀ-ରୂପକୁ । ସେହି ଧାରଣା ତାଙ୍କର ବ୍ୟକ୍ତିତ୍ୱକୁ କବିତାମୟ କରି ରଖିଛି । ଏହି କାରଣରୁ ମଧ୍ୟ ମୋର ମନେହୁଏ ଯେ, ସ୍ଥାନ ଓ କାଳର ବନ୍ଧନ ନ ଥିବାରୁ ଅପର ଦେଶର ଲୋକେ ସାହିତ୍ୟରୁ ଶାଶ୍ୱତ ଅଂଶର ଅଧିକ ପରିଚୟ ପାଇପାରିବେ, ନିଜ ଦେଶର ଲୋକଙ୍କ ଅପେକ୍ଷା ।

କବି ଅସୀମର ବଇଁଶୀ ହୋଇ ବାଜି ଉଠେ । ଯେଉଁମାନେ ତାହା ଶୁଣନ୍ତି, ସେମାନେ ତାହା ବୁଝନ୍ତି ଏବଂ ଗୋଟାଏ ସୁରର ସିଅ ଧରି ଜୀବନ ଭସାଇ ଦେଇ ଗ୍ଭଲନ୍ତି । କବି ପ୍ରତିମା ଭିତରେ ପ୍ରାଣ ଦିଏ । ତୁମେ ବା କଣ ଜାଣିଛ—କେଉଁ କବିର କୁହୁକ ପରଶରେ ତୁମର ଦରଖୋଲା ମନ ଖୋଲିଯିବ, ବାସ୍ତବତାର ସ୍ଥୂଳ ବନ୍ଧନ ମିଳାଇଯିବ, ମୁହୂର୍ତ୍ତର ଢଳ ଢଳ ନିଶାରେ ଯମୁନା ସହିତ ଉଜାଣି ହୋଇ ତୁମେ ମଧ୍ୟ ଟଳି ଟଳି ଛୁଟିଗ୍ଭଲିବ ? କବି 'କିଛି ନାହିଁ'ରୁ 'ସବୁ ଅଛି' ସୃଷ୍ଟି କରେ । କବି ସୃଷ୍ଟି କରି ଗ୍ଭଲେ ସୌନ୍ଦର୍ଯ୍ୟ ଆଉ ସୌନ୍ଦର୍ଯ୍ୟ । କିନ୍ତୁ କଳାରେ, ନିଜର ଦେହରେ ନୁହେଁ ବା ନିଜର ବାସ୍ତବ ପ୍ରସ୍ତାବନାରେ ନୁହେଁ । ତହିଁରେ ତାର ହାତ ନାହିଁ, ତହିଁ ପ୍ରତି ତାର ଖିଆଲ ନାହିଁ ସୁଦ୍ଧା । ତାର ନିଜର ରୂପ ବା ନିଜର ବାସ୍ତବତା ଉଆରି କଲାବେଳେ ଯଦି ତାର ମତ ଲୋଡ଼ା ହୋଇଥାନ୍ତା, ସେ ହୁଏତ ଭିନ୍ନ ଦେହ ଲୋଡ଼ିଥାନ୍ତା, ହୁଏତ ଗୋଟାଏ କବିତାମୟ କଳ୍ପନାମୟ ରୂପ ଯେମିତି ଆସି ଅବତାର ନେଇଥାନ୍ତା । କିନ୍ତୁ ତା ତ ହୋଇନାହିଁ । ଜୀବନ ନେଇ ବଞ୍ଚି ରହିବା ପାଇଁ କେତେଗୁଡ଼ିଏ କଥା ମୁଣ୍ଡପାତି ତାକୁ ମାନିନେବାକୁ ପଡ଼େ । ତାହା ଭିତରେ ତାର ରୂପ, ତାର ହାବଭାବ, ତାର ସାଂସାରିକ ପରିସ୍ଥିତି । କବିତାର ନିଶାରେ ସେ ଏ ସବୁକୁ ଭୁଲିଯାଏ । ଏ

ସବୁ ତାର ସ୍ଥୂଳତା ପକ୍ଷରେ ଜଦାନ ହେଲେ ସୁଦ୍ଧା ଯେଉଁ ସୂକ୍ଷ୍ମ ଭାବମଗ୍ନତାରେ ତାର ଶିଳ୍ପୀ-ପ୍ରାଣ ବନ୍ଦୀ ରହେ, ତାହା ତୁଳନାରେ ସେ ସବୁ କେତେ ତୁଚ୍ଛ ।

ଛଳ ଛଳ ଗଙ୍ଗାର ଘୃହାଣୀ, ଲମ୍ବା ଲମ୍ବା ବାଳ, ରଙ୍ଗିନ୍ ପୋଷାକ, ଫୁଲ ଓ ସୁବାସର ବେଶ, ଅଭିନୟ କରୁଥିବା ପରି ଶାନ୍ତିନିକେତନୀ ଅଙ୍ଗଭଙ୍ଗୀ ଏ ସବୁ କେବେ କେବେ କବିର ବିଶେଷ ଖିଆଲ ହେଲେ ସୁଦ୍ଧା ଏହା ଯେଣୁ କବି ରହିପାରେ ନାହିଁ କମ୍ବା ଏ ସବୁ କଲେ ଯେ-ସାଣ୍ଡ-ସେ କବି ହୋଇପାରେ ନାହିଁ । ଅମ ରବି ବାବୁଙ୍କ ଭଷାରେ—"ଚେଷ୍ଟା କଲେ କି, କବିତା ହୁଏ ଲେଖି ?"

କବି ବିଷୟରେ କଳ୍ପନାମୟ ଧାରଣାକୁ ବାସ୍ତବ କରିବାକୁ ଯାଇ ଏ ସବୁ ବୃଥା ସଙ୍କେତବାଦ । ମନଟା କବିର, ଦେହଟା ସାଧାରଣ ମଣିଷର । ଏ ବିଷୟରେ ଭ୍ରମ କଲେ ଶେଷରେ ବିପଦରେ ପଡ଼ିବ । କପରି ସେ କଥା ପରେ ଲେଖୁଛି ।

ଉତ୍କଳୀୟ ଶ୍ରେଷ୍ଠ କଳାର ମଉଡ଼ମଣି କୋଣାର୍କ । ସମୁଦ୍ର ଭିତରୁ ସୂର୍ଯ୍ୟ ଲୁଦାମାଣ ଆକାଶକୁ ଉଠେ, ବାଲିବନ୍ତ ଉପରେ ସକାଳର ଶିଶିର ଭିତରେ ନଇଁ ନଇଁ ଆସି ପହିଲି ଚୁମ୍ବନରେ ମନ୍ଦିରର କପୋଳକୁ ଲାଲ କରିଦିଏ, ସବୁଗରେ ଉଜ୍ଜ୍ୱଳ କରିଦିଏ । ସେଇ ଦଦବୀ ମନ୍ଦିର ଅନାଦି ଶିଳ୍ପୀର ଆଦରରେ ପ୍ରାଣ ପାଇ ହସି ଉଠେ । ମନ ଉତ୍ଫୁଲ୍ଲ ହୋଇ ନାଚେ, କଳ୍ପନା ଗଗନରେ ଫୁଲର ଲହଡ଼ି ଭର୍ତ୍ତି ଯାଏ—"କରମା କେ ଏକାଦଶୀ—ଫୁଲ ଫୁଟେ ବାରମାସୀ, ଡ଼ାଲ୍ ଖାଇ ରେ—ଏ-ଏ ।" ଏଇଠି ଜୀବନର ଆନନ୍ଦ ଅଛି, ଏଇଠି, ଏଇଠି । ବରଣମାଳା ଦେବାକୁ ମନ ହୁଏ ଶିଳ୍ପୀକୁ, ଯାହା ମନର ଆନନ୍ଦର ଉଦ୍ଦାମ ଡାଲ୍ ଖାଇ ନାଚ ଦନେ ଫୁଟାଇଥିଲା ପଥର ଦେହରେ ଏଇ କଳା ।

କଲୁ ପୃଷ୍ଠା ସଛକୁ ଓଲଟେ । ପଶିଯାଏ, ବାରଶହ ବଢ଼େଇ ମଝିରେ କାନ୍ତିବିଟି ଶିବେଇ ସାନ୍ତ୍ରା । ବାରଶହ ଏକ ଆତ୍ମା, ବାରଶହ ଏକ ମନ, କଏ କେଉଁଠି ଶିଳ୍ପ ଗଢ଼ୁଛି । କାଳିଆ କୋଚଟ ଦେହରୁ ଝାଳ ଗମ୍ ଗମ୍ ବୋହି ଯାଉଛି । ବେଳେ ବେଳେ ବଟୁଆରୁ ଖଣ୍ଡେ ଲେଖାଁ ପାନ । ବିଶ୍ରାମର ହାତର ହୁଡଆର ପଥର ଉପରେ ଗ୍ଲୁଲୁଛି ଠକ୍ ଠକ୍ ଠକ୍ । ବାରଶହ ବଢ଼େଇ, କଏ ସୁନ୍ଦର ସୁଠାମ; କଏ କୁଞ୍ଚିତ, ମୋଟା ୯୦ ଓହଳ ପଡ଼ୁଛି, ଝୁଙ୍କି ପଡ଼ିଥିବା

ଗୋଟା ମୁହଁରୁ ବଡ଼ ବଡ଼ ହଳଦିଆ ହଳଦିଆ ଦାନ୍ତ ପଦାକୁ ଫୁଟି ଦିଶୁଛି । ଅସୁନ୍ଦର; କିନ୍ତୁ ଶିଳ୍ପୀ । ତାର ମନର ରାଗିଣୀର ରଙ୍ଗ ଅଛି । କାଳିସୀ-ଲଗା କଳା-ଶକ୍ତି ତା ଉପରେ ବେଶୀ ଆବତରେ । ଅମର ଶିଳ୍ପୀ ସୌନ୍ଦର୍ଯ୍ୟର ସ୍ରଷ୍ଟା, ବରଣମାଳା ଦେବ ତାକୁ ?

ତୁମେ ବୋଧହୁଏ କେବେ ଭାବିନାହଁ, କଳା ଶିଳ୍ପୀ ଓ ଦୁନିଆର ମଣିଷ ଭିତରେ ଏତେ ବିସଦୃଶ ରହିପାରେ; କିନ୍ତୁ ଭାବି ଦେଖ, ବୁଝିବ । ତେଣୁ ଯଦି ବାସ୍ତବତା ଭିତରୁ ଆଦର୍ଶକୁ ବୁଝି ନେବାକୁ ଶକ୍ତି ନ ଥାଏ, ତେବେ ଗୀତଟିରେ ମୁଗ୍ଧ ହେଲାପରେ ଉହାଡ଼ରେ ଥିବା ଓସ୍ତାଦ୍‌ଜୀଙ୍କୁ ଅଭିବାଦନ କରିବାକୁ ଛୁଟି ଯାଅ ନା, ମୋର ସାନ କୁହା ମାନ । ଓସ୍ତାଦ୍‌ଜୀଙ୍କର ବାସ୍ତବତାର ସ୍ଥୂଳ ରୂପ ଦେଖି କାଳେ ରାଗିଣୀର ସ୍ମୃତି ନଷ୍ଟ ହୋଇ ଯିବ, କିଏ ଜାଣେ ?

ଏପରି କବିକୁ କିଏ ଭଲ ପାଇପାରେ, କେବଳ କବି ଛଡ଼ା ? ସେ ଯେ ବାହାରକୁ ତୁଚ୍ଛ କରିଛି, ସାଧାରଣଙ୍କ ଭିତରେ ଥିଲେ ସୁଦ୍ଧା କିପରି ଗୋଟାଏ ଆଉ ପରି କିଛି ! ସେହି ଯେଉଁ କୋଣାରକର ଲୁଣ୍ଠିତ ଶିଳ୍ପୀ କଥା ମୁଁ କହିଲି, ଅନେକ ଶିଳ୍ପୀ ତ ସେହିପରି । ତାଙ୍କ ଦେହର ରୂପ ଯାହା ହେଉ, ମନର ରୂପର ସୁନ୍ଦରିମା ଦେହର ରୂପକୁ ଏପରି ଢାଙ୍କି ଦିଏ ଯେ, ତାଙ୍କ ମନର ରୂପରେ ଭୁଲି ନିଜର ପରମୁହୂର୍ତ୍ତର ଦୁର୍ବଳତାର ଦେହର ରୂପରେ ତାକୁ ଯେ ଖୋଜିଛି, ସେ ଆଘାତ ପାଇଛି । ପ୍ରଥମେ ଯେତେବେଳେ ଆରାଧିକା ଆହୁଜ ଆସିଲା, କବି ଭାବିଲା ବୋଧହୁଏ ଏହାରି ମନରେ ନିଜ ଗୀତର ତାଳ ପାଇବ । ପରେ ଆରାଧିକା ମୋହରେ ଅପୂର୍ଣ୍ଣତା ଯେନ ଅପସରି ଗଲା । କବି ଖୋଜି ବୁଲିଲା, ଅନ୍ୟ କେଉଁଠି ମନର ସମତାଳ ଅଛି । ଏହି ଗୋଟିଏ କାରଣରୁ, ଅର୍ଥାତ୍ କବିର ମନର ଆସ୍ୱାଦ ପାଇ ସାରିଲା ପରେ ଏତେ ବଡ଼ ଆସ୍ୱାଦକୁ ଦେହରେ ଓ ବସ୍ତୁ ପରିସ୍ଥିତିରେ ପାଇବାକୁ ଚେଷ୍ଟା କରିବାଦ୍ୱାରା ଆରାଧିକାର ବିଫଳତା ଆସେ ବୋଲି ଓ କବି ମନର ଅସରନ୍ତି ଶୋଷ ସାଧାରଣ ପାଣିରେ ମେଣ୍ଟେ ନାହିଁ ବୋଲି ବୋଧହୁଏ ଏହି କାରଣରୁ କବି ସହଜରେ ବାନ୍ଧି ହୋଇ ପାରେ ନାହିଁ । ସାଂସାରିକ ବିଷୟରେ ଏକ୍‌ସପେରିମେଣ୍ଟ କରୁ କରୁ ତାର ଦିନ ଯାଏ । ତାର ମନ ଦେହର ବନ୍ଧନଠାରୁ ଢେର ଉଚ୍ଚରେ । ଦେହର ବନ୍ଧନକୁ ସେ ବିଶ୍ୱାସ କରେ ନାହିଁ; ତେଣୁ ସଂସାର ଭିତରେ ବୁଡ଼ି ରହି ସେ ଥାଏ ସନ୍ନ୍ୟାସୀ ହୋଇ । କେତେବେଳେ କେଉଁ ଅସ୍ଥାୟୀ ସମୃଦ୍ଧି ଭିତରେ ସେ ଦୁଇଟା ଦିନ ପାଇଁ ପୂର୍ଣ୍ଣତା ପାଇଥିଲା, ସେତିକି ଯେନ ଗୁଣୁ ଗୁଣୁ କରି ମନ ଭିତରେ ରାଗିଣୀର ଆଲାପ କରୁ କରୁ ସେ ସାରା ଜୀବନ କଟାଇ ଦେଇପାରେ ।

ପାରେ, କାହିଁକି ନା ସେ କବି, ସେ କଳା-ଶିଳ୍ପୀ । ଯେଉଁ ସ୍ମୃତିକି ସେ ଚିରଦିନ ପାଇଁ ଆବୋରି ଧରିଲା, ସେ ସ୍ମୃତି ଯେ ତାର କଳା-ଶକ୍ତି ଉଦୟ ହୋଇଥିବା ବେଳର ଅବଦାନ । ଦେହର ତୃଷା ପାଇଁ ଦେହ ସେ ଭସାଇ ଦେଇପାରେ, ନ ପାରେ ବି; କିନ୍ତୁ ସ୍ମୃତି ରହିଲା ଭୋଗ ଭିତରେ ବୈରାଗ୍ୟର ଜଳନ୍ତା ଶାଣିତା ହୋଇ । ତାହାରି ଧାର ପଡ଼ୁଥାଏ ଶିଳ୍ପୀର ପ୍ରତି ହାତଯଶରେ— ତାର—ତାର ।

କ୍ରମେ ଆମେ ଆସି ଏପରି ସ୍ଥଳରେ ପହଞ୍ଚିଲୁଣି, ଯେଉଁଠି ବିଶ୍ଳେଷ କରିବାକୁ ହେବ, ଶିଳ୍ପୀ ପ୍ରାଣ ଓ ମନୁଷ୍ୟର ଅନ୍ତରଙ୍ଗ ସମ୍ବନ୍ଧ । ଅର୍ଥାତ୍, ଶିଳ୍ପୀ-ମନ ରୂପ ଉପରେ ଓ ବାସ୍ତବ ପରିସ୍ଥିତି ଉପରେ ପ୍ରଭାବ ନ ପକାଇଲେ ସୃଷ୍ଟି କବି ଜୀବନର ଗୀତକୁ ଅନେକ ଅଂଶରେ ସ୍ପଷ୍ଟରେ ଢାଳିଥାଏ । ଏ କଥା ତୁମେ ବୁଝୁଛ; କିନ୍ତୁ ଗୋଟାଏ ଲୋକକୁ ବାହାରୁ ଦେଖି ହଠାତ୍ କିପରି ତୁମେ ତାର ଜୀବନର ଗୀତ ବିଷୟରେ ଧାରଣା କରି ନେବ ? ଜଣେ ମୃତ୍ତିକୁ ଗୋଟିଏ କରକୁ ଭାଙ୍ଗି ଦୌଡ଼ୁଛି । ସେ ହୁଏତ ଭାବୁଛି—ଏଇ ଠିକ୍ ସାହିତ୍ୟକାର ଗତି । ଅତି ବିଶେଷଣ କଲେ ଚିହ୍ନିବୁ ମିଳିପାରେ ଭିତରେ ଥିବା ଶିଳ୍ପୀ-ମନର ସାମାନ୍ୟ ସନ୍ଧାନ । କିନ୍ତୁ କୌଣସି କାରଣରୁ ସେ ଲୁଗା ଛିଡ଼ି ହୋଇ ପଡ଼ିଗଲା, ଯାଉ; କିନ୍ତୁ ଏ ଆକସ୍ମିକ ପତନରୁ ସେ ଶିଅ ଓଟାଣି ବାଲିକାଟିର ଜୀବନର ଗୀତ ବୁଝିବାକୁ ଚେଷ୍ଟା କରିବ, ତେ ବିଫଳ ହେବ । କବି ଜୀବନରେ ସୃଷ୍ଟି ଠିକ୍ ସେହିପରି । ବାହାରର ମୋଟା ଘଟଣାରୁ ଆଦୌ ସହଜରେ ବୁଝି ହେବ ନାହିଁ କେଉଁ ପରିମାଣରେ କବି ଭିତରେ ଶିଳ୍ପୀ-ଆତ୍ମା ବାହାରର ମନୁଷ୍ୟ ଉପରେ ପ୍ରଭାବ ପକାଇଛି । ଲୁଗା ଛିଡ଼ି ହୋଇ କେତେ ସ୍ଥାନରେ କବି ପଡ଼େ, ଅନ୍ୟମାନଙ୍କ ସହିତ ପରିସ୍ଥିତିର ସୂଅରେ କେତେବେଳେ ବା କବି ଦଉଡ଼େ କିନ୍ତୁ କ୍ରିୟା ପ୍ରତିକ୍ରିୟା ଆଲୋଚନା କରି ଚିହ୍ନି ଭିତରୁ କେଉଁଟା ଭିତରର କେଉଁଟା ବାହାରର, ଏ କଥା ବାଛି ପାରିବା ଯେତେ ସହଜ ନୁହେଁ ।

ବାଛି ପାରିଲେ ସୃଷ୍ଟି କିଏ ବାଛି ପାରିବ, ସାଧାରଣ ପୂଜାରିଣୀ ? ଯେ ଆସିଛି କେବଳ ଅନ୍ୟମାନଙ୍କ ସଙ୍ଗମେଳରେ ? ମନର ଖିଆଲରେ ଭାସି ଆସି ବିଧାଗତ ଅନୁସାରେ ଦି ଥର ଜେ' ଜେ' ହୋଇ ସେ ଫେରିଯିବ ସେ ? ଅସମ୍ଭବ, ସେ ସାଧାରଣ ଦେଖଣାହାରି । ସେପରି କେତେ ଲୋକ କୋଣାର୍କ ମନ୍ଦିରକୁ ଆସନ୍ତି ଯାନ୍ତି, ବାଲିବନ୍ତର ବାଲିହରିଣ ଭଳି ଭଳି ଆଖିରେ ସନ୍ତର୍ପଣରେ ଚାହିଁଛନ୍ତି ଉହାଡ଼ରୁ ମନ୍ଦିରକୁ ଦେଖି ସେମାନଙ୍କଠାରୁ ବେଶୀ ବୁଝେ । ହୁଏତ ତାର ମନ

ଶିଳ୍ପୀ ପ୍ରତି କଅଁଳ ହୋଇ ଆସନ୍ତି, ଯଦି ସେ ଦେଖନ୍ତି ତା'ର ଆଗରେ ଶିଳ୍ପୀ ହୃଦଆରରେ ଖୋଲି ଖୋଲି ସୁନ୍ଦରିମା ଫୁଟାଉଛି । ଶିଳ୍ପୀର ବାହାରର ରୂପ ତା ଆଖିରେ ପଡ଼ନ୍ତି ନାହିଁ । ମଣିଷର ରୂପ ବିଷୟରେ ସେ କେବେ ମୁଣ୍ଡ ବୁଲାଉନାହିଁ; କିନ୍ତୁ ପଥର ଦେହରେ ଦେଖନ୍ତି ଯେତେବେଳେ ସେ ଛବି, ତାର ମନ ବୋଧହୁଏ ଆପେ ଆପେ ନଇଁ ଆସନ୍ତି ସେଇ ଶିଳ୍ପୀଆଡ଼କୁ, ଯେ ପଥର ଦେହରେ ନିଜ ମନର ସ୍ୱପ୍ନ ଆଙ୍କିଗଲା, ଦେହର ସୀମାବଦ୍ଧ ଅସୁନ୍ଦର ବନ୍ଧନ ବିଷୟ ମନକୁ ନ ଘେନି ।

ତୁମେ ଭାବି ବସିଛ ପରା, ଆମର ଲେଖା ପଢ଼ିଲେ ତୁମେ ଆମ ସାହିତ୍ୟିକ-ମାନଙ୍କ ନାଡ଼ି ଟିପି ସବୁ ବୁଝି ନେବ ? ତା ନୁହେଁ ଗୋ, ତା ନୁହେଁ । ତୁମେ ସହାନୁଭୂତି ଢାଳି ବୁଝିବାକୁ ଚେଷ୍ଟା କଲେ ପାଇବ ସାହିତ୍ୟିକର ଭିତର ଶିଳ୍ପୀ ରୂପ, ଯାହାର ପରିଚୟ ତୁମେ ତାର ସାଧାରଣ ଜୀବନରେ ବୃଥା ଖୋଜି ବୁଲିବ । ଶିଳ୍ପୀ-ଆତ୍ମା ବାସ୍ତବତାର ମଣିଷ ସାଥିରେ ଲୁଚକାଳି ଖେଳୁଥାଏ, କେତେବେଳେ କେଉଁଟା ପ୍ରକୃତି ବାହାରେ ବୁଝିବା ମୁସ୍କିଲ । ଇଂରେଜୀ ସାହିତ୍ୟ ତ ତୁମେ ପଢ଼ୁଛ, କିଏ ବିଶ୍ୱାସ କରିବ, ଷ୍ଟିଭେନ୍‌ସନଙ୍କର ଅଣ-ନୈଷ୍ଠାସୀ ଆଡ଼୍‌ଭେଞ୍ଚର୍‌ମସ୍ତ ଉପନ୍ୟାସ ପଢ଼ି, ଯେ ସେ ବାସ୍ତବ ଜୀବନରେ ଥିଲେ ରୁଗ୍‌ଣ ! ବାସ୍ତବ ଜୀବନରେ ଅତି ପ୍ୟୁରିଟାନ୍ ଥିଲେ ଯେଉଁ ମିଲ୍‌ଟନ୍, ସେହି ପ୍ରତିଷ୍ଠା କରିଛନ୍ତି ଅତି-ମାନବ "ସଇତାନ୍"ର ଦ୍ୱାହି ଦେଇ ଈଶ୍ୱରଙ୍କ ବିରୁଦ୍ଧରେ ମନୁଷ୍ୟର ବ୍ୟକ୍ତିତ୍ୱ । କେବଳ ନିଜ ସଙ୍ଗେ ଲୁଚକାଳି ଖେଳି, ଶିଳ୍ପୀ ଯେତେ ବେଶୀ ଉଚ୍ଚ ହୁଏ, ନିଜର ଲୌକିକ ଆବରଣକୁ ଗୁପି ଦେଇ ସେତିକି ସେ ନିଜକୁ ସମସ୍ତଙ୍କଠାରେ ଓ ସମସ୍ତଙ୍କୁ ନିଜଠାରେ ଅନୁଭବ କରିପାରେ । ସମସ୍ତଙ୍କର ନିଜର ପ୍ରାଣ ଅଛି; କିନ୍ତୁ ଶିଳ୍ପୀ ଅନ୍ୟମାନଙ୍କୁ ସୁଦ୍ଧା ପ୍ରାଣବନ୍ତ କରିପାରେ ।

ଖଣ୍ଡେ ଚିଠିରେ ଏତେ ମାଦକତା ଥାଏ କାହିଁକି ? ଦେଖା ହେଲେ ଯେ ମୁଣ୍ଡ ନୁଆଁଇ ଚାଲିଯାଏ, ଏଣୁ ତେଣୁ ଦୁଇପଦ କଥା କହି, ଚିଠି ଲେଖିଲାବେଳେ କାହିଁକି ସେ କବିତା ହୋଇ ତରଳି ଆସେ ? କାରଣ ସେତେବେଳେ ସେ ଭିତରେ ଥିବା ଶିଳ୍ପୀମନର ପରିଚୟ ଦିଏ । ସେହି ପରିଚୟଦ୍ୱାରା ଅପରକୁ ସେ ଅନୁପ୍ରାଣିତ କରିଥାଏ । କେତେ ନୀରବ ଗୋପନ ପରଶ ଘେନି ଆସେ ଖଣ୍ଡିଏ ଚିଠି । କେବଳ ଚିଠିରେ ଚିଠିରେ ପ୍ରେମର ବୀଜ ଅଙ୍କୁରେ, ବଢ଼େ, ଡାଳପତ୍ର ମେଲିଦିଏ । ବାଟ ମଝିରେ ଠିଆ ହୋଇ ପଛକୁ ଚାହିଁଲେ ଦେଖିବ, ଆରମ୍ଭ ରହିଲଣି କେଉଁ ପଛରେ, ଚିଠିରେ ଚିଠିଏ ତାରରେ ତାର ଛନ୍ଦ ହୋଇଗଲାଣି । ଅଦର୍ଶନର ଅବାସ୍ତବତା ହେତୁ କଳ୍ପନା ବୁଣିଛି ମାୟାର ଜାଲ, ତାରି ଭିତରେ

ସାଧାରଣ ସୁଖଦୁଃଖକୁ ନମିର କର କଥିଁଲ ମରମ ଭାବ ନଜର ପ୍ରତିଧ୍ୱନି ଖୋଜି ପାଇଛୁ ।

ଗାଁରୁ ଚିଠି ଅସେ, ଯେ ପାଠ ପଢ଼ି ନାହିଁ, ଯାହାର ଅକ୍ଷର ଅତି ଅସୁନ୍ଦର, ଯାହାର ବନାନ୍ ବ୍ୟାକରଣରେ ଆଲୁଅ ପାଇନାହିଁ, ଏପରି କେତେ ଚିଠି । ତଥାପି ପ୍ରକାଶର ଅପୂର୍ଣ୍ଣତା ଭିତରେ ଛପି ଛପି ଭାସିଆସେ ମନର କବିତା, ଶିଳ୍ପୀର ପ୍ରାଣ, ନିରାଭରଣା ଶକୁନ୍ତଳା ପରି ସୁନ୍ଦର, ସହରର ନିରର୍ଥକ ବନ୍ଧା-ଗତର ସୋଫିଷ୍ଟିକେଟେଡ୍ ଶିକ୍ଷିତ ଚିଠି ଅପେକ୍ଷା ପ୍ରାଣବନ୍ତ, 'ଦୂରୀକୃତା ଖଳୁ ଉଦ୍ୟାନଲତା ବନଲତାଭିଃ ।'

ସମ୍ମୁଖ ବାସ୍ତବତାରେ ଦେଖିବାକୁ ଯାଅ, ଶିଳ୍ପୀମନର ସେ ପରିଚୟର ଛୁଇଁ ସୁଦ୍ଧା ବାସ୍ତବରେ ପାଇବ ନାହିଁ ।

ଏଇଟି ଭ୍ରମର ବିପଦ, ଯେଉଁ ବିପଦ କଥା ମୂଳରେ କହୁ ମୁଁ କହୁଥିଲି । ଦୁଇଜଣ ଦୁଇଜଣଙ୍କୁ ଦେଖି ଭୁଲନ୍ତି, ମୁହୂର୍ତ୍ତିକର ସତ୍ୟ-ପ୍ରକାଶର ଆବେଗରେ ଦୁଇଜଣ ଦୁଇଜଣଙ୍କ ବିଷୟରେ କଳ୍ପନାମୟ ଧାରଣା ରଖି ବାସ୍ତବତାକୁ ଭୁଲି ଯାଆନ୍ତି । ଦିନ ଯାଏ, ବାସ୍ତବ ଭିତରେ ଆଉ ଆଦର୍ଶ ମିଳେ ନାହିଁ । ସନ୍ଦେହର ମେଘ ଦେଖାଦିଏ, ଦ୍ୱନ୍ଦ୍ୱ ମୁହୂର୍ତ୍ତର ବିଜୁଳି ଝଲକରେ ଯେଉଁ ପରିଚୟ ହୋଇଥିଲା, ସେ ଲାଗେ ଗୋଟାଏ ଭୁଲ୍ ପରି । ବନ୍ଧନ ଭାଙ୍ଗେ, ତାପରେ ଆସେ ମୁକ୍ତିର ଅନ୍ଧାର ।

କିନ୍ତୁ କେଉଁ ଗୋଟାକ ଭୁଲ୍ ? ଭୁଲ୍‌ଟା ଭୁଲ, ନା ଭୁଲ୍‌କୁ ଭାଙ୍ଗିବାଟା ଭୁଲ୍ ?

ଜୀବନରେ ଅନେକ ଏପରି ନିରାଶା ଆସିଥାଏ, ଉଭୟପକ୍ଷ ମିଳନର ଦୋଷରୁ । ଯେଉଁଠି ଦୁଇଜଣଙ୍କ ମନ ପଶୁ ମନ ପରି ଅଚଞ୍ଚଳ, ସେଠି ବାସ୍ତବତାର ମିଳନ ହୋଇଥିବାରୁ ତାହା ସଫଳ ହୋଇଥାଏ; କାରଣ ପ୍ରଶ୍ନ ପଚାରିବାକୁ କାହାରି ଶକ୍ତି ନ ଥାଏ । ଯେଉଁଠି ମନ ଜାଗେ ସେଠି ନାନାପ୍ରକାର ବିପଦ ଆସେ । ଜଣକର ମନ ଆଦର୍ଶ ଖୋଜୁଥାଏ; କିନ୍ତୁ ତାର ଏତେ ବେଶୀ ସଙ୍କୀର୍ଣ୍ଣତା, ଏତେ ବେଶୀ ବସ୍ତୁପରାୟଣତା ଯେ, ସେ ଅପର ଜଣକର ସ୍ଥୂଳ ଆବରଣକୁ ଭେଦ କରି ଆଦର୍ଶ ପାଖରେ ପହଞ୍ଚିପାରେ ନାହିଁ । ତେଣୁ ଆର ଜଣକ ଯେତେବେଳେ ମନ ମନର ଐକ୍ୟ ତାନ ଖୋଜେ, ସେ ମଧ୍ୟ ନିରାଶ ହୋଇ ମୁହଁ ବୁଲାଇ ନିଏ । ଆଦର୍ଶକୁ ବସ୍ତୁ ଭିତରୁ ଅଲଗା କରି ବାଛି ନେଇ ବସ୍ତୁ ଓ ଆଦର୍ଶର ସମାବେଶ

ମନୁଷ୍ୟଠାରେ ଶାନ୍ତି ପାଇବା ଅସମ୍ଭବ । ସେ ଅପରଠାରେ ଆଦର୍ଶକୁ ହୃଦୟ ସହିତ ଚାହିଁ ଭଲ ପାଇଛି, ତାର ଉଚିତ ହେଉଛି ବସ୍ତୁର ଅପୂର୍ଣ୍ଣତାକୁ ନ ଡରି ଅପର ଜଣକର ବସ୍ତୁ ଗ୍ରାହକରେ ସମ୍ବନ୍ଧଶୀଳ ଅବସ୍ଥାନକୁ ଗ୍ରହଣ କରିନେବା ଓ ତାକୁ ସାର ବୋଲି ମନେ ନ କରିବା । ଅନ୍ତର ଥରେ କହୁଛି, ଛଦ୍ମବେଶୀ ମହାଦେବଙ୍କର ମହାଦେବଙ୍କ ବିଷୟରେ ବସ୍ତୁବାଦର ବର୍ଣ୍ଣନ "ବପୁର୍ବିରୂପାକ୍ଷମ୍" ଇତ୍ୟାଦି ଶୁଣି ପାର୍ବତୀ ଡରି ନ ଥିଲେ । ଆଦର୍ଶର ସାଂସାରିକ ସୀମା ଯେତେ-ବେଳେ ବାସ୍ତବତା, ବାସ୍ତବତା ପୁଣି ଆଦର୍ଶର ରୂପ-ବନ୍ଧନ, ସେତେବେଳେ ତାହାକୁ ସାର ନ ମଣି ବା ତହିଁରେ ଭସ୍ମ ନ ପାଇ ତାହାରି ଭିତରେ ଆଦର୍ଶକୁ ଖୋଜିବା ସମୀଚୀନ ବୋଲି କାଳିଦାସ ସେଠି ପ୍ରମାଣ କରିଛନ୍ତି ।

ସେଥିପାଇଁ କହୁଛି, କବିର ମନ ସହିତ ମନ ମିଳାଇ ଦେଇ କବିର ସ୍ପନ୍ଦନରେ ନିଜର ସ୍ପନ୍ଦନକୁ ଏକ କରିଦେବା ସହଜ ନୁହେଁ । କବିର ପ୍ରେମୀ ଯେ ପାରି ସେ ହୋଇ ପାରିବେ; କିନ୍ତୁ କବିର ପ୍ରେୟସୀ ହେବାକୁ ସମସ୍ତଙ୍କର ଭାଗ୍ୟ ନାହିଁ । ସେ ପ୍ରେମ ଆରାଧିକା ରାଧିକାର ପ୍ରେମ । ତହିଁରେ ବସ୍ତୁ-ସ୍ଥୂଳତାର ସୀମା ନାହିଁ ବା ଦୁର୍ବଳତା ନାହିଁ । ଅଛି କେବଳ ଗୋଟାଏ ଆଦର୍ଶମୟ ଉଚ୍ଛ୍ୱାସ ।

ତେବେ ତୁମେ କହିବ, ଶିଳ୍ପୀର ମନକୁ ଶିଳ୍ପୀ ମନୁଷ୍ୟ ପାଖରେ ଚାହିଁ ପାରିବା କଣ ଏକାବେଳକେ ଅସମ୍ଭବ ? ତେବେ ଶିଳ୍ପୀ-ମନୁଷ୍ୟକୁ ମନୁଷ୍ୟ ହିସାବରେ ସୁଦ୍ଧା ଗୋଟାଏ ମନ ଭୁଲଣିଆ ରୂପ କାହିଁକି ଦିଆହୁଏ ? ମୁଁ ଭାବୁଛି, ଏକାବେଳକେ ଅସମ୍ଭବ ନୁହେଁ, ଯଦି ଆରାଧିକା କଳ୍ପନାମୟ ସହାନୁଭୂତି ଘେନି ଆସିଥାଏ । ଶିଳ୍ପୀ ଓ ମନୁଷ୍ୟ ଭିତରେ ଯେଉଁ ଲୁଚକାଳି ଖେଳ ଲାଗିଥାଏ, ତାହାରି ଫାଙ୍କରେ ଶିଳ୍ପୀ-ମନୁଷ୍ୟ ଭିତରେ ଶିଳ୍ପୀ-ଆତ୍ମା କାହାରି କାହାରି ପାଖରେ ଧରାପଡ଼େ, ବାସ୍ତବ ଜୀବନରେ ମଧ୍ୟ । ସେଥିପାଇଁ ପରିଚୟ ଲୋଡ଼ା, ଯେପରିକି କଳାଶକ୍ତି ଅବତାର ଘେନିଲାବେଳେ ପାଖେ ପାଖେ ଥାଇ ଦେଖିବାକୁ ଅବକାଶ ମିଳିପାରିବ । ଗୋଟାଏ ମୂହୂର୍ତ୍ତର ସୁଯୋଗ । ଜଣକର ଆତ୍ମା ସିଧା ସିଧା ଅନ୍ୟ ଜଣକର ଆତ୍ମାକୁ ଯାଇ ଭେଟେ, ପାରୁଛି ଅଣେ । ବାସ୍ତବତାର ଅସମାନ୍ତରାଳ ଅନୈକ୍ୟତାର ଜଡ଼ତା ଓ ରୁକ୍ଷତା ଯାଏ ଲୁଚି, ଶିଳ୍ପୀର ବ୍ୟକ୍ତିତ୍ୱ ଫୁଟି ଉଠେ । ଦୁଇ ପ୍ରାଣର ପରିଚୟ ହୁଏ ସୀମାହୀନ ଆକାଶର ତଳେ । ମୂହୂର୍ତ୍ତେ, ତା ପରେ ବହୁଳତା ଲାଗିଯାଏ, ଆରାଧିକା ଚାହିଁ ଦେଖେ, ଶିଳ୍ପୀ ନୁହେଁ, ସାଧାରଣ ମନୁଷ୍ୟ । ଯଦି ତାର ବୁଝିବାକୁ ଶକ୍ତି ଥାଏ, ତେବେ ସେ ଏପରି ଅବସ୍ଥାରେ ଆସି ପହଞ୍ଚେ ଯେତେବେଳେ ପ୍ରଥମମୂହୂର୍ତ୍ତରେ ମନୁଷ୍ୟ ଭିତରୁ ଶିଳ୍ପୀ-ଆତ୍ମାକୁ ସେ ଚିହ୍ନି ନେଇପାରେ । ତା ନ ହେଲେ, ସେ ଭାବେ, ସେ ଗୋଟାଏ ଭୁଲ୍ କରି ବସିଛି । ଭୁଲ୍ ଲାଗିବାକୁ ତାକୁ ଡର ସହେ ନାହିଁ ।

ଦୁନିଆରେ ତୁମ ଆମ ଆଖି ଆଗରେ ତ ଏହିପରି କେତେ ଭଙ୍ଗାଗଢ଼ା ଲାଗିଛି । ତୁମେ ମଣିଷକୁ ଦେଖି ଶିଳ୍ପୀକୁ ଅବଜ୍ଞା କରିବ କାହିଁକି ? ସେ କଣ ତୁମ ମନର ଭୁଲ୍ ନୁହେଁ ? ବାସ୍ତବତାକୁ ଜୀବନର ସର୍ତ୍ତ ବୋଲି ଧରି ନ ନେଇ ଯଦି ପାର, ତେବେ ପୃଥିବୀ ଆଗରେ ଠିଆ ହେବ କେଉଁ ସାହସରେ ? ସାହିତ୍ୟ ଆମକୁ ଜୀବନରୁ ଲୁଚି ଆଶ୍ରୟ ନେବାକୁ ଶିଖାଏ ନାହିଁ । ଶିଖାଏ ବସ୍ତୁ ଭିତରେ ଆଦର୍ଶକୁ, ସୀମା ଭିତରେ ଅସୀମକୁ କିପରି ନିଜର କରି ନେବାକୁ ହେବ, ତାହାହିଁ । ତୁମେ କଣ ଚାହିଁ ଦେଉଁ ଶିଳ୍ପୀ ସୁନାକାଠି ଛୁଆଁଇ ତୁମର ଶୋଇଲା ପ୍ରବଣତାକୁ ଉଠାଇବାକୁ ମନ ବଳାଇବ, ସେ ତୁମର ବାସ୍ତବତାଠାରୁ ଲୁଚି ଲୁଚି ଦୂରରେ ରହି ତପସ୍ୟା କରୁଥିବ ? ନା, ଫୁଲ୍ ତା କହେ ନାହିଁ । ଫୁଲ କହେ, "ମୁଁ ଯାହା ଅଛି ତାହାହିଁ । ମୋର ସ୍ଥୂଳତା ଅଛି, ପାଖୁଡ଼ା ଅଛି, ପତ୍ର ଅଛି, କଣ୍ଟା ଅଛି । କେତେ ପାଖୁଡ଼ା ମୋର ପୋକ କଣା କରିଛି, କେତେ ପରାଗ ମୋର ପବନରେ ଉଡ଼ି ଯାଇଛି, ପ୍ରଜାପତି ଆସି ଶୁଣ୍ଢ ବଢ଼ାଇ ମୋର ମହୁ ଲୁଟି ଖାଇଛି । ମୁଁ ରହିଛି ସେଇ ଫୁଲ୍, ସକାଳ ଶିଶିରର ଖେଳର ସାଥୀ । ମୋତେ ଯଦି ଭଲ ପାଇ ନେବାକୁ ଆସିଲ ମୁଁ ଯାହା ଅଛି ସେହିପରି ନିଅ, ଭୁଲ୍ ବୁଝନା । କଳ୍ପନାରେ ସପନ ରଚି ତୁମେ ମୋତେ ଯେନସିବ, ଘରେ ଯେପରି ବାସ୍ତବତା ଆଡ଼କୁ ଚେତା ଫେରିଲେ ମୋତେ ଟିକି ଟିକି କରି ନ ଛିଣ୍ଡାଅ, ଗୋଡ଼ରେ ଦଳି ନ ଦିଅ । ମୋତେ ନିଅ ମୁଁ ଯେପରି ଅଛି ସେହିପରି, ବାସ୍ତବତାର ସୀମା ଭିତରେ କବିତାର ରୂପ-ପରିଗ୍ରହ ହୋଇ ।"

ଯେଉଁମାନେ ସହରର ଦୋତାଲା କୋଠାରେ ସୁସ୍ଥିବାଦର ପରିସ୍ଥିତିରେ ଫୁଲ୍ ଫାଟି ବର୍ଡ଼ି ସଙ୍ଗୀତ ଓ ସାହିତ୍ୟ ଯେନ ଅଲକାପୁରୀ ରଚନା କରିଥାଆନ୍ତି, ସେମାନଙ୍କ ଭିତରୁ ଅନେକେ ବାସ୍ତବ ଓ ଆଦର୍ଶର ଏ ଆଶ୍ଚର୍ଯ୍ୟ ଇନ୍ଦ୍ରଧନୁକୁ ଦେଖି ଦେଖନ୍ତି ନାହିଁ, ବୁଝି ବୁଝନ୍ତି ନାହିଁ, କାଦୁଅ ପଚ୍ ପଚ୍ ଗାଁ ଗୋହିରୀର ଗୀତ, ମଶା ଡାଆଁଶ ମେଳରେ ଘୁଷୁରିଆର ଜୀବନ, ଆବର୍ଜନାର ବୋଝ ଯେନ ଯାଉଥିବା ହରିଜନ ବାଳିକାର କଅଁଳ ମରମ ଖବର, ଏ ସବୁର ଅସ୍ତିତ୍ୱ ବିଷୟରେ ସେମାନଙ୍କର ସନ୍ଦେହ ହୁଏ । ତେଣୁ କରି ପୁଣି କବି-ଭାଷାରେ କହୁଛି, "ଦୂରୀକୃତା ଖଳୁ ଉଦ୍ୟାନଲତା ବନଲତାଭିଃ ।" ଧାଡ଼ି ଧାଡ଼ି କୁଣ୍ଡରେ ସାଇତା ହୋଇଥିବା ଫୁଲ ଓ ଫଳର ଜଙ୍ଗଲ ଭିତରେ ଅଙ୍ଗ-ଲତାକୁ ଦୋହଲାଇ ଦେଇ ଘାସ ଉପରେ ଲୁଚକାଳି ଖେଳି କେହି କେବେ ପାଇଛି କି ସେହି ଜୀବନର ଆନନ୍ଦ, ଯାହା ମିଳିଥାନ୍ତା 'ବୁଢ଼ାରଜା' ପାହାଡ଼ ଉପରେ, ଅଥବା ଢଳ୍ ବାହାଲପୁର ଓ ଛନ୍ ଛୁନ୍ ଡଂଗର ଗୁର-ବୁର-କୁରେଇର ଜଙ୍ଗଲ ଭିତରେ ? ତୁମର ଫୁଲଗଛ ତଳେ ଗୋଟିଏ ବୋଲି ଘାସ ନାହିଁ, ତୁମର ସାଇତା ବଗିଚା ଭିତରେ ଦୁବ ମପାଚୁପା,

ଏ ସାଇତା ଆନନ୍ଦ ଜୀବନର ହନୁକରଣ, ନିଜେ ଜୀବନ ନୁହେଁ । କର୍କଶ-କୋମଳ, ଭୀଷଣ-ଅଭିରାମ, ବୀଭତ୍ସ—ସୁନ୍ଦର ହେଉଛି ବାସ୍ତବତା ଭିତରେ ଆଦର୍ଶର ବନ୍ଧନ, ଜୀବନର ଉଦ୍ଦାମ ଉତ୍ତେଜନା—ନିଘଞ୍ଚ ଜଙ୍ଗଲ ମଝିରେ ତାଲ୍‌ଖାଇ ନାଚ ।

"କର୍‌ମା କେ ଏକାଦଶୀ—ଫୁଲ୍‌ଫୁଟେ ବାରମାସୀ

ତାଅଲ୍‌ଖାଇରେ—ଏ...ଏ..."

ଯଦି ଆଦର୍ଶକୁ ବାସ୍ତବ ଭିତରେ ବୁଝିବାକୁ ଚାହଁ, ତେବେ ମନର ପର୍ଦ୍ଦା ଚିର ଫୋପାଡ଼ି ଦିଅ, ଭାଙ୍ଗିଦିଅ ସବୁ ବାଡ଼ ଆଉ ବନ୍ଧନ, ନିଜକୁ ଶିଳ୍ପୀର ହୃଦୟର ଜୀବନ ଭିତରେ ହଜାଇ ଦେଇ ପୁଣି ନିଜକୁ ଖୋଜିଆଣ । ମନର ଆକର୍ଷଣ ତୁମକୁ ଅମର କରିବ, ରୂପର ଆକର୍ଷଣ କରିଥାନ୍ତା ପାଗଳ, ବାଟଭୁଲ । ଦଶଟା ପ୍ରତିମା ଗଢ଼ା ହୁଏ, ଦଶଟା ପୁଣି ଦେବୀଗଡ଼ା ଘାଟରେ ପାଣିରେ ଭସି ହୁଏ । ପ୍ରତିମାର ପ୍ରାଣ ନାହିଁ; କିନ୍ତୁ ଘରର ପୋଷା ବିରାଡ଼ିଟି ମରିଗଲେ ପରି ତୁମେ ଲୁହରେ ଭସ ? କେତେ ଦେହର ରୂପ ଦୁନିଆର ହାଟେ ହାଟେ ଘାଟେ ଘାଟେ ଦେଖିଥାଅ; କିନ୍ତୁ ଶିଳ୍ପୀ-ମନର ରୂପ ସବୁଠାରେ ମିଳେ କି ? ଶିଳ୍ପୀର ହୃଦୟର ପ୍ରାଣକୁ ଯଦି ତୁମେ ଦେହର ସ୍ଥୂଳ ରୂପରେ ଗୁଡ଼ାଇ ନିଜର ଧାରଣାରେ ଖର୍ବ କରି ଦେବ, ସେଥିପାଇଁ କିଏ ଆଉ ଦାୟୀ ହେବ ତୁମ ଛଡ଼ା ?

ଶିଳ୍ପୀ ଭାରି ଅଭିମାନୀ, ନ ବୁଝିପାରି କୌଣସି ଶିଳ୍ପୀ ବିଷୟରେ ଭ୍ରମ ଧାରଣା କରିବାର ଦେଖିଲେ ସେ ସହିପାରେ ନାହିଁ, ତାର ଖୋଲା ପ୍ରାଣରେ ପରର ଦେହ ବା ମନର ବନ୍ଧନ ବଡ଼ ବାଧେ । ତେଣୁ ତୁମର ଭୁଲ ଭାଙ୍ଗିବା ପାଇଁ ଲେଖିଲି, ଭବିଷ୍ୟତରେ ବାସ୍ତବତା ଭିତରେ ଆଦର୍ଶକୁ ଯେପରି ତୁମେ ଭୁଲି ନ ଯାଅ । ତୁମର ଅନଭିଜ୍ଞ ଆଖିରେ ସ୍ଥୂଳତାର ମୋହ, ବାସ୍ତବତାର ମୋହ ଜମାଟ ବାନ୍ଧିଛି । କେବେ ବା ଭାଙ୍ଗିବ ଭାବି ମନରେ ଆଶଙ୍କା ଉପୁଜୁଛି । ରୂପକୁ ମୁଁ ଅବହେଳା କରେ ନାହିଁ; କିନ୍ତୁ ବିନା ପ୍ରାଣରେ ରୂପର କିବା ମୂଲ ? ଆଉ ରୂପ ବା କଣ ? କେବଳ ଅପରର ଆଖିର ନିଶା ପିନା । କବି ଜୀବନୀ ଆଲୋଚ ଦେଖିଲେ ବୁଝିବ, ସବୁ କବି-ପ୍ରେୟସୀ ଦୁନିଆ ସାରା ରୂପସୀ ନ ଥିଲେ । ସବୁ କବି ପ୍ରେୟସୀଙ୍କ ମୁହଁକୁ ଚାହିଁ କହି ହୁଅନ୍ତା ନାହିଁ, "ଏଇ କଣ ସେଇ ମୁହଁ, ଯାହାଲାଗି ସୁନାର ଲଙ୍କା ହେଲା ଚୂନା !" ତୁମର ମୁହଁକୁ ଚାହିଁ ସମସ୍ତେ କଣ ସେହିପରି କହନ୍ତି, "ଏଇ କଣ ସେହି ମୁହଁ ?" ଫ୍ରଏଡ଼ବାଦର ନାସିସିଜ୍ମରେ ତୁମେ ଆପଣା ରୂପରେ ଆପେ ଯେତେ ବିଭୋର ହୋଇ ରହିଥାଅ ପଛେ, ସମସ୍ତଙ୍କର ଆଖି ସମାନ ନୁହେଁ । ଜୀବନରେ କେବେ ତୁଚ୍ଛା ରୂପର

ମୋହରେ ଛପିଆସିଥିବା ବୁଝାଇଲୁ ପଶ୍ରସ୍ତ ଦେବ ନାହିଁ କମ୍ବା ନଜେ ପ୍ରାଣଶ୍ରନ ରୂପର ପିଗ୍ର ଧରବ ନାହିଁ । ଯଦ ସେପର କର, ତେବେ ଠିକବ, ମନର ଆବେଗ ଯେନ ଦେହଲରେ ପଣି ଦେଖିବ ପାଷାଣର ପ୍ରତମା, ପ୍ରତମା ଭତରେ ପ୍ରାଣ ନାହିଁ । ଯନାକେତେ ପରେ ଭୁଲ୍ ଭାଙ୍ଗିବ, ସେତେବେଳେ ହାତର ମୁଠା ଖୋଲଲେ ଦେଖିବ ଶୀତଳ ପାଉଁଶ, ବୃଥା ମନର କୋହ ଆଉ ଆଖିର ଲୁହ । ମୃତ୍ମୂର୍ତ୍ତି ଭୁଲଯାଇଥିବ, ସେତେବେଳେ ତୁମ ପାଇଁ ବୃଥା ଦୀର୍ଘଶ୍ୱାସ ।

ବନ୍ଦ କୋଠାରେ ବୈଠକ୍ ଘରେ ପଣ୍ଡିମେଳରେ ବସି ଯେତେବେଳେ ଆନନ୍ଦ କରୁଥିବ, ଶିଳ୍ପୀର ମଣିଷରୂପର କମୂତକୁ ଭାବ ହସର ରୋଳ ଉଠାଉଥିବ, ସେତେବେଳେ ପଦାକୁ ଥରେ ଥରେ ଆଖିପକାଇ ଭାବବ, ବାସ୍ତବ ଭତରେ ଆଦର୍ଶର ରୂପ । ବରଷା ଭତରେ ବାଟର ବାଟୋଇ ଗ୍ଲଲଛ, ପାଣି କାଦୁଅ ରାସ୍ତାରେ । ତୁମ ପର ତାର ଯାଇତା ଘରକରଣା ନୁହେଁ । ମୁହଁରେ ବାଜୁଛ ପାଣିଛିଟା ଅଉ ଓଦା ପବନ । ଗୋଡ଼ ଅଧକୁ କାଦୁଅ, ଛତାଟିଏ ଧର ସେ ଗ୍ଲଲଛ । ତାହାର ବାସ୍ତବତାର ରୂପ ମନଭୁଲଣିଆ ନୁହେଁ; କନ୍ତୁ ଭାବ, କାହାପାଇଁ ସେ ଛୁଟିଛ ବରଷାରେ ? କାହାପାଇଁ ତାର କୋଟଲିଆ ଆଖିରେ ଖେଳଯାଉଛ ବେଳେ ବେଳେ କପର ଗୋଟାଏ ଗମ୍ଭୀର ଗ୍ଲହାଣୀ ? କଣ ତାହା ମନର କବତା ?

ସହାନୁଭୂତ ଢାଳଦଅ, କଳ୍ପନାର ସତ୍ୟତା ଭତରେ ବାସ୍ତବତାର ଅଳୀକତା ଚିହ୍ନ ଉଭ, ପୋଖରୀତଳ କାଦୁଅ ତୁମର ମନକୁ ଅଟକାଇ ପାରବ ନାହିଁ, ତୁମେ ଭେଟିବ ପଦ୍ମଫୁଲ, ଯାହାର ସନ୍ଧାନ ତଳେ ଥିବା ଗେଣ୍ଡା ଶାମୁକା ପାନ୍ତ ନାହିଁ । ଆଉ ଅଧିକ କଣ ଲେଖିବ ? ତୁମେ ନଜେ ତ ବହୁଦର୍ଶୀ, ତୁମେ ନଜେ ତ ଜ୍ଞାନର ସମୁଦ୍ରର କୂଳେ କୂଳେ ବାଲିଗରଡ଼ା ଗୋଟାଉଛ, ତୁମକୁ ମୁଁ ବୁଝାଇବ କଣ ?

ତୁମ କ୍ୟାମ୍ପରେ ଥିବା ଅନ୍ୟାନ୍ୟ ଅପରଚତାମାନଙ୍କୁ ପରଚୟର "ଭଲବୁ ଭଲବୁ" ଜଣାଇଦେବ । ସେମାନେ କଣ ତୁମପର ଆକାଶୀ, ନା ସେମାନେ ଆଖି ଆଉ ହୃଦୟ ଭଇୟରେ ଦେଖନ୍ତି ? ଯାଉଛ । ଇତ ।

ତୁମର ଅପରଚତ
ଶୁକ୍ଲକାନ୍ତ ଶ୍ରୀ
ରମାନାଥ ପାଣିଗ୍ରହି